# ଲେଖକଙ୍କର ଅନ୍ୟ କେତୋଟି ପୁସ୍ତକ

୧. ପୃଥିବୀ ଓ ପୃଥିବୀ (ଗଳ୍ପ ସଂକଳନ)

୨. ଗୋଟିଏ ମେଣ୍ଡାପଲ (ଗଳ୍ପ ସଂକଳନ)

୩. ପ୍ରମିଳା (ଗଳ୍ପ ସଂକଳନ)

୪. ଭାରତ ଭାଗ୍ୟ ବିଧାତା (ବ୍ୟଙ୍ଗ ଗଳ୍ପ ସଂକଳନ)

୫. ପ୍ରଥମ ପୃଥିବୀ (ଉପନ୍ୟାସ)

୬. ଉପତ୍ୟକାର ଉପକଥା (ଭ୍ରମଣ କାହାଣୀ)

୭. ଅପୂର୍ବ ପୂର୍ବ (ଭ୍ରମଣ କାହାଣୀ)

୮. ଲୁ ତଥା ଅନ୍ୟ କହାନୀୟାଁ (ହିନ୍ଦୀ ଗଳ୍ପ ସଂକଳନ)
ଅନୁବାଦ - କୁମାର ହସନ ଓ ଡକ୍ଟର (ଶ୍ରୀମତୀ) ବାସନ୍ତୀ ରଥ

୯. ରବୀନ୍ଦ୍ର ନାଥଙ୍କର ଚର୍ଚ୍ଚିତ ଚିଟାଉ (ଅନୁବାଦ)
ଅନୁବାଦ - ଅମିୟ ବସୁ ଓ ଭୂପେନ୍ ମହାପାତ୍ର

୧୦. ଖୋଳ (ଗଳ୍ପ ସଂକଳନ)

୧୧. ଚନ୍ଦ୍ରସେଣାର ଚନ୍ଦ୍ରାଲୋକ (ବ୍ୟଙ୍ଗ ଗଳ୍ପ ସଂକଳନ)

୧୨. ଜାତୀୟ ଭାବଧାରା ଓ ଅନ୍ୟାନ୍ୟ ପ୍ରବନ୍ଧ

୧୩. ସୂର୍ଯ୍ୟ ଉଠିନାହିଁ (ଗଳ୍ପ ସଂକଳନ)

୧୪. ହାତୀର ହିକ୍କି (ଗଳ୍ପ ସଂକଳନ)

୧୫. ଏବେ ବି ରେବତୀ ଓ ଅନ୍ୟାନ୍ୟ ଗଳ୍ପ (ଗଳ୍ପ ସଂକଳନ)



# ସାହିତ୍ୟ, ସଂସ୍କୃତି ଓ ...

ପ୍ରଥମ ପ୍ରକାଶନ :
୨୦୦୪

ଲେଖକ :
**ଭୂପେନ ମହାପାତ୍ର**
କଥାଘର,
ଛେଣ୍ଡ୍ କଲୋନୀ,
ରାଉରକେଲା - ୧୫

ପ୍ରକାଶକ :
**ଅରୁଣକାନ୍ତି ଦାସ**
ରାଇଟର୍ସ ୱାର୍କସପ୍
ଉଦିତନଗର, ରାଉରକେଲା - ୧୨

ମୁଦ୍ରଣ :
**ରାଇଟର୍ସ ୱାର୍କସପ୍,**
ଉଦିତନଗର,
ରାଉରକେଲା - ୧୨

ମୂଲ୍ୟ : ୫୦ ଟଙ୍କା

**Sahitya, Sanskruti O ...**

FIRST EDITION:
2004

AUTHOR :
**BHUPEN MAHAPATRA**
KATHAGHAR,
CHEEND COLONY,
ROURKELA - 15

PUBLISHER :
**ARUNKANTI DAS**
WRITERS' WORKSHOP,
UDITNAGAR, ROURKELA -12

PRINTER :
**WRITERS' WORKSHOP**
UDITNAGAR,
ROURKELA -769 012

PRICE : Rs.50/-

# ସୂଚୀପତ୍ର

## ସାହିତ୍ୟ ଓ ସଂସ୍କୃତି



## ଧର୍ମ ଓ ରାଜନୀତି

# ମୁଁ ଯାହା କହିବାକୁ ଚାହୁଁଚି

ଏକବିଂଶ ଶତାବ୍ଦୀରେ ଆମ ଦେଶରେ ଯୋଉ ସାମାଜିକ, ରାଜନୈତିକ, ଅର୍ଥନୈତିକ ଏବଂ ତା ସାଂଗକୁ ଧାର୍ମିକ ବା ସାଂସ୍କୃତିକ ପରିବର୍ତ୍ତନ ସବୁ ଘଟିଗଲା ତାକୁ ଆମ ଗଣମାଧମମାନେ ଯଥାଯଥ ଭାବରେ ଲୋକଙ୍କ ସାମନାରେ ତୋଳି ଧରିଚନ୍ତି । ଏ ସବୁ ଘଟଣା ଲୋକଙ୍କ ସାମନାକୁ ଆସିଲାବେଳେ ସେମାନଙ୍କ ଭିତରେ ଗୋଟାଏ ସଚେତନତା ଅବଶ୍ୟ ସୃଷ୍ଟି ହେଇଚି । ଏହାହିଁ ଗଣମାଧମର ସାର୍ଥକତା । ସେ ତାର କର୍ତ୍ତବ୍ୟ ଏଇଠି ଶେଷକଲା ବୋଲି ଧରାଯାଏ । 'ସ୍ତମ୍ଭ' ଏହି କର୍ତ୍ତବ୍ୟ ସମ୍ପାଦନରେ ଗୋଟାଏ ବିରାଟ ଭୂମିକା ଗ୍ରହଣ କରିଥାଏ । ସ୍ତମ୍ଭକାରମାନେ ଜନମତକୁ ସଠିକ ଭାବରେ ପରିଚାଳିତ କରି ଥାଆନ୍ତି । ସମ୍ବାଦ ପରିବେଷଣ ଓ ସ୍ତମ୍ଭରେ ମତ ଓ ମନ୍ତବ୍ୟ ପରିବେଷଣ ଦ୍ୱାରା ପାଠକ ଦୁଇଟିକୁ ଠିକ ଭାବରେ ତଉଲି ପାରେ, ବିଚାର କରିପାରେ ଏବଂ ତାପରେ ନିଜର ମତ ତିଆରି କରି ପାରେ । ଏହାହିଁ ଜନମତ ସୃଷ୍ଟିର ଧାରା, ଯାହା ଆମ ସମାଜରେ ବହୁ ଦିନରୁ ଚଳି ଆସୁଚି ।

୧୯୯୦ ଠାରୁ ଆମ ଦେଶରେ ରାଜନୈତିକ, ସାମାଜିକ ତଥା ସାଂସ୍କୃତିକ କ୍ଷେତ୍ରରେ ଯୋଉ ପରିବର୍ତ୍ତନ ହେଇଚି ତାକୁ ଜଗତିକରଣର ଫଳ ବୋଲି କୁହାଯାଉଚି । ଆମ ଶାସ୍ତ୍ରପୁରାଣରେ 'ବସୁଧୈବ କୁଟୁମ୍ବକମ୍' କଥାଟା ଯୋଉ ଅର୍ଥରେ କୁହାଯାଇଚି ଜଗତିକରଣଟା ସେଇ ଅର୍ଥରେ ବୁଝାଏ ନାହିଁ । ଜଗତିକରଣ ଶବ୍ଦଟା କେବଳ ବ୍ୟବସାୟୀକ ବିଚାର ବୁଦ୍ଧିରୁ ସୃଷ୍ଟି । କୋଉଠି କେତେ ପୁଂଜି ଖଟାଯିବ ଏବଂ କୋଉଠୁ କେତେ ଲାଭ ମିଳିବ ସେଇ କଥାଟା ଜଗତିକରଣର ମଂଜି । ଜଗତଟାକୁ ଅର୍ଥ ସର୍ବସ୍ୱ କରି ଦିଆଗଲା । ମଣିଷକୁ ଅର୍ଥର ଚାରିକାନ୍ଥ ଭିତରେ ଆବଦ୍ଧ କରି ରଖି ଦିଆଗଲା । ଅର୍ଥ ଛଡ଼ା ଆଉକିଛି କରି ହେବ ନାହିଁ ବୋଲି କୁହାଗଲା । ରାଜନୀତି, ଧର୍ମ, ସମାଜ ଓ ସାହିତ୍ୟ ମଧ ଜଗତିକରଣର ପ୍ରଭାବରୁ ମୁକ୍ତ ହେଇ ପାରିଲା ନାହିଁ । ସାହିତ୍ୟ ସହିତ ସଂସ୍କୃତି ଯୋଡି ହେଇଥିବାରୁ ସେ ମଧ ପ୍ରଭାବିତ ହେବାକୁ ଲାଗିଲା । ଜଗତିକରଣ ଆରମ୍ଭ ହେବା ଦିନ ଠାରୁ ଆମ ଦେଶକୁ ପ୍ରଚୁର ପରିମାଣରେ ବାହାରୁ ଅର୍ଥ ଆସିବାକୁ ଲାଗିଲା । ସେ ସବୁ ସମସ୍ତ ଦେଶର ଜନ ଜୀବନକୁ ନିୟନ୍ତ୍ରଣ କଲା । ଏପରିକି ଆମର 'ଏଟିଚିଉଡ' ମଧ ବଦଳି ଯାଇ ଅର୍ଥସର୍ବସ୍ୱ ହେଲା । ଆମର ମୂଲ୍ୟବୋଧ, ଚରିତ୍ର, ସମାଜ ପ୍ରତି ବା

ରାଷ୍ଟ୍ର ପ୍ରତି ଆଭିମୁଖ୍ୟ ମଧ ବଦଳିଗଲା । ଅର୍ଥ ବିନିମୟରେ ସମଗ୍ର ପ୍ରତିନିଧି ସଭାମାନଙ୍କୁ ଯେ ଦଖଲ କରାଯାଇ ପାରେ ଏ ପ୍ରକାର ଇଚ୍ଛା ଆମ ଭିତରେ ଉଗ୍ର ହେଇ ଉଠିଲା । ତା ଉପରେ ପରୀକ୍ଷା ନିରୀକ୍ଷା ଏବେ ଜୋରସୋରରେ ଚାଲିଛି । ଏଇଠୁ ଆରମ୍ଭ ହେଲା ନୀତିହୀନତା । ନୀତି ଯୋଉଠି ଶେଷ ହୁଏ ସେଇଠୁ ଆରମ୍ଭ ହୁଏ ଦୁର୍ନୀତି । ନୀତିହୀନତା ଓ ଦୁର୍ନୀତି ପରାୟଣତା ଏବେ ଏତେ ବଢି ଯାଇଛି ଯେ ଏହା ଆମର ସମଗ୍ର ଜନଜୀବନକୁ ପଙ୍କରେ ପୋତି ପକାଇଲାଣି । ସେ ପଙ୍କରେ ଆମ ଗୋଡ ପ୍ରତିଦିନ ଚାଲିଚି ତଳକୁ ଓ ତଳକୁ । ଏଥିରୁ ମୁକ୍ତି କାହିଁ ?

ଏଇ ସବୁ ସଂପର୍କରେ ମୁଁ ଏ ଯାବତ ଏକ ହଜାରରୁ ଉର୍ଦ୍ଧ୍ୱ ପ୍ରବଂଧ ବିଭିନ୍ନ ପତ୍ର ପତ୍ରିକାରେ ଲେଖିଚି । ଏ ସବୁ ଲେଖିଲା ବେଳେ ମୁଁ ମୋର ସମସ୍ତ ଶକ୍ତି ଖଟେଇ ସ୍ଥିତାବସ୍ଥା ଉପରେ ଆଘାତ କରିବାକୁ ଚେଷ୍ଟା କରିଚି । ଅପସଂସ୍କୃତିକୁ ସଂହାର କରିବାକୁ ଚେଷ୍ଟା କରିଚି । ମୌଳବାଦ ବିରୁଦ୍ଧରେ ମୋର ଯୁଦ୍ଧ ଓ ଆକ୍ରମଣକୁ ମୁଁ ବରାବର ଅପ୍ରତିହତ କରି ରଖି ଆସିଚି । ଶତ୍ରୁପକ୍ଷ ଯେତେବେଳେ ଏଥିରେ କ୍ଷତାକ୍ତ ହୁଏ ସେମାନେ ପ୍ରତିଆକ୍ରମଣ କରନ୍ତି । ମୁଁ ତା ପାଇଁ ପ୍ରସ୍ତୁତ ଥାଏଁ ।

କେବଳ ଗୋଟିଏ ଘଟଣାରେ, ଗୋଟିଏ ଗୋଷ୍ଠୀ ଠାରୁ ପ୍ରାୟ ୨୫/୩୦ଟି ଚିଠି ପାଇଥିଲି ମାତ୍ର ଦଶଦିନ ଭିତରେ । ମୁଁ ସବୁ କ୍ରୋଧକୁ ସାଇତି ରଖିଚି ଯତ୍ନରେ ।

ଲେଖକର ଜୀବନ କେବେବି କୁସୁମିତ ହେଇ ପାରେନା । ଲେଖକଟିଏ ସଂଗ୍ରାମୀ ହେବାକୁ ବାଧ । ମୁଁ ଏଇ କଥାରେ ବିଶ୍ୱାସ କରେଁ ।

ବିଭିନ୍ନ ସଂବାଦପତ୍ରରେ ପ୍ରକାଶିତ କେତୋଟି ନିର୍ବାଚିତ ପ୍ରବଂଧକୁ ନେଇ ମୋର ଏ ଦ୍ୱିତୀୟ ସଂକଳନ ଏବେ ପାଠକଙ୍କ ହାତକୁ ଆସିଚି । ପ୍ରଥମ ସଂକଳନର ପ୍ରକାଶକ ଦ୍ୱିତୀୟଟିର ପ୍ରକାଶନ ଦାୟିତ୍ୱ ମଧ ସାଦରେ ଗ୍ରହଣ କଲେ । ମୁଁ ଏଥିପାଇଁ ତାଙ୍କୁ କିପରି ଭାବରେ ମୋର ସାଧୁବାଦ ଜଣେଇବି ବୁଝି ପାରୁନି । ପ୍ରଥମ ସଂକଳନଟି ଯେ କେବଳ ପାଠକଙ୍କ ଦ୍ୱାରା ଆଦୃତ ହେଇଥିଲା ତା ନୁହେଁ, ତାର ସମୀକ୍ଷକମାନେ ମଧ ଭୂୟସୀ ପ୍ରଶଂସା କରିଚନ୍ତି । ମୁଁ ସେମାନଙ୍କ ଠାରେ ମଧ କୃତଜ୍ଞ । ମାତ୍ର ଦୁଇମାସ ଭିତରେ ଯୁବ ପ୍ରକାଶକ ଶ୍ରୀମାନ ଅରୁଣକାନ୍ତି ଦାସ ପୁସ୍ତକଟିକୁ ସର୍ବାଙ୍ଗସୁନ୍ଦର ରୂପ ଦେଇ ପାରିଥିବାରୁ ମୁଁ ପୁଣି ଥରେ ତାଙ୍କୁ ଧନ୍ୟବାଦ ଜଣାଉଚି ।

- ଭୂପେନ ମହାପାତ୍ର

# ଈଶ୍ୱରଙ୍କ ଭବିଷ୍ୟତ ଓ ଭବିଷ୍ୟତର ଈଶ୍ୱର

ଏ ବର୍ଷର ଆରମ୍ଭ ବେଳକୁ ଯେତେବେଳେ ପୃଥିବୀରେ କ୍ଲୋନିଂ ଦ୍ୱାରା ସୃଷ୍ଟି ହୋଇଥିବା ପ୍ରଥମ ମଣିଷ ଶିଶୁକୁ ସ୍ୱାଗତ କରାଗଲା ସେତେବେଳେ ଈଶ୍ୱରଙ୍କ ସ୍ୱର୍ଗରାଜ୍ୟରେ ଚହଳ ସୃଷ୍ଟି ହୋଇଥିବ । ସ୍ୱର୍ଗବାସୀ ଦେବତାମାନେ ବିସ୍ମୟ ବିସ୍ଫାରିତ ନେତ୍ରରେ ଈଶ୍ୱରଙ୍କ ଆଡ଼କୁ ଦେଖୁଥିବେ ଏବଂ ସେମାନେ ମଧ୍ୟ ମଣିଷର ଏ ଅସାମାନ୍ୟ ସଫଳତା ଦେଖି ନିଶ୍ଚୟ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଇଥିବେ । ସେମାନେ ହୁଏତ ଈଶ୍ୱରଙ୍କୁ ପ୍ରଶ୍ନ କରିଥିବେ, ''ହେ ଈଶ୍ୱର ! ତୁମେ କ'ଣ ଇଚ୍ଛା କରି ସୃଷ୍ଟିର ଏ ସର୍ବୋତ୍ତମ କ୍ଷମତା ଟିକକ ମଣିଷ ହାତରେ ଏବେ ଅର୍ପଣ କରିଦେଲ ? ତା ପଛରେ ତୁମର ଆଉ କିଛି ମାୟା ନାହିଁ ତ ? ତେବେ ତୁମେ ଏବେ କରିବ କଅଣ ? ତୁମେ କଅଣ ସ୍ୱର୍ଗରାଜ୍ୟରୁ ବିଦାୟ ନେବ ? ତୁମର ଭବିଷ୍ୟତ କର୍ମପନ୍ଥା ?'' ଏଥିରେ ଈଶ୍ୱର ସାମାନ୍ୟ ହସି ଦେଇଥିବେ । ବଡ଼ ମ୍ଳାନ ହସଟିଏ । ଭୟାର୍ତ୍ତ ସ୍ୱରରେ ସେ ହୁଏତ କହିଥିବେ, ''ମୋର ଚିରନ୍ତନୀ ଅଧିକାର ଟିକକ ଏବେ ସେମାନେ ମୋ ହାତରୁ ଛଡାଇ ନେଲେ । ଏବର ମଣିଷ ଯେ ଖାଲି ମଣିଷ ସୃଷ୍ଟି କରିବ ତା ନୁହେଁ ସେ ଦେବତା ମଧ୍ୟ ସୃଷ୍ଟି କରିବ । ଆଉ ମୋର ଭବିଷ୍ୟତ କଥା ପଚାରୁଛ ? ସେମାନେ ମୋତେ ଆଲୋକଠାରୁ ଅନେକ ଦୂରକୁ ଠେଲି ଦେଲା ପରେ ମୋର ଆଉ ଭବିଷ୍ୟତ କଅଣ ? ଗୋଟାଏ ଅସରନ୍ତି ଅନ୍ଧକାର ଭିତରକୁ ଚିରଦିନକୁ ଚାଲି ଯିବାକୁ ହେବ । ମଣିଷ ବିଜ୍ଞାନ ନାମକ ବସ୍ତୁଟିକୁ ହାତରେ ପାଇଗଲା ପରେ ସେ ଅମୃତର ଅଧିକାରୀ ହୋଇସାରିଛି । ମୁଁ ଏବେ ନିରୁପାୟ ।''

କ୍ଲୋନିଂ ଦ୍ୱାରା ବିଶ୍ୱର ପ୍ରଥମ ଶିଶୁଟିକୁ ମଣିଷ ସୃଷ୍ଟି କଲାପରେ ସାରା ପୃଥିବୀରେ ଯୋଉ ଚହଳ ସୃଷ୍ଟିହେଲା ତାହା ମଧ୍ୟ କମ୍ ଅସ୍ୱାଭାବିକ ନୁହେଁ । ସୃଷ୍ଟିର ଆରମ୍ଭରୁ ଯୋଉ ମଣିଷମାନେ ପ୍ରକୃତି ଉପରେ ଚରମ ବିଶ୍ୱାସ ସ୍ଥାପନ କରି ଆସିଥିଲେ ସେ ବିଶ୍ୱାସର ମୂଳଦୁଆ ସମ୍ପୂର୍ଣ୍ଣ ଦୋହଲିଗଲା । ସେମାନେ ପ୍ରତିବାଦର ସ୍ୱର ଉତ୍ତୋଳନ କରି କହିଲେ, ''ଏ ସବୁ ଅନ୍ୟାୟ । ବିଜ୍ଞାନ କେବେ ପ୍ରକୃତିକୁ ବିରୋଧ କରିବାକୁ ସୃଷ୍ଟି ହୋଇ ନ ଥିଲା କି ହୋଇ ନାହିଁ ମଧ୍ୟ । ଉଭୟ ବିଜ୍ଞାନ ଓ ପ୍ରକୃତି ଏ ପୃଥିବୀରେ ଗୋଟିଏ ସମାନ ଓ ସମାନ୍ତର ବ୍ୟବଧାନରେ ନିଜ ନିଜ ସ୍ଥାନରେ ଅବସ୍ଥାନ କରୁ ଏହା ଆମର ଇଚ୍ଛା । ଆମ ଜୀବନକୁ କେବଳ ବିଜ୍ଞାନ କି ପ୍ରକୃତି ପ୍ରଭାବିତ କରି ରଖୁ ଏହା ଆମେ

ଚାହୁଁନା । ପ୍ରକୃତି ବିନା ମଣିଷର ଜୀବନ ଦୁର୍ବିସହ ହେଇ ଉଠିବ ନାହିଁ କି ? ବିଜ୍ଞାନର ଜଡ଼ତା ମଣିଷ ଜୀବନକୁ ଘାଣ୍ଣୁ କରିଦେବ ।''

ବିଜ୍ଞାନ ହସିଦେଲା । ବିଜୟ ଗର୍ବରେ ଉଲ୍ଲସିତ ସେ ହସ ଅସମ୍ଭବ ଅସୂୟା ଫୋପାଡ଼ି ଦେଉଥିଲା ପ୍ରକୃତି ଉପରକୁ । ସେ କହିଲା, ''ଅସମ୍ଭବ । ବିଜ୍ଞାନ ଓ ପ୍ରକୃତି କେବେ ଏକାଠି ହେଇ ପାରେନା । ସେ ସମୟ ଚାଲି ଯାଇଛି । ଏବେ ବିଜ୍ଞାନ ହିଁ ସର୍ବେ ସର୍ବା । ମୋତେ ଆଉ କେହି ଅଟକେଇ ପାରିବେ ନାହିଁ । ମୋର ଗତି ଅବାରିତ । ମୁଁ ଏ ସୃଷ୍ଟିକୁ ତିଆରି କରିଛି । ତୁମର ଅଜ୍ଞାନତା ଯୋଗୁଁ ତୁମେ ଏ ଯାଏ ମୋ ସ୍ଥାନରେ ଈଶ୍ୱର ନାମକ ଅଶରୀରୀ ଆତ୍ମାଟିକୁ ପୂଜା କରି ଆସୁଥିଲ । ଏଣିକି ସେ ପୂଜା ମୋର ପ୍ରାପ୍ୟ । ଏ କଥା ତୁମକୁ ସ୍ୱୀକାର କରିବାକୁ ପଡ଼ିବ ।''

''ତେବେ ପ୍ରକୃତି ? ଆମର ପ୍ରାକୃତିକତା ? ଆମର ପରମ୍ପରା ? ଆମ ସମାଜ ?''

ପ୍ରକୃତିବାଦୀ ମଣିଷମାନେ ଜିଜ୍ଞାସା କଲେ ଅତି ଅସହାୟ ଭାବରେ ।

''ଭୁଲ । ସବୁ ଭୁଲ । ସବୁରି ମୂଳରେ ମୁଁ ଥିଲି । ଅଛି ଓ ରହିବି । ମଧ । ତୁମେ ସ୍ୱାଭାବିକ ଜନ୍ମ କଥା କହୁଚ ତ ? କୋଉଠି ଅଛି ସେ ସ୍ୱାଭାବିକତା ? ଜନ୍ମଟା ଇଚ୍ଛାଧୀନ ହେଇଗଲା ପରେ ଆଉ ସ୍ୱାଭାବିକତାର ପ୍ରଶ୍ନ ରହିଲା କୋଉଠି ? ଆଉ ତୁମ ସମାଜ ଓ ପରମ୍ପରା କଥା କହୁଛ ? କୋଉଠି ଅଛି ସେ ସବୁ ଆଜି ? 'ଯେ କୌଣସି ପୁରୁଷ ଓ ସ୍ତ୍ରୀ ଯେତେଦିନ ଇଚ୍ଛା ଏକାଠି ରହି ପାରିବେ' କଥାଟାକୁ ତୁମ ଆଇନ ବା ରାଷ୍ଟ୍ର ସ୍ୱୀକୃତି ଦେଲାପରେ ତୁମେ ଆଉ କୋଉ ସମାଜ କଥା କହୁଛ ?

ସେମାନେ ସ୍ୱାମୀ ଓ ସ୍ତ୍ରୀ ହେଇ ପାରନ୍ତି ନ ପାରନ୍ତି ମଧ । ସେମାନେ ସନ୍ତାନ ପ୍ରସବ କରି ପାରନ୍ତି ଓ ନ ପାରନ୍ତି ମଧ । ଏବେ ତ ପ୍ରାକୃତିକତାର ବିରୋଧ କରି ତୁମ ସମାଜ ସମଲିଙ୍ଗୀ ବିବାହକୁ ମଧ ସ୍ୱୀକୃତି ଦେଲାଣି । ତେବେ ତୁମେ ଆଉ କୋଉ ସମାଜ ଓ କୋଉ ପରମ୍ପରାକୁ ନେଇ ଗର୍ବ କରୁଛ ? ତୁମର ସମଗ୍ର ସୃଷ୍ଟିଶୀଳତାର ଇଚ୍ଛାଶକ୍ତିଟାକୁ ନିୟନ୍ତ୍ରଣ କରୁ ନାହିଁ କି ? ତେଣୁ ସବୁକୁ ନେଇ ଯୋଉ କେନ୍ଦ୍ର ବିନ୍ଦୁଟି ତିଆରି ହେଇଛି ତା ମୂଳରେ ମୁଁ ଥିଲା ବେଳେ ତୁମେ ଆଉ କାହାକୁ ମୋ ସହିତ ଯୋଡ଼ିବାକୁ ଚାହୁଁଛ ? ଆଉ କେତେ ଦିନ ଈଶ୍ୱର ତୁମର ଏ ଦୁର୍ବଳ ମାନସିକତାକୁ ନେଇ ଖେଳ ଖେଳୁଥିବେ ? ତୁମେ ବାହାରି ଆସ ସେ ଅର୍ଗଳି ଭିତରୁ । ଏଇ ଦେଖ ତୁମ ଆଗରେ ମୁଁ ରାସ୍ତା ବିଛାଇ ଦେଇଛି । ଏହାହିଁ ଏକମାତ୍ର ରାସ୍ତା । ଯେତେଦିନ ଯାଏ ତୁମର ଏ ଅବଚେତନ ଓ ରୁଗ୍ଣ ମନ ତୁମ ଭିତରେ ରାଜତ୍ୱ କରୁଥିବ ସେତେଦିନ ଯାଏ ତୁମେ ନିଜକୁ ଛଳନାର ଦୁର୍ଗ ଭିତରେ ଆବଦ୍ଧ କରି ରଖିବ । ଆସ ଏଥର ସତ୍ୟର ଉପଲବ୍ଧି କର ।''

''କିନ୍ତୁ ତୁମର(କ୍ଲୋନିଂ) ଯଦି ଅପବ୍ୟବହାର ହୁଏ ? ହେଇତ, ସେ ଦିନ ଆଶଙ୍କା ପ୍ରକାଶ କରି ଜାନୁଆରୀ ୩ର 'ଷ୍ଟେଟସମେନ୍'ର ସଂପାଦକୀୟ ଲେଖିଛି ଯଦି ହିଟଲର, ମୁସୋଲିନି, ତୋଗାଡିଆ ଓ ନରେନ୍ଦ୍ର ମୋଦିମାନେ ସୃଷ୍ଟି ହୁଅନ୍ତି ? ଏ ସୁନ୍ଦର ପୃଥିବୀ, ଏ ମହିମା ମଣ୍ଡିତ ମଣିଷମାନେ ଧ୍ୱଂସ ଆଡ଼କୁ ଟାଣି ହେଇଯିବେ ନାହିଁ କି ?''

''ନା, ଏ ଧାରଣା ମଧ ତୁମର ଭୁଲ । କ୍ଲୋନିଂର ନୂତନ ଶିଶୁଟି ହେବ ସୁନ୍ଦର ଓ ମହତ୍ତମ ସୃଷ୍ଟି । ସେ ମଧ ରହିବ ଦେବତ୍ୱ କିମ୍ବା ତା'ଠୁ ଅନେକ ଉର୍ଦ୍ଧ୍ୱରେ । ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇଥିବା ସତ୍ୟରୁ ଜଣାପଡ଼ିଛି, ତା'ଠାରେ ନଥିବ ଭୟଙ୍କର ବା ଜେନେଟିକ ରୋଗ । ତା'ର ପରୀକ୍ଷା ମଧ ବାଟ ଫିଟାଇବ ମଣିଷର ବାର୍ଦ୍ଧକ୍ୟ ସମେତ ବହୁ ଜଟିଳ ରୋଗର ପ୍ରତିକାର । ମଣିଷ ହେବ ଅମର । ଅମୃତର ଅଧିକାରୀ । ଆଉ ତାଛଡ଼ା କ୍ଲୋନିଂର ଶିଶୁ ରହିବ ଜାତି, ଧର୍ମ, ସମ୍ପ୍ରଦାୟ ପ୍ରଭୃତି ସବୁ ପ୍ରକାର ସଂକୀର୍ଣ୍ଣତାର ଉର୍ଦ୍ଧ୍ୱରେ । ଦେବତାରେ ପରିଣତ ହେଲା ବେଳକୁ ସେ ହେଇଯିବ ସ୍ୱୟଂସମ୍ପୂର୍ଣ୍ଣ ତଥା ସମୁଜ୍ଜ୍ୱଳ ମଣିଷଟିଏ ଯାହାକୁ କବିମାନେ 'ସବାର ଉପରେ ମାନୁଷ' ବୋଲି ଅବିହିତ କରିଛନ୍ତି । ସେତେବେଳେ ତା'ଠି ନଥିବ ହିଂସା, ଦ୍ୱେଷ ଓ ଅସହନଶୀଳତାର ବିଷ । ଥିବ ଖାଲି ସ୍ନେହ, ପ୍ରେମ, କ୍ଷମା ଓ ସମ୍ବେଦନପରି ଦେବଗୁଣ ସବୁ । ସେତେବେଳେ ହିଟଲର, ମୁସୋଲିନୀ, ତୋଗାଡିଆ ଓ ମୋଦୀମାନଙ୍କର ସ୍ୱାଭାବିକ ସମାଧି ହେଇ ସାରିଥିବ । ପୃଥିବୀରୁ ଏମାନଙ୍କର ସତ୍ତା ଲୋପ ପାଇଥିବ । କ୍ଲୋନିଂର ନୂତନ ପୃଥିବୀରେ ନୂତନ ମଣିଷମାନେ ହିଁ ହେବେ 'ନରୋତ୍ତମ' ବା 'ପୁରୁଷୋତ୍ତମ' । ବିଜ୍ଞାନ ତା'ର ବିକଳ୍ପ ରଖିନାହିଁ । ବିପରୀତ ଶବ୍ଦ ମଧ ରଖିନାହିଁ । ଉତ୍କୃଷ୍ଟରୁ ସର୍ବୋତ୍କୃଷ୍ଟ ଯାଏ ସବୁର ଅଧିକାରୀ ହେବ ମଣିଷ । ତାହାହିଁ ହେବ ନୂତନ ବିଶ୍ୱର ନୂତନ ମାନଚିତ୍ର ଏବଂ ସେତେବେଳେ ବିଜ୍ଞାନ ହିଁ ହେବ ମଣିଷର ଏକମାତ୍ର ଈଶ୍ୱର ।

❑

('ସମାଜ'-୧୬.୦୩.୨୦୦୩)

# ଅରଣ୍ୟର ଅଧିକାର

ମୁଁ ଯେତେବେଳେ ଅରଣ୍ୟର ଅଧିକାର କଥା ଲେଖିବାକୁ ଯାଉଚି ସେତେବେଳେ ମହାଶ୍ୱେତା ଦେବୀଙ୍କ ବିଖ୍ୟାତ ଉପନ୍ୟାସ କଥା ନିଶ୍ଚୟ କହିବାକୁ ଯାଉନାହିଁ । ତେବେ ତାର ବିଷୟ ବସ୍ତୁଠାରୁ ମୁଁ ଅଲଗା ହେବାକୁ ଚାହୁଁନାହିଁ । କାରଣ ଆଦିବାସୀଙ୍କ ଜୀବନ, ହରିଜନ ବା ଦଳିତଙ୍କ ଜୀବନକୁ ବାଦ ଦେଇ କେବେହେଲେ ସାହିତ୍ୟ ସୃଷ୍ଟି ହେଇ ପାରେନା । ସାଧାରଣ ଜନଜୀବନ ଠାରୁ ଅଲଗା ହେଇ କୌଣସି ସାହିତ୍ୟ ବା କଳା ତିଷ୍ଠି ପାରେନା । ସାହିତ୍ୟ ସବୁବେଳେ ସେଇ ଅତ୍ୟାଚାରିତ ବା ନିର୍ଯ୍ୟାତିତଙ୍କ କଥା କହିଥାଏ । ତାହାହିଁ ସାହିତ୍ୟର ଧର୍ମ ।

ମୋର କହିବାର କଥା ଏଇ କେତେଦିନ ତଳେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ମାଲକାନଗିରି ଯାଇ ସେଠି ସହିଦ ଲକ୍ଷ୍ମଣ ନାୟକଙ୍କ ଜନ୍ମ ଦିବସରେ (ନଭେମ୍ବର ୨୨) ଗୋଟିଏ ସାହିତ୍ୟ ସଭାର ଆୟୋଜନ କରିଥିଲେ । ଏକାଡେମୀର ସଭାପତି, ଉପସଭାପତି ଏବଂ ସମ୍ପାଦକ ମଧ୍ୟ ସେଠାକୁ ଯାଇଥିଲେ । କିଛି ଆଦିବାସୀଙ୍କୁ ନେଇ, ଆଦିବାସୀଙ୍କ ଭାଷାର କବିତା ପାଠୋତ୍ସବଟିଏ ମଧ୍ୟ ହେଇଥିଲା । ଏଥିରେ 'ଆଦିବାସୀ ଲୋକ କବିତା' ଶୀର୍ଷକ ଆଲୋଚନା ଚକ୍ରଟିଏ ମଧ୍ୟ ଆୟୋଜିତ ହେଇଥିଲା । ଯାହା ଖବର ପ୍ରକାଶ ପାଇଚି ସେଥିରେ ଏ ପ୍ରକାର ସଭାର ଆଭିମୁଖ୍ୟ ବିଷୟରେ କିଛି ଲେଖା ଯାଇ ନ ଥିଲେ ମଧ୍ୟ ବିଭିନ୍ନ ଆଦିବାସୀ ଭାଷା ଯଥା ସାନ୍ତାଳୀ, କୋୟା ଓ ବଣ୍ଡା ଭାଷାରେ ଥିବା ଲୋକ କବିତା ଉପରେ ପ୍ରବନ୍ଧମାନ ଉପସ୍ଥାପିତ ହେଇଥିଲା ବୋଲି ଜଣା ଯାଇଛି । ଆଲୋଚନା ଚକ୍ରରେ ଭାଗ ନେଇ ବକ୍ତାମାନେ ''ଲୁପ୍ତପ୍ରାୟ ଆଦିବାସୀ ଲୋକ କବିତାର ଆକର୍ଷଣୀୟ ବିଭବ'' ଉପରେ ଆଲୋକପାତ କରିଥିଲା ।

ସାହିତ୍ୟ ଏକାଡ଼େମୀ ଏ ପ୍ରକାର ସାହିତ୍ୟ ଅଧିବେଶନ ଆଗରୁ କେବେ କରିଥିଲେ କି ନା ମୁଁ ଜାଣେଁନା । ଯଦି ହେଇଥିବ ତେବେ ତାହା ଆଜିର ପ୍ରକାଶିତ କାର୍ଯ୍ୟକ୍ରମ ପରି ହେଇଥିବ, ଯାହା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରି ପାରି ନ ଥିବ । ଏହା କିପରି ଭାବରେ ପ୍ରଭାବ ସୃଷ୍ଟି କରିଥିବ ଏବଂ କେତେଦୂର ସେ ଅଞ୍ଚଳର ଜନଜୀବନକୁ ଆକର୍ଷିତ କରିଥିବ ସେ କଥା ମଧ୍ୟ ମୁଁ ଜାଣେନା । ତା ସତ୍ତ୍ୱେ ସାହିତ୍ୟ ଏକାଡ଼େମୀ ଆମର ଧନ୍ୟବାଦାର୍ହ ।

ଏ ପ୍ରସଙ୍ଗଟିରେ ଦୁଇଟି କଥା ରହିଛି । ଗୋଟିଏ ହେଲା ଲକ୍ଷ୍ମଣ ନାୟକଙ୍କ ଜନ୍ମ ଦିବସରେ ସଭା କରାଯାଇ ଥିବାରୁ ତାଙ୍କ ଜୀବନୀ, ତାଙ୍କ ସାଲିସ ବିହୀନ ସଂଗ୍ରାମ, ତାଙ୍କର ବିପ୍ଳବୀ ଚରିତ୍ରକୁ ଆଗକୁ ଆଣିବା ଏବଂ ଏବର ଜନମାନସକୁ ସେଥିରେ ଅନୁପ୍ରାଣିତ କରେଇବାକୁ ଚେଷ୍ଟା କରିବା । ଦ୍ୱିତୀୟ କଥାଟି ହେଲା ଆମର ଅନେକ ଦିନୁ ଆଡେଇ ହୋଇ ରହିଥିବା ଆଦିବାସୀ ଭାଷା ଓ ସାହିତ୍ୟର ଆକର୍ଷଣୀୟ ବିଭବକୁ ଲୋକ ଲୋଚନକୁ ଆଣି ଆମ ସାଙ୍ଗରେ ମିଶେଇବା । ତାହାହିଁ ଏ ପ୍ରକାର ସାହିତ୍ୟ ସଭାର ଆଭିମୁଖ୍ୟ । ଆଦିବାସୀମାନେ ଆମଠାରୁ ଅନେକ ଦିନୁ ଅଲଗା ହେଇ ରହିଛନ୍ତି । ଆମେ ଜାଣିଶୁଣି ସେମାନଙ୍କୁ ଅଲଗା କରି ରଖିଛୁଁ । ସୃଷ୍ଟିର ଆରମ୍ଭରୁ ଆମେ ସେମାନଙ୍କୁ ମଣିଷ ବୋଲି ସ୍ୱୀକାର କରିନାହୁଁ ତାଙ୍କୁ ପାଖରେ ପୂରାଇ ନାହୁଁ । ସେମାନେ ଗୋଟାଏ ଅଭିଶପ୍ତ ଜାତି ଏବଂ ବରାବର ସେମାନେ ଅଲଗା ହେଇ ରହିବାକୁ ଜନ୍ମ ହେଇଛନ୍ତି ବୋଲି ଆମେ କହୁଁ । ଖାଲି କହୁଁ ନୁହେଁ, ଆମେ ସେଥିପାଇଁ ଗର୍ବ କରୁଁ ମଧ୍ୟ, କାରଣ ସବୁ ସୁବିଧା ଓ ସୁଯୋଗ କେବଳ ଈଶ୍ୱର ଆମପାଇଁ ରଖିଛନ୍ତି ବୋଲି ଆମେ କେତେ ବାହାସ୍ଫୋଟ ମାରୁଁ ଏବଂ ସେମାନଙ୍କୁ ଆଡ଼େଇ ଦେଇ ଆମେ ତାଙ୍କ ଭାଗଟା ଛଡ଼େଇ ନେଉଁ । ତାହାହିଁ ଉଚିତ ବୋଲି କହୁଁ ଏବଂ ସେଥିରେ ସେମାନଙ୍କର ଭାଗ ନାହିଁ ବୋଲି କହୁଁ । ଗୋଟାଏ ସୁବିଧାବାଦୀ ଢଙ୍ଗରେ ଆମେ କୋଉ ଯୁଗରୁ ଏଇ କାମ କରି ଆସୁଛୁଁ । ତାଙ୍କ ଉପରେ ଅତ୍ୟାଚାର କରି ଯାବତ କଷଣ ତାଙ୍କୁ ଦେଇ ଆସୁଛୁଁ ।

ପୃଥିବୀଟା କେବେବି ଭାଗ ଭାଗ ହୋଇ ରହିବାକୁ ସୃଷ୍ଟି ହେଇ ନ ଥିଲା । ଆମର ସୃଷ୍ଟିଟାରେ ଦଳେ ସବୁବେଳେ ତଳେ ଥାଆନ୍ତୁ ଓ ଆର ଦଳ ଉପରେ ଥାଇ ମଉଜ ମଜଲିସ କରି ସମୟ କାଟୁ ଥାଆନ୍ତୁ ଏକଥା କେହି କେବେ କହି ନାହିଁ । ଆମର ଏଇ ମାନସିକତା ଲାଗି ସେମାନେ ଆଡ଼େଇ ହେଇ ଯାଇଛନ୍ତି । ତେଣୁ ତାଙ୍କ ଭାଷା ଓ ସାହିତ୍ୟରେ କଅଣ ଅଛି ଏ ଯାଏ ଆମେ ବୁଝିବାକୁ ଚେଷ୍ଟା କରିନାହୁଁ । ଗୋଟାଏ ଦଳିତର ଭାଷା କେବେ ଉନ୍ନତ ହେଇପାରେନା, ଏହାହିଁ ଆମର ଧାରଣା । ଡେରିରେ ହେଲେ ମଧ୍ୟ ସାହିତ୍ୟ ଏକାଡ଼େମୀ ଆଜି ସେମାନଙ୍କ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ଆପଣେଇ ନେବାକୁ ଚେଷ୍ଟା କରୁଛି । ବାହାରେ ରହିଥିବା ବିରାଟ ଜନଜୀବନକୁ ପାଖକୁ ଆଣିବାକୁ ଚେଷ୍ଟା କରୁଛି । ସେମାନଙ୍କୁ ଅତ୍ୟାଚାରରୁ ମୁକ୍ତି ଦେଇ ତାଙ୍କ ଆଖିରୁ ଲୁହ ପୋଛିବାକୁ ଚେଷ୍ଟା କରୁଛି । ତା ଭିତରେ ସେମାନେ "ଲୁପ୍ତପ୍ରାୟ ଆକର୍ଷଣୀୟ ବିଭବ" ଅଛି ବୋଲି କହୁଛନ୍ତି ।

ମଣିଷକୁ ମଣିଷ ସହିତ ଯୋଡ଼ିବାରେ ସାହିତ୍ୟ ଗୋଟାଏ ଶକ୍ତିଶାଳୀ ମାଧ୍ୟମ ହେଇ କାମ କରେ । ଖାଲି ଓଡ଼ିଶାରେ ନୁହେଁ କି ଭାରତରେ ନୁହେଁ, ସମଗ୍ର ପୃଥିବୀରେ

ଏମିତି କୋଟି କୋଟି ମଣିଷ ଅଛନ୍ତି ଯେଉଁମାନେ ବରାବର ଆଉ ଅଳ୍ପ କେତେଜଣଙ୍କ ଦ୍ୱାର ଅତ୍ୟାଚାରର ଶିକାର ହେଇ ଆସୁଛନ୍ତି । ଯୋଉ ଅବସ୍ଥା ଓଡ଼ିଶାର କୋରାପୁଟ, କାଳାହାଣ୍ଡି ଇତ୍ୟାଦି ପାହାଡ଼ ଓ ଜଙ୍ଗଲରେ ଥିବା ଆଦିବାସୀମାନେ ଭୋଗୁଛନ୍ତି ଠିକ ସେଇ ଅବସ୍ଥା ଆସାମ ଓ ତ୍ରିପୁରାର ଆଦିବାସୀମାନେ ଭୋଗୁଛନ୍ତି । ଠିକ୍ ସେଇ ଅବସ୍ଥା ଗୁଆଟେମାଲାର ଆଦିବାସୀମାନେ ମଧ୍ୟ ଭୋଗୁଛନ୍ତି । ମୁଁ ଯେତେବେଳେ ଅରବିନ୍ଦ ବେହେରାଙ୍କ ଅନୂଦିତ 'ମୁଁ, ରିଗୋବେର୍ଟା ମେଞ୍ଚୁ' ପଢ଼ିଲି ସେତେବେଳେ ସ୍ତମ୍ଭୀଭୂତ ହେଇଗଲି । ଗୋଟାଏ ପ୍ରାଗୈତିହାସିକ ଯୁଗର କଥା ପଢୁଛି ବୋଲି ମନେ ହେଲା । ସେତେବେଳେ ମଣିଷ ଲଙ୍ଗଳା ରହୁଥିଲା, ଗଛରୁ ତାଳପତ୍ର କଞ୍ଚା ଖାଉଥିଲା ଏବଂ ଯୋଉଠି ଜନ୍ମୁଥିଲା ସେଇଠି ମରୁଥିଲା । ସେ ମୃତ୍ୟୁକୁ ସମସ୍ତେ ଦେଖୁଥିଲେ ଏବଂ ନୀରବ ରହୁଥିଲେ । ଶବ ପଡ଼ି ପଡ଼ି ନଷ୍ଟ ହେଉଥିଲା । ଆଉ ''ଜୋର ଯାହାର ମୁଲକ ତାର'' ଏ କଥାଟା ସେତିକି ବେଳୁ ସୃଷ୍ଟି ହେଇଥିବ କି କଅଣ । ମଣିଷ ମଣିଷକୁ ବାହୁ ବଳରେ ଅକ୍ତିଆର କରି ପୃଥିବୀକୁ ଦଖଲ କରି ଯାଉଥିଲା । କିନ୍ତୁ ସେ ସବୁ ପ୍ରାଗୈତିହାସିକ ଯୁଗର କଥା ନ ଥିଲା । 'ରିଗୋବେର୍ଟା ମେଞ୍ଚୁ'ଙ୍କ ଜୀବନ ସଂଗ୍ରାମ ବିଂଶ ଶତାବ୍ଦୀର କଥା । ସେତେବେଳେ ପୃଥିବୀ ସଭ୍ୟତାର ଆଲୋକରେ ଉଦ୍‌ଭାସିତ ହେଇ ସାରିଲାଣି, ଆମେ ଗ୍ରହାନ୍ତରକୁ ଯାଇ ପାରିଲୁଣି । ବିଜ୍ଞାନର ଆଶୀର୍ବାଦ ଆମକୁ ସଭ୍ୟତାର ଶୀର୍ଷତମ ସ୍ଥାନରେ ପହଞ୍ଚାଇ ଦେଲାଣି । ଏସବୁ ସତ୍ତ୍ୱେ ମେଞ୍ଚୁ ଓ ତାଙ୍କର ଭାଇ ଭଉଣୀମାନଙ୍କୁ ମକାଗଛର ପତ୍ର, ମକାର ଶଣ୍ଢା ଖାଇ ଜୀବନ ବଞ୍ଚିବାକୁ ପଡୁଛି ? ନାଁ'କୁ ମାତ୍ର ଖଣ୍ଡିଏ ଲୁଗାରେ ଦିନ କାଟିବାକୁ ପଡୁଛି ? ମୁନ୍ଦାଏ ପାଣି ପାଇଁ ମାଇଲ ମାଇଲ ପଥ ଅତିକ୍ରମ କରିବାକୁ ପଡୁଛି ? ମେଞ୍ଚୁ ଯେତେବେଳେ କହିଦେଲେ ''ମୋର ଶୈଶବ ବୋଲି କିଛି ନଥିଲା '' ମୋ ଭିତରେ ଗୋଟାଏ ବିସ୍ଫୋରଣ ସୃଷ୍ଟି ହେଲା । ମୁଁ ଭାବିଲି ଏ ପୃଥିବୀ ଫାଟିଯାଉ ନାହିଁ କାହିଁକି ? ଲକ୍ଷ ଲକ୍ଷ ବଜ୍ର ଏକାଥରେ ଅଜାଡ଼ି ହେଇ ପଡୁନାହିଁ କାହିଁକି ? 'ମୁଁ ରିଗୋବେର୍ଟା ମେଞ୍ଚୁ' ଖଣ୍ଡେ ସାଧାରଣ ପୁସ୍ତକ ନୁହେଁ । ମେଞ୍ଚୁଙ୍କ ପରି ପୃଥିବୀର ଅଗଣିତ ସତତ ନିର୍ଯ୍ୟାତିତ ଅତ୍ୟାଚାରିତ ତଥା ବଞ୍ଚିବାର ସବୁ ପ୍ରକାର ଅଧିକାରରୁ ବଞ୍ଚିତ ହୋଇଥିବା ଜନଗଣଙ୍କ ଜୀବନ ଯନ୍ତ୍ରଣାର ଖଣ୍ଡେ ଅପୂର୍ବ ଦଲିଲ ।

ସେଇଟା ପୁଣି ଆଜି କାଠଗଡ଼ାରେ । ଲେଖକ, କବି, ସାହିତ୍ୟକ କିମ୍ବା ଚିନ୍ତାନାୟକ ନୁହେଁ କି କୌଣସି ବାଣୀପୀଠର ଦ୍ୱାର ଦେଶରେ ନୁହେଁ, ହାତଯୋଡ଼ି ଠିଆ ହେଇଛି ଆଇନର କୁର୍ସୀ ସାମନାରେ । କହୁଛି, ''କୁହ ମୁଁ ଠିକ କି ନୁହେଁ ।'' ଆମ ଦେଶର ବୁଦ୍ଧିଜୀବୀ ମହଲ ଅନ୍ଧ ଓ କାଲ । ସେମାନେ କିଛି ଦେଖି ପାରନ୍ତି ନାହିଁ କି ଶୁଣି ପାରନ୍ତି ନାହିଁ । ତେଣୁ ସବୁ କଥା ନ୍ୟାୟ ପାଳିକା ସ୍ଥିର କରେ । ଏଠି ମନ୍ଦିର ହେବ କି ମସଜିଦ୍

ହେବ, ଆମ ପିଲାଏ କି ବହି ପଢ଼ିବେ, ମୁଁ ହିନ୍ଦୁ କି ମୁସଲମାନ ଏବଂ ମୋର ଚିତ୍ରକଳା ଓ ସାହିତ୍ୟର ମୂଲ୍ୟାୟନ ଠାରୁ ଆରମ୍ଭ କରି ମୋର ଭାଗ୍ୟ ନିର୍ଦ୍ଧାରଣ ଯାଏ ସବୁ କିଛିର ସିଦ୍ଧାନ୍ତ ନିଆହୁଏ ନ୍ୟାୟ ପାଳିକାରେ । ଆମେ ସବୁ ସ୍ଥାଣୁ ଓ ଅଥର୍ବ । ଜଡ଼ ପାଲଟି ଯାଉଛି ଆମର ଚିନ୍ତା ଓ ଚେତନା । ତେଣୁ ମୁଁ ସେ ବହି ବିଷୟରେ ଆଉ ଆଲୋଚନା କରିବାକୁ ଏଠି ଯାଉନାହିଁ ।

ମୋର କହିବାର କଥା କୋଉ ଭାବରେ କୋରାପୁଟର ଆଦିବାସୀମାନେ ଗୁଆଟେମାଲାର 'ମେଞ୍ଚୁମାନଙ୍କ' ଠାରୁ ଭିନ୍ନ ? କେଉଁପରି ଭାବରେ ସେଠାକାର 'ଲାଡ଼ିନୋ' ମାନଙ୍କ ଠାରୁ ଆମର କୋୟା, ବଣ୍ଡା ଓ ସାନ୍ତାଳମାନେ ଭିନ୍ନ ? ସେମାନେ ମକା ଶଣ୍ଡାକୁ ସିଝେଇ ଖାଇ ଜୀବନ ବିତାଉ ଥବାବେଳେ ଆମ ଲୋକ ଆମ୍ବ ଟାକୁଆ ନେଇ ବଞ୍ଚିବାକୁ ବାଧ ହୁଅନ୍ତି । ଶୈଶବ ସେମାନଙ୍କର ଯେମିତି ଅପହୃତ ଆମର ବି ସେମିତି ଅପହୃତ । ସେମାନେ ଯେମିତି 'ଫିନକା'ରେ ଦୟନୀୟ ଜୀବନ ଯାପନ କରନ୍ତି ଏମାନେ ମଧ୍ୟ ଯାଯାବର ପରି ଘୂରି ବୁଲନ୍ତି । ହାଣ୍ଡି ଗଛରେ ଟଙ୍ଗା ହୁଏ । ସେମାନେ ଯେମିତି ଜଳ, ଜଙ୍ଗଲ ଓ ଜମି ପାଇଁ ଲଢ଼େଇ କରନ୍ତି, ଏମାନେ ସେମିତି ଗଛର ପତ୍ରଟିଏ ପାଇଁ ସଂଗ୍ରାମ କରନ୍ତି, ସାହୁକାର, ମହାଜନ ଓ ପ୍ରଶାସନ ସାଥିରେ । ସେମାନଙ୍କ ନାରୀର ଯୌବନ ଯେମିତି କେବଳ ଲୁଣ୍ଠନ ପାଇଁ ଉଦ୍ଦିଷ୍ଟ, ଏମାନଙ୍କ ଯୌବନ କଥା ଆମେ ନିଜେ ଜାଣୁଁଚେ । ଅତ୍ୟାଚାରର ଇସ୍ତାହାର ସବୁଠି ସମାନ ଭାବରେ ଚାଲିଥାଏ । ଗୋଟିକ ଦିଗରେ ସଭ୍ୟତାର ଅଗ୍ରଗତି ସାଙ୍ଗକୁ ଅନ୍ୟ ଦିଗରେ ଅମାନବିକତାର ଇତିହାସର ପୃଷ୍ଠା ଗୋଟିକ ପରେ ଗୋଟିଏ ଯୋଡ଼ି ହେଇ ଯାଉଥାଏ । ଗୁଆଟେମାଲାର ଆଦିବାସୀଙ୍କ ଉପରେ ଅତ୍ୟାଚରର ଧାରା ଓ କୋରାପୁଟର ଆଦିବାସୀଙ୍କ ଉପରେ ନକ୍ସଲ ଦମନ ନାଁରେ ପ୍ରଶାସନିକ ଅତ୍ୟାଚାର ଭିତରେ କୌଣସି ଫରକ୍ ନାହିଁ । ଆଶ୍ଚର୍ଯ୍ୟ, ଏ ଯୁଗରେ ମଧ୍ୟ ଗଣତନ୍ତ୍ରର ଧ୍ୱଜାଧାରୀମାନେ ବଞ୍ଚିବାର ଅଧିକାର ପାଇଁ ଲଢ଼େଇ କରୁଥିବା ଲୋକଙ୍କୁ ଦମନ କରିବା ପାଇଁ କୋଟି କୋଟି ଟଙ୍କାର ଯୋଜନା ପ୍ରସ୍ତୁତ କରନ୍ତି ।

ଲକ୍ଷ୍ମଣ ନାୟକ ସେଇ ସେତକ ହିଁ ମାଗିଥିଲେ । ସେ କହିଥିଲେ ଆମକୁ 'ଜଳ, ଜଙ୍ଗଲ ଓ ଜମି'ର ଅଧିକାର ଦିଅ । ବଞ୍ଚିବାର ସୁଯୋଗ ଦିଅ । ଆମେ ମଣିଷ ଏଇ ଦାବି ନେଇ ଲକ୍ଷ୍ମଣ ନାୟକ ଯେତେବେଳେ ମାତିଲି ଥାନା ଘେରାଉ କଲେ ବ୍ରିଟିଶ ପୁଲିସ ତାଙ୍କ ଉପରେ କଲା ଅମାନୁଷିକ ଅତ୍ୟାଚାର । ଲାଠି ଓ ଗୁଳି ଖାଇ ଖାଲି ଜଙ୍ଗଲର ବିରାଟ ପଟୁଆର ନିମିଷକେ ଛିନ୍ନଛତ୍ର ହେଇଗଲେ । ଗୋଟାଏ ସମ୍ପୂର୍ଣ୍ଣ କପୋଳ କଳ୍ପିତ ଅଭିଯୋଗରେ ତାଙ୍କୁ ଦିଆଗଲା ଫାଶି । ଆଉ ଆଜି ? କଅଣ ହେଇଛି ରାଇଘର ଓ ମାଇକଣ୍ଠରେ ଏ କଥା ସମସ୍ତେ ଜାଣନ୍ତି । କାଶୀପୁରରେ ଆଦିବାସୀଙ୍କୁ ଉଚ୍ଛେଦ କରି

ମଲଟି ନେସନାଲମାନଙ୍କୁ ଥଇଥାନ କଅଣ ଗଣତନ୍ତ୍ରର ନୀତି ? ଅବଶ୍ୟ ଏସବୁ ସତ୍ତ୍ୱେ ଆମ ମୁଖ୍ୟମନ୍ତ୍ରୀମାନେ ଗ୍ରାମୋଫୋନ ରେକର୍ଡ଼ ପରି ବରାବର କହି ଆସୁଛନ୍ତି ''ଆମେ ରାଜ୍ୟର ଉନ୍ନତି ପାଇଁ ପ୍ରତିଶ୍ରୁତିବଦ୍ଧ'' । ସେତେବେଳେ ଜଣେ ଲକ୍ଷ୍ମଣ ନାୟକଙ୍କୁ ଫାଶି ଦିଆଯାଇଥିଲା । ଆଜି ଶହଶହ ଲକ୍ଷ୍ମଣ ନାୟକଙ୍କୁ ଦେଖିଲା ମାତ୍ରେ ଗୁଳି କରି ହତ୍ୟା କରାଯାଉଛି । ନ୍ୟାୟାଳୟ କିମ୍ବା ଫାଶିଖୁଣ୍ଟର ଦରକାର ନାହିଁ ।

ସାହିତ୍ୟ ଏକାଡ଼େମୀ ଆଜି ସେଇ ଆଭିମୁଖ୍ୟ ନେଇ କୋରାପୁଟ ଯଦି ଯାଇଥାଏ ତେବେ ତାହା ଏକ ମହତ କାର୍ଯ୍ୟ ହେବ । କାରଣ ସାହିତ୍ୟ ଯୁଗେ ଯୁଗେ ମଣିଷ ପାଇଁ, ମଣିଷ ଦ୍ୱାରା ଏବଂ ମଣିଷର । ତାକୁ ଛାଡ଼ି ଅଲଗା ରାସ୍ତା ତା ପାଇଁ ନାହିଁ । ଯୋଉଠି ଯେତେବେଳେ ସାହିତ୍ୟ ମଣିଷ ଠାରୁ ଅଲଗା ହେଇଯାଇଛି, ସାଧାରଣ ମଣିଷର ପୀଡ଼ା ଓ ଯନ୍ତ୍ରଣାକୁ ବହନ କରି ନାହିଁ, ସେଠି ସାହିତ୍ୟ ଗଣଧର୍ମୀ ନ ହେଇ ଜଣଧର୍ମୀ ହେଇ ଯାଇଛି । ସମୟର ସୁଅରେ ସେ ଅନ୍ୟତ୍ର ଭାସି ଯାଇଛି ।

ଯାହା ରିଗୋବେର୍ଟା ମେଞ୍ଚୁ କରିଛନ୍ତି ତାହା ଲକ୍ଷ୍ମଣ ନାୟକ ମଧ୍ୟ କରିଥିଲେ । କର୍ମଧାରା ବା ଚିନ୍ତାଧାରା ଏମାନଙ୍କର ଅଲଗା ନ ଥିଲା, ଯଦିଓ ଏମାନେ ଥିଲେ ପରସ୍ପର ଠାରୁ ହଜାର ହଜାର ମାଇଲ ଦୂରରେ । ସମଗ୍ର ଓଡ଼ିଶାର ଜନଜୀବନକୁ ଆମକୁ ଗୋଟିଏ ବୋଲି ଚିନ୍ତା କରିବାକୁ ହେଲେ, ସମଗ୍ର ଓଡ଼ିଶାର ମଣିଷମାନଙ୍କୁ ଆମକୁ ଏକାଠି ମିଶାଇ ଦେଖିବାକୁ ହେଲେ ଆମକୁ ସମସ୍ତଙ୍କୁ ସାଥିରେ ନେଇ ଚାଲିବାକୁ ହେବ । ସମସ୍ତଙ୍କ ସ୍ୱର ଗୋଟିଏ କରିବାକୁ ହେବ । ସମସ୍ତଙ୍କୁ ସମାନ ଅଧିକାର ଦେବାକୁ ହେବ । ଗୁଳି ଲାଠିର ଶାସନ (ଯାହା ଇଂରେଜମାନଙ୍କର ଥିଲା) ଏବଂ ଅତ୍ୟାଚାରର ଇତିହାସକୁ ସମ୍ପୂର୍ଣ୍ଣ ଲୋପ କରି ଦେବାକୁ ହେବ । ସାହିତ୍ୟ ତାରି ଜୟଗାନ କରୁ । ଜୀବନର ନୂତନ ଇସ୍ତାହାର ତିଆରି କରୁ । ଏକ ନୂତନ ସୂର୍ଯ୍ୟର ଆବାହନୀ ସେଥିରୁ ଝଙ୍କୃତ ହେଉ ।

❏

('ସମାଜ'-୧୨.୦୧.୨୦୦୩)

# ସାହିତ୍ୟର ଭୂମି ଓ ଭୂମିକା

ସାହିତ୍ୟ ଯୁଗେ ଯୁଗେ ସମାଜ ପାଇଁ, ସମାଜ ଦ୍ୱାରା ଏବଂ ସମାଜରୁ ହିଁ ସୃଷ୍ଟି ହୋଇ ଆସିଛି । ତା'ର ମୂଳଟା ସମାଜରେ ଲାଗିଥିବାରୁ ସମାଜର ଅନେକ ଗହୀରରେ ତାର ଚେର ମାଡ଼ି ଯାଇଥାଏ । ସେ ଚେର ଯେତେ ତଳକୁ ମାଡ଼ି ଯାଏ ମାଟି ଉପରେ ତାର ଶାଖା ପ୍ରଶାଖା ପତ୍ର ଫୁଲ ସେତିକି ମେଲି ମେଲି ଯାଏ । ସେମିତିବି ତା'ର ଲକ୍ଷ୍ୟ ଓ ଉଦ୍ଦେଶ୍ୟ । ମାଟିରୁ ଉଦ୍‌ଭବିଲା ପରେ ଗଛଟି ଯେମିତି କେବଳ ମାଟି ପାଇଁ କାମ କରେ, ସେମିତି ବି ସାହିତ୍ୟ । ଯେଉଁ ମାଟିରୁ ତା'ର ଜନ୍ମ ସେଇ ମାଟି ପାଇଁ ସେ ପ୍ରଥମେ କାମ କରେ ।

ସାହିତ୍ୟରେ ପୃଥିବୀର ପ୍ରଥମେ କବିତା ହିଁ ଜନ୍ମଲାଭ କଲା । ସେ କବିତାର ଜନ୍ମ ଯନ୍ତ୍ରଣାରୁ । ଖାଲି ଯନ୍ତ୍ରଣାରୁ ନୁହେଁ, ବରଂ ଅନ୍ୟାୟ ଓ ଅତ୍ୟାଚାରଜନିତ ଯନ୍ତ୍ରଣା ବିରୋଧରେ ସ୍ୱର ଉତ୍ତୋଳନ ପାଇଁ ଏକ ଦୃପ୍ତ ଆହ୍ୱାନ । ସେ ସ୍ୱରର ଆହ୍ୱାନ ଏବେବି ସ୍ପଷ୍ଟ ଓ ସମୁଜ୍ଜ୍ୱଳ । କବିତାର ସେଇ ମୂଳ ଲକ୍ଷ୍ୟ ଠାରୁ ସେ କେବେବି ଦୂରେଇ ଯାଇନି ।

ବେଦର ସୃଷ୍ଟି ସେମିତି ସେଇ ଲକ୍ଷ୍ୟ ଉଦ୍ଦେଶ୍ୟରେ । ବେଦକାରମାନେ ମଣିଷର ପ୍ରଥମ ସାମାଜିକ ବା ଗୋଷ୍ଠୀ ଜୀବନରେ ଶୃଙ୍ଖଳାର ଆବଶ୍ୟକତା କଥା ଉପଲବ୍ଧି କରିଥିଲେ । ପରେ ଯେତେବେଳେ ପୁରାଣ ଆସିଲା ସେ ମଧ୍ୟ ସେଇ କଥା କହିଲା । ବେଦ ଓ ପୁରାଣଗୁଡ଼ିକ ଧର୍ମ ମାଧ୍ୟମରେ ସେ ଶୃଙ୍ଖଳିତ ଜୀବନକୁ ଆହୁରି ଦୃଢ଼ କରିଦେଲେ । A.L. Basam ତାଙ୍କର 'The Wonder that was India' ରେ ସେ ଭୂମିକାକୁ ଆହୁରି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଛନ୍ତି ।

ଆଗରୁ କହିଚି ଆଗ କାଳରେ ସାହିତ୍ୟ କହିଲେ କେବଳ କବିତାକୁ ହିଁ ବୁଝାଉଥିଲା । ସେତେବେଳେ ଗଦ୍ୟ ନଥିଲା । ଗଦ୍ୟ କଥା କେହି କେବେ ଜାଣି ନଥିଲେ କିମ୍ବା ଗଦ୍ୟ ଯେ ଦିନେ ସାହିତ୍ୟ ଭିତରକୁ ପଶିଆସିବ ସେ କଥା ସେମାନେ ଜାଣି ନଥିଲେ । ଏଇ କାରଣରୁ ବୋଧେ କବିତାଟା ଜନ୍ମରୁ ଆଜିଯାଏ ସମାଜ ଉପରେ ପ୍ରଚଣ୍ଡ ପରାକ୍ରମରେ ଆଧିପତ୍ୟ ବିସ୍ତାର କରି ଆସିଚି । ମଣିଷର ମନ ଉପରେ ତା'ର ଅଧିକାର ଜନ୍ମଗତ । ସେ ତାକୁ ବିହ୍ୱଳିତ କରିଦିଏ । କବିତାର ଅନ୍ତର୍ନିହିତ ଶକ୍ତି ଯେତିକି ଦୃଢ଼ ହୁଏ, ମଣିଷକୁ ଜିଣିବାରେ, ତାକୁ ଆୟତ୍ତ କରିବାରେ ସେତିକି ତା ପାଇଁ ସହଜ ହୁଏ ।

ଏବେ ସେଇ କବିତାର ବା ସାହିତ୍ୟର ଶାଖା ପ୍ରଶାଖା ମେଲି ଗଳ୍ପ ଉପନ୍ୟାସ ଇତ୍ୟାଦି ଅନ୍ୟ ଗଦ୍ୟ ସାହିତ୍ୟର ରୂପ ନେଲାଣି । ଶାଖା ପ୍ରଶାଖା ଯେତିକି ମେଲୁଚି ସେତିକି ତାର ବିଭିନ୍ନ ବିଭାଗ ସୃଷ୍ଟି ହେଉଛି; ଯେମିତି କବିତାରେ କେବଳ ଛନ୍ଦ ଥିଲା । ଏବେ ଆଉ ସେମିତି ନାହିଁ । ସେ କବିତାର ରୂପ ବଦଳି ଗଦ୍ୟ ରୂପ ନେଲାଣି । ମଣିଷର ମନକୁ ପ୍ରଭାବିତ କଲାଭଳି ଶବ୍ଦ ସଂଯୋଜନା ଆବଶ୍ୟକ ହୁଏ ସେତିକିବେଳେ ଯେତେବେଳେ ମଣିଷର ଖଣ୍ଡିତ କିମ୍ବା ଅନ୍ୟ ଏକ ଆବରଣ ଦ୍ୱାରା ଆଚ୍ଛାଦିତ ମନକୁ ବିଶ୍ଳେଷଣ କରିବାର ଆବଶ୍ୟକ ହୁଏ । ସେତେବେଳେ ଏଥିପାଇଁ ବେଳେବେଳେ ଶବ୍ଦର ଅଭାବ ଅନୁଭୂତ ହୁଏ । ଯାହା ଥାଏ ତାହା ଯଥେଷ୍ଟ ହୁଏନା । ଏଇ କାରଣରୁ କବିତାର ରୂପ ସିନା ବଦଳି ଯାଇଚି କିନ୍ତୁ କେବେବି ସେ ତାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଠାରୁ ଦୂରେଇ ଯାଇନି । ଅବଶ୍ୟ ଯେଉଁଠି ଯେତେବେଳେ ସେ ଲକ୍ଷ୍ୟ ବାଟ ଭୁଲିଛି ସେତେବେଳେ ସମାଜ ତାକୁ ଫୋପାଡ଼ି ଦେଇଛି ଏବଂ ତା' ବାଟରେ ଚାଲିଯାଇଛି । ସାହିତ୍ୟ ଓ ସମାଜ ଏମିତି ଭାବରେ ଯୁଗ ଯୁଗକୁ ଏକା ସାଥିରେ ହାତ ଧରାଧରି ହୋଇ ବାଟ ଚାଲିଆସିଛନ୍ତି, ଗୋଟାଏ ସମାନ ଓ ସମାନ୍ତର ସରଳରେଖା ପରି ।

ଏବେ ଅସଲ କଥା ଉପରକୁ ଆସୁଛି । କିଛିଦିନ ତଳେ ବଙ୍ଗଳାର କବି ଓ ଲେଖକମାନେ ସାମ୍ପ୍ରଦାୟିକତା ଓ ଅପସଂସ୍କୃତି ବିରୋଧରେ ଯୁଦ୍ଧ ଘୋଷଣା କରିବା ପାଇଁ କବିତାକୁ ଗୋଟାଏ ଅସ୍ତ୍ର ହିସାବରେ ଗ୍ରହଣ କରିବେ ବୋଲି ସ୍ଥିର କଲେ । ସେମାନେ କହିଲେ, କବିତା ମାଧ୍ୟମରେ ଖାସ୍ କରି ସାମ୍ପ୍ରଦାୟିକତାକୁ ପରାହତ କରିହେବ । ଏକଥା ଶୁଣି ଅନ୍ୟମାନଙ୍କ ଆଖି ଆକାଶକୁ ଟେକି ହୋଇଗଲା । ସେମାନେ ଭାବିଥିବେ କବିତାଟା କ'ଣ ଆଣବିକ ଅସ୍ତ୍ର ହୋଇଛି ଯେ ତାକୁ ନେଇ ସାମ୍ପ୍ରଦାୟିକତା ଉପରେ ଫୋପାଡ଼ି ଦିଆଯିବ । ସେମାନେ ଏମିତି ମଧ ଭାବିଥିବେ ଯେ କବିତା ଦ୍ୱାରା ଯଦି ସାମ୍ପ୍ରଦାୟିକତା ସହିତ ଲଢ଼େଇ କରି ହେଉଥାଆନ୍ତା, ତେବେ ସରକାର ପୁଲିସ୍ ଜାଗାରେ କିଛି କବି ରଖି ନିଶ୍ଚିତ ହୋଇ ଯାଆନ୍ତେ । କାରଣ ସେମାନେ କହନ୍ତି, କବିତା ଦ୍ୱାରା କିଛି ହୁଏନା । କବିତା ଖାଲି ବୋଲିବା ପାଇଁ, ନିଜର ସଉକ ମେଣ୍ଟାଇବା ପାଇଁ ।

ସାହିତ୍ୟ କେବେ ଦେଶ ଜାତି ସମ୍ପ୍ରଦାୟ କିମ୍ବା ଭାଷାଗତ ପାର୍ଥକ୍ୟ ମାନେନା । ସେ ଏସବୁର ଅନେକ ଉର୍ଦ୍ଧ୍ୱରେ । କବିତା କେବେବି ଏ ପ୍ରକାର ଭେଦଭାବକୁ ମାନି ନାହିଁ । ତେଣୁ କବିତା ମାଧ୍ୟମରେ ସାମ୍ପ୍ରଦାୟିକତା ବିରୋଧରେ ଅସ୍ତ୍ର ଧାରଣ କରିବାକୁ ଅଣ୍ଟା ଭିଡୁଥିବା ବଙ୍ଗଳାର ବିଖ୍ୟାତ କବି ସୁନୀଲ ଗଙ୍ଗୋପାଧ୍ୟାୟ ଗୋଟାଏ ନୂଆ ପ୍ଲାଟଫର୍ମ ତିଆରି କରିବା ଉଦ୍ଦେଶ୍ୟରେ ଏବର ପିଢ଼ିକୁ ଆହ୍ୱାନ ଦେଇ କହିଲେ, ''Poetic truth would over come ignorance, violence and fear.''

ଏ କ୍ଷେତ୍ରରେ ପୂର୍ବବଙ୍ଗ ଓ ପଶ୍ଚିମବଙ୍ଗ ଏକ ହୋଇ ଯାଇଛନ୍ତି । ସେମାନେ କହୁଛନ୍ତି, ଆମେ ଆମ ଭିତରୁ ଭେଦର ପ୍ରାଚୀର ଉଠେଇ ଦେବାକୁ ସମସ୍ତେ ମିଶି ଯାଇଛେ । କବି ନଜରୁଲ୍ ଓ କବି ରବୀନ୍ଦ୍ରନାଥ ଆମ ପାଖରେ ଗୋଟିଏ । ତେଣୁ ଉଭୟ ପ୍ରାନ୍ତରୁ ପ୍ରାୟ ୬୦ଜଣ କବି ଆସନ୍ତା ଡିସେମ୍ବର ୬ ତାରିଖରେ ଗୋଟାଏ ସାହିତ୍ୟ ମଞ୍ଚରୁ ଯୁଦ୍ଧ ଘୋଷଣା କରିବେ । କବିତା ପାଠ, କର୍ମଶାଳା ଓ ଜନ୍ମ ଶତବାର୍ଷିକୀ ମଧ୍ୟ ପାଳନ କରାଯିବ । ରବୀନ୍ଦ୍ରନାଥ, ନଜରୁଲ, ଜୀବନାନନ୍ଦ ଦାସ, ସୁକୁମାର ରାୟ, ଶକ୍ତି ଚଟ୍ଟୋପାଧ୍ୟାୟ, ଅରୁଣ ମିତ୍ର ଏବଂ ସୁଭାଷ ମୁଖୋପାଧ୍ୟାୟଙ୍କ ଉପରେ ଡକୁମେଣ୍ଟାରୀ ମଧ୍ୟ ପ୍ରଦର୍ଶିତ ହେବ ।

ଏବେ ତେଲୁଗୁ କବିଙ୍କ କଥା ଦେଖିବା । ତେଲେଙ୍ଗାନାର ବିଖ୍ୟାତ କବି 'ଗଦର'ଙ୍କ କଥା ସମସ୍ତେ ଜାଣିଥିବେ । ଆନ୍ଧ୍ରପ୍ରଦେଶର ତେଲେଙ୍ଗାନାକୁ ଅନ୍ଧାରୀ ଅଞ୍ଚଳ କୁହାଯାଏ, ଆମ କଳାହାଣ୍ଡି, କୋରାପୁଟ ପରି । ତେଲେଙ୍ଗାନାର ସେଇ ଅନ୍ଧାରୀ ଅଞ୍ଚଳରେ ବିପ୍ଳବୀ କବି 'ଗଦର' ଅତ୍ୟନ୍ତ ଲୋକପ୍ରିୟ । ଆମ ଓଡ଼ିଶାର କବି ଓ ଲେଖକମାନଙ୍କୁ କେବଳ ସହରରେ ସମ୍ମାନ ମିଳେ । ତେଣୁ ସେମାନେ ସହରରେ ରହିବାକୁ ଭଲ ପାଆନ୍ତି । ଗାଁକୁ ଯିବାକୁ ତାଙ୍କୁ ବଡ଼ କଷ୍ଟ ହୁଏ । ଗାଁରେ ରହିବାକୁ ସେମାନେ ଅସମ୍ମାନଜନକ ମନେ କରନ୍ତି । କିନ୍ତୁ 'ଗଦର' ଓ ତାଙ୍କ ବନ୍ଧୁ କବି ଭି.ଭି. ରାଓ ଆନ୍ଧ୍ରର ଯେଉଁ ଅଞ୍ଚଳରେ ବିଜୁଳି ବତୀ ତ ଦୂରର କଥା ସୂର୍ଯ୍ୟାଲୋକ ମଧ୍ୟ ପଡ଼େ ନାହିଁ, ସେଇ ତେଲେଙ୍ଗାନାର ଗାଁରେ ରହିଲେ । ସେମାନଙ୍କ ସହିତ ଏକଦମ୍ ମିଶିଗଲେ । ସେମାନଙ୍କ ସହିତ ଗୋଟିଏ ହେଁସ ବା ପଟିଆରେ ଶୋଇଲେ । ଗୋଟିଏ ବେଳାରେ ଖାଇଲେ । ସବୁଠୁ ବଡ଼ କଥା ହେଲା ସେମାନଙ୍କ ଭାଷାରେ କବିତା ଲେଖି ତାକୁ ଗାଇଲେ । ଯେମିତି ଆମର ମନମୋହନ ମିଶ୍ର ଦିନେ କରୁଥିଲେ । ମନମୋହନ ମିଶ୍ର ଗୀତ ବୋଲିଲେ, ସାରା କଟକ ତାଙ୍କ ଚାରିପାଖେ ଅଜାଡ଼ି ହୋଇଯାଉଥିଲା । ଗଦରଙ୍କ ଭାଷା ତା'ଠୁ ଆହୁରି ଶକ୍ତିଶାଳୀ । ଲୋକଙ୍କ ଛାତି ଭିତରେ ପୋଡ଼ି ହୋଇଯାଏ । କୁହାଯାଏ ତାଙ୍କ ଭାଷଣ ଓ ଗୀତ କୁଆଡ଼େ ବରଫ ଖଣ୍ଡକୁ ଅଗ୍ନି ଝଲକରେ ପରିଣତ କରିଦିଏ ।

ସେଇ 'ଗଦର' ଓ ଭି.ଭି. ରାଓ ଗତ କେତେବର୍ଷ ହେଲା ତେଲେଙ୍ଗାନାକୁ ସ୍ୱତନ୍ତ୍ର ରାଜ୍ୟ କରିବାକୁ ଦାବୀ କରି ଆସୁଛନ୍ତି । ସେମାନେ କହୁଛନ୍ତି ତେଲେଙ୍ଗାନା ଲୋକଙ୍କ ପାଇଁ ସ୍ୱତନ୍ତ୍ର ରାଜ୍ୟ ଦାବି କରିବା ଆଞ୍ଚଳିକତା ନୁହେଁ । ଯଦି ତା' ହୋଇଥାଆନ୍ତା, ତେବେ ଭାରତରେ ଆଜି ଏତେ ରାଜ୍ୟ ସୃଷ୍ଟି ହୋଇପାରି ନଥାଆନ୍ତା କି ଆଜି ସରକାର

ଗୋଟିକ ପରେ ଗୋଟିଏ ରାଜ୍ୟ ମଧ୍ୟ ସୃଷ୍ଟି କରୁ ନ ଥାଆନ୍ତେ । ତେଲେଙ୍ଗାନା ଅଞ୍ଚଳର ଲୋକଙ୍କର ସ୍ୱତନ୍ତ୍ର ପରିଚୟ ଦାବି ନିଷ୍ପେଷିତ ଲୋକଙ୍କର ଏକ ଅଧିକାର । ଏହି କବିଦ୍ୱୟ ସେମାନଙ୍କ ଦାବି ସପକ୍ଷରେ ଗତ ଲୋକସଭା ନିର୍ବାଚନ ସମୟରେ ଭୋଟ ବର୍ଜନର ଆହ୍ୱାନ ଦେଇ ଅନେକ ପରିମାଣରେ ସଫଳ ମଧ୍ୟ ହୋଇଛନ୍ତି । ଯାହା ଜଣାପଡୁଛି ସେ ଆନ୍ଦୋଳନ ଆସ୍ତେ ଆସ୍ତେ ଦାନା ବାନ୍ଧୁଛି ।

ଏକଥା କହିବାର ଉଦ୍ଦେଶ୍ୟ ହେଲା କବି, ଲେଖକ ଓ ବୁଦ୍ଧିଜୀବୀମାନେ ବରାବର ସମାଜର ନେତୃତ୍ୱ ନେଇ ଆସିଛନ୍ତି । ସେମାନେ ଏବେ ନିଜକୁ ପଞ୍ଚମ ସ୍ତମ୍ଭ ବୋଲି ଦାବି କଲେଣି । ଏ ଦାବି ଅଯଥାର୍ଥ ନୁହେଁ । ଶାସନର ଡୋରି ଯେତେବେଳେ ଯାହା ହାତରେ ଥିଲେ ମଧ୍ୟ ସମାଜର ଡୋରି କିନ୍ତୁ ସବୁବେଳେ 'ପଞ୍ଚମ ସ୍ତମ୍ଭ' ହାତରେ ଥାଏ ।

ଭାରତରେ ଏବେ ଏକ ଚିନ୍ତାବିଭ୍ରାଟ ସୃଷ୍ଟି ହୋଇଛି । ରାଜନୈତିକ ଅସ୍ଥିରତା ଆମର ସମଗ୍ର ସମାଜ ବ୍ୟବସ୍ଥାକୁ ତଳିତଳାନ୍ତ କରି ଦେଲାଣି । ରାଷ୍ଟ୍ର ଏକ ଭୟଙ୍କର ସଂକଟ ଭିତରେ ଗତି କରୁଥିବା ବେଳେ ତା'ର ତିନୋଟି ଯାକ ସ୍ତମ୍ଭ ଦୋଦୁଲ୍ୟମାନ ଅବସ୍ଥାକୁ ଆସିଲାଣି । ଯେ କୌଣସି ଅବସ୍ଥାରେ ଭୁଶୁଡ଼ି ପଡ଼ିବାର ସମ୍ଭାବନା ଦେଖାଦେଲାଣି । ଏତେବେଳେ ଚତୁର୍ଥ ଓ ପଞ୍ଚମ ସ୍ତମ୍ଭର ଦାୟିତ୍ୱ ଅନେକ ବଢ଼ିଯାଇଛି । ତେଲେଙ୍ଗାନା ଓ ବଙ୍ଗଳା ପରି ଏବେ ସମଗ୍ର ଦେଶର କବିକୁଳ ରାସ୍ତା ଉପରକୁ ବାହାରି ଆସିବା ଉଚିତ ହେବ ।

❑

('ସମୟ'-୧୫.୧୨.୧୯୯୮)

# ସାହିତ୍ୟର ସଂକଟ ଓ ତାର ସମାଧାନ

ଗତ କେତେଦିନ ହେଲା ପୁଣି ଥରେ କଥା ଉଠିଲାଣି ଯେ ଓଡ଼ିଆ ସାହିତ୍ୟ ଏବେ ସଂକଟର ସମ୍ମୁଖୀନ ହୋଇଛି । ବିଭିନ୍ନ ସଭା ସମିତିରେ ଆଲୋଚନାବେଳେ ଲେଖକ ଓ କବିମାନେ ଏକଥା କହିଲେଣି ଯେ ପୁଣି ଥରେ ଆମ ଭାଷା ଓ ସାହିତ୍ୟ ବିପଦର ମୁହାଁମୁହିଁ ହେଲାଣି । ସେମାନେ କହୁଛନ୍ତି ଫକୀରମୋହନଙ୍କ ସମୟ ଥିଲା ଅଲଗା । ସେତେବେଳେ ଭାଷା ଓ ସାହିତ୍ୟ ପ୍ରତି ବିପଦଟା ବାହାରୁ ମାଡ଼ି ଆସୁଥିଲା । ତେଣୁ ତାକୁ ସମ୍ଭାଳିବାକୁ ଦେଶ ଭିତରୁ ସମସ୍ତେ କାନ୍ଧ ପତେଇ ଦେଉଥିଲେ । ସେତେବେଳେ ସେ ବିପଦଟା ବିପଦ ପରି ମନେ ହେଉ ନ ଥିଲା । ହାଓ୍ୱା ପରି ଉପରୁ ଆସି ଉପରେ ଉପରେ ଉଡ଼ି ଯାଉଥିଲା । ଏବେ ଆଉ ସେ କଥା ନାହିଁ । ବିପଦ ଆମ ଘର ଭିତରୁ ମାଡ଼ି ଆସୁଛି । ତାକୁ ସମ୍ଭାଳିବ କିଏ ? ଗୃହ ଶତ୍ରୁକୁ ରୋଧିବ କିଏ ?

ଏବେ ସମସ୍ତେ କହିଲେଣି ରାଜ୍ୟରେ ଯେମିତି ଗାଁ ଗାଁ ଭିତରେ ଇଂରେଜୀ ମାଧ୍ୟମ ସ୍କୁଲ ସବୁ ଖୋଲିଲାଣି ଏବଂ ଆମ ଲୋକଙ୍କ ମନ ଯେମିତି ଓଡ଼ିଆକୁ ଛାଡ଼ି ସେଆଡ଼କୁ ଢ଼ଳିଲାଣି; ସେଥିରେ ଆମ ଭାଷା ଆଉ ବଞ୍ଚିବ କେମିତି ? ଇଂରେଜୀମାଧ୍ୟମ ସ୍କୁଲଗୁଡ଼ିକ ମଧ୍ୟ ଲୋକଙ୍କ ମତକୁ ଟାକି ବସିଛନ୍ତି । ସେମାନେ ତାଙ୍କ ସ୍କୁଲରେ ଓଡ଼ିଆ ବିଷୟଟାକୁ ଉଠେଇ ତା ଜାଗାରେ ହିନ୍ଦୀ, ଇଂରାଜୀ କି ସଂସ୍କୃତ ରଖି ଦେଉଛନ୍ତି । ତାଙ୍କୁ ସୁବିଧା କେବଳ ଓଡ଼ିଆ ପଢ଼େଇବାକୁ ଗୋଟାଏ ସ୍ୱତନ୍ତ୍ର ଶିକ୍ଷକ ରଖିବାକୁ ପଡ଼ିବ ନାହିଁ । ସେମାନଙ୍କୁ ଓଡ଼ିଆ ପଢ଼େଇବାକୁ କିଏ ବା ବାଧ କରିବ ? ସେମାନେ ସମସ୍ତେ ତ ରାଜ୍ୟ ସରକାର ଅଧୀନରେ ନ ଥାନ୍ତି; କିଛି ପରିମାଣରେ ଥିଲେ ବି କାହାର କଅଣ ଯାଏ ? ବ୍ୟତିକ୍ରମ ତ ପୁଣି ଥାଏ ।

ଲୋକଙ୍କ ମନ ଇଂରାଜୀ ଆଡ଼କୁ ଢଳିବା ଦ୍ୱାରା ବାପା ମାଆମାନେ ଯେ ଖାଲି ପିଲାମାନଙ୍କୁ ଓଡ଼ିଆ ପଢ଼ାରୁ ନିବୃତ୍ତ କରାଉଛନ୍ତି ତା ନୁହେଁ ସେମାନେ ନିଜେ ମଧ୍ୟ ଓଡ଼ିଆ ବହି ପଢୁନାହାନ୍ତି । ଓଡ଼ିଆ ବହିପ୍ରତି ଗୋଟାଏ ବୀତସ୍ପୃହତା ବଢୁଛି । ସେମାନେ କହୁଛନ୍ତି ସବୁ କଥା ଯଦି ଇଂରାଜୀରେ ହେଉଛି, ଚାକିରି ବାକିରି ପ୍ରଶ୍ନ ଯଦି ଇଂରାଜୀ ସହିତ ସମ୍ପୃକ୍ତ

ତେବେ ଓଡ଼ିଆ ପଢ଼ି କଅଣ ଲାଭ ? କେଉଁ ସାକ୍ଷାତକାର ଓଡ଼ିଆରେ ହେଉଛି ଯେ ? ତେଣୁ ଓଡ଼ିଆ ବହି, ପତ୍ର ପତ୍ରିକା ଓ ସମ୍ବାଦପତ୍ରର ଆବଶ୍ୟକତା କଅଣ ?

କଥାଟାକୁ ଓଡ଼ିଆ ପ୍ରକାଶକମାନେ ଚଟ୍‌କରି ଧରି ପକାଉଛନ୍ତି ? ସେମାନେ କହୁଛନ୍ତି ଓଡ଼ିଆ ବହି ଆଉ କେହି ପଢୁ ନାହାନ୍ତି କି ବହି କେହି କିଣୁ ନାହାନ୍ତି । ଓଡ଼ିଆ କବିତା କଥା କହିଲେ ତ ସେମାନେ ଖଣ୍ଡେ ବାଟକୁ ଡେଇଁ ପଡୁଛନ୍ତି । ତା ବିରୋଧରେ ସେମାନେ ଅନେକ କଥା କହନ୍ତି । ତେବେ ଗଳ୍ପ, ଉପନ୍ୟାସ କି ଆଉ କିଛି କଥା କହିଲେ ସେମାନେ କହୁଛନ୍ତି 'ଚଳିବ' । କିନ୍ତୁ ସାଧାରଣ ଅଭିଯୋଗଟି ହେଲା, ବହି ମୋଟେ ବିକ୍ରି ହେଉନି, ଆମ ଗୋଦାମରେ ବର୍ଷ ବର୍ଷ ପଡ଼ି ରହୁଛି । ସରକାର ମଧ୍ୟ ଆଉ କିଣୁଁ ନାହାନ୍ତି । ତେଣୁ ସବୁ ଦିଗରୁ ଆମର କ୍ଷତି । ପୁସ୍ତକ ବ୍ୟବସାୟ ଆଉ ଚଳିବନି ।

ଆଉ ଥୋକେ ଆଉ ପ୍ରକାରେ କହୁଛନ୍ତି । ସେମାନେ କହୁଛନ୍ତି ଏ ଇଲେକ୍‌ଟ୍ରୋନିକ ମିଡ଼ିଆ ଯୁଗରେ ଆଉ ବହି କିଏ ପଢ଼ିବ ? ଯାହା ଟି.ଭି. ଓ ଇଣ୍ଟରନେଟରୁ ମିଳିବ ସେସବୁ କଅଣ ବହିରୁ ମିଳିବ ? ଗଳ୍ପ, କବିତା, ଉପନ୍ୟାସ ଏବଂ ବିଶେଷକରି ଚମତ୍କାର ନାଟକମାନ ଘରେ ବେଡ୍‌ରୁମରେ ଶୋଇଶୋଇ ପାଇ ଯାଉଥିବା ବେଳେ ବହିକୁ କିଏ କାହିଁକି ପଚାରିବ । ଲକ୍ଷ ଲକ୍ଷ ବହି କମ୍ପ୍ୟୁଟର ଭିତରୁ ମିଳୁଥିବା ବେଳେ ଥାକଥାକ ବହି ସଜେଇ ରଖିବା କଅଣ ଦରକାର ?

ଏମାନଙ୍କ ସହିତ ସରକାର ମଧ୍ୟ ମିଶି ଯାଉଛନ୍ତି । ଆଜିକାଲି ସରକାର କହିଲେ ମନ୍ତ୍ରୀ । ମନ୍ତ୍ରୀମାନେ ଯେ ସବୁବେଳେ ପାଠୁଆ, ପଢୁଆ ହୋଇଥିବେ ତାର ତ କିଛି ମାନେ ନାହିଁ । ପାଠୁଆ ପଢୁଆ ଆଜିକାଲି ରାଜନୀତିକୁ ଯାଉ ନାହାନ୍ତି ବୋଲି ବୋଧେ ଏମିତି ହେଉଛି କିମ୍ବା ହୁଏତ ଅପାଠୁଆମାନେ ତାଙ୍କୁ ବାଟ ଛାଡୁ ନାହାନ୍ତି । ତେବେ ସେ ଯାହାହେଉ ସେମାନେ କହନ୍ତି ଏତେ ବହି କଅଣ ହେବ ? ଛଅଟଙ୍କାର ଘୋଡ଼ାକୁ ନଅଟଙ୍କାର ଦାନା ପରି ହଜାରେ ଟଙ୍କାର ବହି ପାଇଁ ପାଞ୍ଚ ହଜାର ଟଙ୍କାର ଆଲମାରୀ ଦରକାର । ସରକାରଙ୍କ ପାଖରେ ଏତେ ଟଙ୍କା କାହିଁ ? ବରଂ ଆମେରିକା କଂପାନୀକୁ କହିଦିଅ, ସେମାନେ ଆଣି କମ୍ପ୍ୟୁଟର ସବୁ ଗଦେଇ ଦେଇଯିବେ । ବହି ଅପେକ୍ଷା ଅନେକ ବେଶି ଖାଦ୍ୟ ସେଥିରୁ ମିଳିବ । ସେମାନେ ଆହୁରି ଯୁକ୍ତି କରନ୍ତି, ଗୋଟିଏ ଇଣ୍ଟରନେଟକୁ ଏକାଥରେ ଶହେ କି ପଚାଶ ଦେଖି ପାରୁଥିବା ବେଳେ ଖଣ୍ଡେ ବହିକୁ ଥରକେ ଜଣେମାତ୍ର ପଢ଼ି ପାରିବ । ତେଣୁ ସେମାନଙ୍କ ମତରେ ଲାଇବ୍ରେରୀ ଅପେକ୍ଷା କ୍ଲବକୁ ବେଶି ସାହାଯ୍ୟ ଦିଆଯିବା ଦରକାର । ଲାଇବ୍ରେରୀରେ ଝାମେଲା ବେଶି । ସେଥିରେ ମଧ୍ୟ ବେଳେବେଳେ ରାଜନୀତି ପଶୁଚି । କମ୍ପ୍ୟୁଟରରେ ସେ ସବୁ ନାହିଁ ।

ପାଠକମାନେ ବି ହତାଶ । ସେମାନଙ୍କ ହତାଶିଆ ସ୍ୱର କିନ୍ତୁ ଭିନ୍ନ । ସେମାନେ କହୁଛନ୍ତି ବହି କାହିଁ ଯେ ପଢ଼ିବୁଁ ? ସବୁବେଳେ ସେଇ ବିଭୂତି ପଟ୍ଟନାୟକ, ପ୍ରତିଭା ରାୟ, ଶାନ୍ତନୁ ଆଚାର୍ଯ୍ୟଙ୍କୁ ପଢ଼ିପଢ଼ି ବିରକ୍ତ ଲାଗିଲାଣି । ନୂଆ କେହି ଆସୁ ନାହାନ୍ତି କି ହୁଏତ ଆସି ପାରୁନାହାନ୍ତି । ପାଠକ ମନରେ ପ୍ରଭାବ ବିସ୍ତାର କଲାଭଳି ଆଉ କିଛି ଆସୁନାହିଁ । ଆମ ସାହିତ୍ୟରେ ଅନୁବାଦ ମଧ୍ୟ କମ । ଯାହା କିଛି ଆସୁଛି ବଙ୍ଗଳାରୁ । ଏପରିକି ଇଂରାଜୀ କିମ୍ବା ହିନ୍ଦୀରୁ ମଧ୍ୟ ବେଶି ଆସୁନାହିଁ । ଓଡ଼ିଶାରେ ଏବେ ମଧ୍ୟ ଗୋଟାଏ ଧାରଣା ଅଛି ଯେ ଅନୁବାଦ ଗୋଟାଏ ସବ ଷ୍ଟାଣ୍ଡାର୍ଡ ବା ଦ୍ୱିତୀୟ ଶ୍ରେଣୀ ଶିଳ୍ପ କର୍ମ । ତେଣୁ ସେଥିରେ କେହି ମନ ବଳାନ୍ତି ନାହିଁ । ନୂଆ ନୂଆ ସୃଷ୍ଟି ହେବ ନାହିଁ ଏବଂ ଅନୁବାଦ ମଧ୍ୟ ହେବ ନାହିଁ ତେବେ ପାଠକୀୟ ଆଗ୍ରହ କେମିତି ସୃଷ୍ଟି ହେବ ?

ସରକାର ମଧ୍ୟ ଅନୁବାଦକୁ ଆନ୍ତରିକତାର ସହିତ ସାହାଯ୍ୟ କରନ୍ତି ନାହିଁ । ଏ ବିଷୟରେ ଓଡ଼ିଶା ସରକାରଙ୍କ ନୀତି ଯେମିତି ହତାଶିଆ କେନ୍ଦ୍ର ସରକାରଙ୍କ ନୀତି ମଧ୍ୟ ସେଇଆ । ଅନୁବାଦକ ସେଠି ମଧ୍ୟ ଅବହେଳିତ । ତାକୁ ଯାହା ମିଳେ ତାହା ସମୁଦ୍ରକୁ ଶଂଖେ ପାଣିପରି । ଅନୁବାଦ ହେଇ ବର୍ଷକୁ କେତେ ବହି ଓଡ଼ିଶା ବାହାରକୁ ଯାଉଛି ଏବଂ କେତେ ବହି ବା ଲେଖା ଭିତରକୁ ଆସୁଛି ତାର ହିସାବ ସମସ୍ତଙ୍କୁ ଜଣା । ଏଠି ଓଡ଼ିଶା ସରକାରଙ୍କ କଥା ନ କହିବା ଭଲ ।

ତେବେ ସେ ଯାହା ହେଉ ଓଡ଼ିଶାରେ ବହି ନାହିଁ - ଏଇ କଥାଟାରୁ ଆମେ ଅନ୍ୟ ଆଡ଼େ ମାଡ଼ି ଯାଉଚୁଁ । ସମସ୍ୟାଟା ଶେଷରେ ଆସି ଲେଖକ ପାଖରେ ପହଞ୍ଚିଲା । ଲେଖକ ଭଲ ଲେଖୁନାହିଁ । ସେମାନେ ଭଲ ଲେଖୁ ନ ଥିବାରୁ ତାଙ୍କୁ କେହି ପଢୁନାହିଁ ଏବଂ ତାଙ୍କୁ କେହି ପଢୁନଥିବାରୁ ପ୍ରକାଶକମାନେ ମଧ୍ୟ ବହି ଛାପୁ ନାହାନ୍ତି । ଏ ଅଭିଯୋଗ ଶୁଣି ଲେଖକ ଆଶ୍ଚର୍ଯ୍ୟ ହେଲା । କି ପାଲଟା ଅଭିଯୋଗ ଇଏ ? ସେମାନେ କହିଲେ ଆମରତ ବର୍ଷଯାକ ଦିନ ନାହିଁ କି ରାତି ନାହିଁ । ଆମେ ବର୍ଷଯାକ ଶହ ଶହ ଗଳ୍ପ କବିତା ଲେଖୁଛୁଁ । କେବଳ ପୂଜା ସଂଖ୍ୟାରେ ସେସବୁ ଦେଖିଲେ ତାର ପ୍ରମାଣ ମିଳିବ । ଗତ ପୂଜାରେ (୨୦୦୦) ଦୀନନାଥ ପାଠିଙ୍କ କହିବା ଅନୁସାରେ ପ୍ରାୟ ଶହେଟି ବିଶେଷ ସଂଖ୍ୟା ପ୍ରକାଶ ପାଇଛି । ଏସବୁ ଆଗର ସମସ୍ତ ରେକର୍ଡ଼ ଭଙ୍ଗ କରିଛି । ଏଥିରେ ଯେତେ ଗଳ୍ପ ଓ କବିତା ପ୍ରକାଶ ପାଇଛି ତାହାତ ହଜାର ହଜାର । ସେ ସଂଖ୍ୟା ମଧ୍ୟ ପ୍ରତିବର୍ଷ ବଢୁଛି । ପତ୍ରିକା ମଧ୍ୟ ପ୍ରଚୁର ବିକ୍ରି ହେଉଛି । ସେସବୁ ଯଦି ପାଠକମାନଙ୍କ ପାଖରେ ଠିକ ସମୟରେ ପହଞ୍ଚୁନାହିଁ ତେବେ ଲେଖକମାନଙ୍କ ପାଖକୁ ଶହଶହ ସଂଖ୍ୟାରେ ଚିଠି କେମିତି ଆସୁଛି ? ତେଣୁ ଲେଖାର ମାନ ମଧ୍ୟ କମିଚି ବୋଲି କହି ହେବନି ।

ପ୍ରତିଯୋଗିତାର ଦୌଡ଼ରେ କେହିକେହି ହୁଏତ ଆଗ ପଛ ହେଉଥିବେ କିନ୍ତୁ ସାମଗ୍ରୀକ ଭାବେ ନୁହେଁ ।

ଲେଖକମାନେ ଏକଥା ମଧ୍ୟ କହୁଛନ୍ତି ଯେ ଲେଖାର ଆଦର ଯଦି ବଢୁନାହିଁ ତେବେ ଶହ ଶହ ସଂଖ୍ୟାରେ କବିତା ପାଠୋତ୍ସବ କେମିତି ହେଉଛି ? ଶହ ଶହ ସଂଖ୍ୟାରେ ସାହିତ୍ୟାନୁଷ୍ଠାନ କେମିତି ହେଉଛି ? ଏବଂ ସର୍ବୋପରି ଶହଶହ ପୁରସ୍କାର, ମାନପତ୍ର, ସମ୍ବର୍ଦ୍ଧନା କେମିତି ଦିଆଯାଉଛି ? ଏ ସବୁର ସଂଖ୍ୟା ମଧ୍ୟ ଦିନକୁଦିନ ହୁ ହୁ ବଢୁଛି । ଖାଲି ଯେ ଲେଖକମାନେ ପୁରସ୍କାର ପାଉଛନ୍ତି ତା ନୁହେଁ ପ୍ରକାଶକମାନେ ମଧ୍ୟ ପୁରସ୍କାର ପାଉଛନ୍ତି ।

ପ୍ରକୃତ କଥାଟା ହେଲା କୃତ୍ରିମ ଉପାୟରେ ବହିର ଆଦର କମୁଚି ଏବଂ ପାଠକୀୟତା ହ୍ରାସ ପାଉଛି ବୋଲି କୁହାଯାଉଛି । ତା' ପଛରେ ଅଛି ଆଉ ଏକ ଛଳନାପୂର୍ଣ୍ଣ ବିଚାର, ଅର୍ଥନୀତି । ଏପରି କହିଲେ ଲେଖକମାନଙ୍କ ଭିତରେ ଭୟ ସଂଚାର ହେବ । ଫଳରେ ସମଗ୍ର ବଜାରଟା କେତେଜଣଙ୍କ ହାତମୁଠାରେ ରହିଯିବ । ଲେଖକମାନଙ୍କ ଭିତରେ ଏଥିପାଇଁ ଏକ ହତାଶାର ସ୍ୱର ଦେଖା ଦେଇଛି । ସେମାନେ ଆଉ କିଛି ସାହା ଭରସା ପାଉନାହାନ୍ତି । ଗତ କେତେବର୍ଷ ହେଲା ଓଡ଼ିଶାରେ ଏଇ ଯେଉଁ ହାୱା ସୃଷ୍ଟି ହେଉଛି ସେକଥା ଯେ ସାଧାରଣ ପାଠକ ଓ ଲେଖକମାନେ ବୁଝି ନାହାନ୍ତି ସେକଥା ନୁହେଁ । ତେଣୁ ପାଠକମାନେ ଯେଉଁ ଅଭିଯୋଗ କରୁଛନ୍ତି ତାହା ମଧ୍ୟ ପ୍ରଣିଧାନ ଯୋଗ୍ୟ । ସେମାନେ କହୁଛନ୍ତି ଗୋଟାଏ ନୂଆ ବହି ପ୍ରକାଶ ପାଇଲେ ଆମେ କେମିତି ଜାଣିବୁଁ ? କେବଳ ବହି ମେଳା ପର୍ଯ୍ୟନ୍ତ ଅପେକ୍ଷା କରିବା ଛଡ଼ା ଅନ୍ୟ ଉପାୟ ନାହିଁ । ମେଳାରେ ବୁଲି ବୁଲି ବହି ନିର୍ବାଚନ କରିବା ସମ୍ଭବ ନୁହେଁ । ତାର ଏକମାତ୍ର ରାସ୍ତା ହେଲା ବହିର ବିଜ୍ଞାପନ । ଏଠି ସମ୍ବାଦପତ୍ରର ମଧ୍ୟ ଗୋଟିଏ ଭୂମିକା ଅଛି । ସେମାନେ ଯଦି 'ଭାଲେଣ୍ଟାଇନ ଡେ' ପାଇଁ ରିହାତି ହାରରେ ବିଜ୍ଞାପନ ଦେଇ ପାରୁଚନ୍ତି ପୁସ୍ତକକୁ ସେ ସୁବିଧା ଦେଲେ କ୍ଷତି କଅଣ ? ବିଜ୍ଞାପନ ଯେତେ ବେଶୀ ହେବ, ବିକ୍ରି ସେତେ ବେଶୀ ବଢିବ । ଏହାହିଁ ଜୋର ଅର୍ଥନୀତି ।

ଏବେ ଏବେ କଲିକତାରେ ପୁସ୍ତକମେଳା ହୋଇଗଲା । ଏହି ପୁସ୍ତକମେଳାରେ କେଉଁ ଷ୍ଟଲରେ କେଉଁ ଲେଖକର କେଉଁ ନୂଆବହି ପ୍ରକାଶ ପାଇଛି ସେସବୁର ବିସ୍ତୃତ ବିବରଣୀ ପ୍ରମୁଖ ସମ୍ବାଦପତ୍ରମାନଙ୍କରେ ଦୈନିକ ପ୍ରକାଶ ପାଇଲା । ସେଥିରେ ଖାଲି

ବହିର ନାଁ ରହିଲା ନାହିଁ, ବହିର ବିଷୟ ମଧ୍ୟ ଚୁମ୍ବକରେ ସ୍ଥାନିତ ହେଲା । ଏଥିରେ ଯେ ଖାଲି କଲିକତାରେ ଥିବା ପାଠକ ଘରେ କିମ୍ବା ଟ୍ରାମ ବସରେ ଯାଉ ଯାଉ ତାର ଲେଖକ ଓ ପ୍ରିୟ ପୁସ୍ତକକୁ ପାଇ ପାରିଲା ତା ନୁହେଁ ଆମେ ଓଡ଼ିଆ ପାଠକମାନେ ମଧ୍ୟ କଲିକତା ଠାରୁ ଅନେକ ଦୂରରେ ରହି ସେ ସମସ୍ତ କଥା ଜାଣିଁ ପାରିଲୁଁ । ଲେଖକମାନେ ମଧ୍ୟ ସେଥିରୁ ପ୍ରଚୁର ପ୍ରେରଣା ପାଇ ପାରିଲେ । ଏହା ହିଁ ବିଜିନେସ ବଢ଼ିବାର ପ୍ରଥମ ଓ ପ୍ରଧାନ କାରଣ । ପାଠକୀୟତା ସୃଷ୍ଟିରେ ଏହା ପ୍ରଧାନ ସହାୟକ ହୁଏ ।

ଓଡ଼ିଶାରେ ସେ କଥା ହୁଏ ନାହିଁ । ବହିର ବିଜ୍ଞାପନ ମୋଟେ ପ୍ରକାଶ ପାଏ ନାହିଁ । ତେଣୁ ବହିଟିଏ ପ୍ରକାଶ ପାଇଲା ପରେ ବର୍ଷବର୍ଷ ଧରି ତାର ନାଁ ମଧ୍ୟ ଲୋକଙ୍କ ପାଖକୁ ଯାଇ ପାରେ ନାହିଁ । ଏହା ହିଁ ଆମର ପୁସ୍ତକ ପ୍ରକାଶନର ଦୁର୍ଭାଗ୍ୟଜନକ ସ୍ଥିତି । ତେବେ ଏହାର ଗୋଟିଏ ଦିଗ ଏବେ ଲେଖକମାନଙ୍କ ପାଇଁ ଆଶାର କ୍ଷୀଣ ଆଲୋକଟିଏ ସଂଚାର କରିଛି । ଏବେ କିଛି ଲେଖକ ନିଜେ ନିଜେ ପ୍ରକାଶନର ଦାୟିତ୍ୱ ହାତକୁ ନେଇଛନ୍ତି । ସେମାନେ ନିଜେ ଲେଖକ ହୋଇଥିବାରୁ ଲେଖକର ଦୁଃଖ ଯେ କିଛି ପରିମାଣରେ ଲାଘବ ହେଉଛି ଏଥିରେ ସନ୍ଦେହ ନାହିଁ । ବଜାର ସେମାନଙ୍କ ହାତରେ ଯେଉଁମାନେ ନାଆର ମଙ୍ଗଟାକୁ ଟାଣକରି ଧରି ଥାଆନ୍ତି । ତେବେ କଅଣ ଏଥିରୁ ମୁକ୍ତିର ଉପାୟ ନାହିଁ ? ଯେଉଁ ଲେଖକ ତାର ଜୀବନର ସବୁ କିଛି ସମାଜକୁ ଦେଇ ଦିଏ ଏବଂ ସମାଜ ତାକୁ ଯୁଗଯୁଗ ଧରି ବ୍ୟବହାର କରେ ସେ ସମାଜରୁ କିଛି ବି ପାଏ ନାହିଁ । ଏହା ତା ପାଇଁ ଏକ ଭାଗ୍ୟର ବିଡ଼ମ୍ବନା । କୌଣସି ସମାଜ ତାର ଲେଖକ କବି ଓ ସାହିତ୍ୟିକମାନଙ୍କୁ ଅବହେଳା କରି ଆଗକୁ ବଢି ପାରେନା । ଲେଖକ ତାର ପ୍ରାପ୍ୟ ପାଇବା ଦରକାର । ସେ ପ୍ରାପ୍ୟ କେବଳ ଆର୍ଥିକ ନୁହେଁ । ସାମାଜିକ ମଧ୍ୟ । ଏବେ ଲେଖକଙ୍କୁ ରାଜନେତା, କ୍ରୀଡ଼ାବିତ୍‌ମାନଙ୍କ ସହିତ ତୁଳନା କରାଯାଉନାହିଁ । ଜଣେ ରାଜନେତା ଥରଟିଏ ଲୋକ ପ୍ରତିନିଧି ହେଲେ ସାରାଜୀବନ ସବୁ ସୁଖ ସୁବିଧା ହାସଲ କରି ପାରୁଛି । ଜଣେ ଖେଳାଳି ଥରେ ମାତ୍ର ଜାତୀୟ ସମ୍ମାନ ପାଇଲେ ସାରା ଜୀବନ ଆଉ ତାକୁ କୌଣସି କଥା ଚିନ୍ତା କରିବାକୁ ପଡୁନାହିଁ । ଅଥଚ ଲେଖକଟିଏ ସାରା ଜୀବନ ଖଟିଖଟି ଜାତୀୟ ପୁରସ୍କାର ହାସଲ କଲେ ମଧ୍ୟ ରାଷ୍ଟ୍ର ବା ରାଜ୍ୟ ତାକୁ ଆଡ଼ ଆଖିରେ ଦେଖୁନାହିଁ । ଏସବୁ ଅନ୍ୟାୟ ଓ ଅବିଚାରରୁ ରକ୍ଷା ପାଇବାକୁ ହେଲେ ନୂତନ ରାସ୍ତାକୁ ବାଛି ନେବାକୁ ହେବ । ଲେଖକମାନଙ୍କୁ ସଂଗଠିତ ହେବାକୁ ହେବ । ପ୍ରବୀଣ ଓ ନବୀନ ନିର୍ବିଶେଷରେ ସମସ୍ତଙ୍କୁ ଗୋଟିଏ ମଞ୍ଚକୁ ଆସିବାକୁ ହେବ । ସେମାନେ ସମସ୍ତେ ଲେଖକର ଅଧିକାର ସପକ୍ଷରେ ସ୍ୱର ଉତ୍ତୋଳନ କରନ୍ତୁ ।

ମଞ୍ଚ, ଲେଖକର ନ୍ୟୂନତମ ଅଧିକାରର ସୁରକ୍ଷା ପାଇଁ ନୂତନ ଆଇନ ପ୍ରଣୟନ ପାଇଁ ସରକାରଠାରେ ଦାବି କରୁ । ସେ ନ୍ୟୂନତମ ଅଧିକାର ଭିତରେ ତାର ଆର୍ଥିକ ଅଂଶ (ରୟଲଟି) ଠାରୁ ଆରମ୍ଭକରି ଖେଳାଳି ଓ ରାଜନେତାଙ୍କ ପରି ସାମାଜିକ ସ୍ୱୀକୃତି ମଧ୍ୟ ଅନ୍ତର୍ଭୁକ୍ତ ହେଉ । କାହାରିପ୍ରତି ପାତରଅନ୍ତର ନହେଉ । ସରକାର ଏ ଦାୟିତ୍ୱ ଗ୍ରହଣ କରନ୍ତୁ ।

ପୁସ୍ତକ ପ୍ରକାଶନ ପାଇଁ ଲେଖକ ସମବାୟ ସଂସ୍ଥାମାନ ଗଠିତ ହେଉ । ପ୍ରତ୍ୟେକ ସହରରେ ଏ ସଂସ୍ଥା ଗଢ଼ି ଉଠୁ । ସରକାର ଅଗ୍ରାଧିକାର ଭିତ୍ତିରେ ଏମାନଙ୍କଠାରୁ ପୁସ୍ତକ କ୍ରୟ କରନ୍ତୁ । ପୁସ୍ତକ ପ୍ରକାଶନ ପାଇଁ ବ୍ୟାଙ୍କ/ସରକାର ଏମାନଙ୍କୁ ସୁବିଧାରେ ଋଣ ଯୋଗାଇ ଦିଅନ୍ତୁ । ଓଡ଼ିଶାରେ ଏ ପ୍ରକାର ସଂସ୍ଥା ଅଛି ଏବଂ ସେମାନେ ଭଲ କାମ କରୁଛନ୍ତି । କେରଳରେ କେବଳ ସମବାୟ ସଂସ୍ଥାମାନେ ହିଁ ପୁସ୍ତକ ପ୍ରକାଶନର ଦାୟିତ୍ୱ ନେଇ ଥାଆନ୍ତି । ସେଇ ଢାଞ୍ଚାକୁ ମଧ୍ୟ ଅନୁସରଣ କରାଯାଇପାରେ । ବହିର ମୂଲ୍ୟ ନିର୍ଦ୍ଧାରଣ ପାଇଁ ନିର୍ଦ୍ଦିଷ୍ଟ ନୀତି ଅନୁସୃତ ହେଉ । ସରକାର କୌଣସି କମିଶନ ନ ନିଅନ୍ତୁ । ସରକାର ଲାଇବ୍ରେରୀମାନଙ୍କ ପାଇଁ ନୂତନ ନୀତି ନିର୍ଦ୍ଧାରଣ କରନ୍ତୁ । ଲାଇବ୍ରେରୀ ନିର୍ଦ୍ଦେଶାଳୟ ସ୍ଥାପିତ ହେଉ । ସରକାର ଅଧିକ ଅର୍ଥ ମଞ୍ଜୁର କରନ୍ତୁ । ସମସ୍ତେ ମିଶି ଲାଇବ୍ରେରୀ ଆନ୍ଦୋଳନଟିଏ ଗଢ଼ି ତୋଳିବାରେ ସାହାଯ୍ୟ କରନ୍ତୁ । ଏବେ ଏବେ ସୃଷ୍ଟି ହୋଇଥିବା ସମସ୍ୟାର ସମ୍ମୁଖୀନ ହେବାକୁ ହେଲେ ଉପରୋକ୍ତ କେତୋଟି ପ୍ରସ୍ତାବ ସହାୟକ ହେବ ବୋଲି ଆଶା କରାଯାଏ । ❑

('ସମାଜ'-୧୨.୩.୨୦୦୧)

# ସବୁରି ଉପରେ ସାହିତ୍ୟ

ଏଥର ଯେତେବେଳେ ଦ୍ୱିତୀୟ ଥର ପାଇଁ କନ୍ୟାକୁମାରୀ ଗଲି ସେତେବେଳେ ସେଠି ତିନୋଟି କଥା ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ପ୍ରଥମଥର ମୁଁ କନ୍ୟାକୁମାରୀ ଯାଇଥିଲି ୧୯୭୮ରେ । ଯା ଭିତରେ ଦୁଇ ଦଶନ୍ଧିରୁ ବେଶି ସମୟ ଅତିବାହିତ ହୋଇସାରିଲାଣି କିନ୍ତୁ ଗୋଟିଏ ସ୍ଥାନର ପରିବର୍ତ୍ତନର ପ୍ରକ୍ରିୟାକୁ ହିସାବକୁ ନେଲେ ସମୟଟା କେତେ ଛୋଟ ମନେହୁଏ । ଏଇ ମାତ୍ର ୨୦/୨୨ ବର୍ଷ ଭିତରେ ଏତେ ପରିବର୍ତ୍ତନ ହୋଇଥିବା ଦେଖିଲେ ବିସ୍ମିତ ହେବାକୁ ହୁଏ । ମୁଁ ପ୍ରଥମେ ଯେତେବେଳେ ଯାଇଥିଲି ସେତେବେଳେ କନ୍ୟାକୁମାରୀକୁ ରେଳରାସ୍ତା ନଥିଲା ବୋଲି ଆମେ ଥେରୁନେଲଭେଲି ରେଳଷ୍ଟେସନରୁ ଓହ୍ଲେଇ ବସରେ କନ୍ୟାକୁମାରୀ ଯାଇଥିଲୁଁ । ଏଥର ଆମେ ସିଧା ଯାଇ କନ୍ୟାକୁମାରୀ ଷ୍ଟେସନରେ ଓହ୍ଲେଇଲୁଁ । ଦ୍ୱିତୀୟଟି ହେଲା ଏହି ରେଳପଥର ଦୁଇ ପାର୍ଶ୍ୱରେ ହଜାର ହଜାର ପବନ ଚାଳିତ କଳ ଦେଖି ମୁଁ ମୁଗ୍ଧ ହୋଇଗଲି । ଅପୂର୍ବ ଦୃଶ୍ୟଟିଏ ସୃଷ୍ଟି କରୁଥାଏ । ମୁଖ୍ୟତଃ ଏଗୁଡ଼ିକ କୃଷିକୁ ବିଜୁଳି ଶକ୍ତି ଯୋଗାଣ ଅବ୍ୟାହତ ରଖିବା ପାଇଁ ତିଆରି ହୋଇଛି । ତାମିଲନାଡୁ, ଆନ୍ଧ୍ର, କର୍ଣ୍ଣାଟକ ପ୍ରଭୃତି ରାଜ୍ୟରେ କୃଷିକୁ ଅଗ୍ରାଧିକାର ଦିଆଯାଏ । ଆନ୍ଧ୍ରରେ କୁଆଡ଼େ ନିୟମ ହୋଇଛି ଦିନରେ ସହର ଆଡୁ ବିଜୁଳି କାଟି ଗାଁକୁ ବା କୃଷିକ୍ଷେତ୍ରକୁ ଦିଆଯିବ । ବୋଧେ ଏଇଥିପାଇଁ ଓଡ଼ିଶା ଶତକଡ଼ା ୯୫ ଭାଗ ଆନ୍ଧ୍ରର କୃଷିଜାତ ଦ୍ରବ୍ୟ ଉପରେ ନିର୍ଭର କରେ । ତେବେ ସେ ଯା ହେଉ କନ୍ୟାକୁମାରୀର ତୃତୀୟ ବିଷୟ ଦେଖି ମୋ ଆଖି ଖୋସି ହୋଇଗଲା ।

କନ୍ୟାକୁମାରୀରେ ଯେଉଁଠି ବିବେକାନନ୍ଦ ରକ୍ ମେମୋରିଆଲ ଅଛି ଠିକ୍ ତାରି ପାଖରେ ଥିବା ଆଉ ଗୋଟିଏ ପଥର (ରକ୍) ଉପରେ ବିଶାଳକାୟ ପଥରର ମୂର୍ତ୍ତିଟିଏ ଠିଆ ହୋଇଛି । ବିବେକାନନ୍ଦ ମନ୍ଦିରକୁ ମଧ ଟପି ଯାଉଛି । ସମୁଦ୍ର ଭିତରେ ଯେଉଁଠି ଆରବସାଗର, ଭାରତ ମହାସାଗର ଓ ବଙ୍ଗୋପସାଗର ମିଳନ ହୋଇଛି ଏବଂ କୂଳଠାରୁ ପ୍ରାୟ ପାଞ୍ଚଶହ ମିଟର ଦୂରରେ ଆଉ ଗୋଟିଏ ପଥର ପାହାଡ଼ର ମଥା ଉପରେ ଠିଆ ହୋଇଛି ଦୁଇହଜାର ବର୍ଷ ତଳର ମହାନ ମାନବବାଦୀ ସନ୍ଥ କବି ଥିରୁଭାଲୁଭାରଙ୍କର ବିରାଟ ପଥରମୂର୍ତ୍ତି ।

କନ୍ୟାକୁମାରୀରେ ଯାତ୍ରୀ ଭିଡ଼ କେବେ କମେ ନାହିଁ । ବର୍ଷଯାକ ସମାନ ଭିଡ଼ ଲାଗିଥାଏ । ଆଗରୁ ମୁଁ ଯେତେବେଳେ ଯାଇଥିଲି ସେତେବେଳ ସମୁଦ୍ର ଭିତରେ

ବିବେକାନନ୍ଦ ମନ୍ଦିରଟି ହିଁ କେବଳ ଦେଖାଯାଉଥିଲା । ସମୁଦ୍ର କୂଳର ସମସ୍ତ ଆଖି ସେଇଠି ଲାଖି ଯାଉଥିଲା । ଏବେ ଆଉ ସେ କଥା ହେଉନାହିଁ । ଆଖି ଆପେ ଆପେ ଟାଣି ହୋଇଯାଉଛି ସନ୍ଥ କବିଙ୍କ ଅତ୍ୟନ୍ତ ସୁଦୃଶ୍ୟ ଓ ସୁଶୋଭନ ମୂର୍ତ୍ତି ଆଡ଼େ । ବିବେକାନନ୍ଦ ରକ୍ ମେମୋରିଆଲ ମନ୍ଦିର ଭିତରେ ବିବେକାନନ୍ଦଙ୍କ ପଥର ମୂର୍ତ୍ତି ସ୍ଥାପିତ ହୋଇଥିବାରୁ ତାହା ବାହାରକୁ (କୂଳକୁ) ଦେଖାଯାଏନି; କିନ୍ତୁ ଥିରୁଭାଲୁଭାରଙ୍କ ମୂର୍ତ୍ତିଟି ଗୋଟାଏ ମନ୍ଦିର ପରି ଦେଖାଯାଉଥିବା ପ୍ଲାଟଫର୍ମ ଉପରେ ତିଆରି ହୋଇଥିବାରୁ ତାହା ସ୍ୱାଭାବିକ ଭାବେ କୂଳରେ ଥିବା ହଜାର ହଜାର ଦର୍ଶକଙ୍କ ଦୃଷ୍ଟି ଆକର୍ଷଣ କରେ ।

ମୂର୍ତ୍ତି ପାଖକୁ ଯିବାକୁ ମୋଟର ଲଞ୍ଚର ବ୍ୟବସ୍ଥା ଅଛି ତାମିଲନାଡୁ ସରକାରଙ୍କର । ତେଣୁ ପ୍ରତିଦିନ ହଜାର ହଜାର ଲୋକ ସେଠାକୁ ଯାଇ କବିଙ୍କ ପାଦତଳେ ଫୁଲଟିଏ ଥୋଇ (କେହି କେହି ବିନା ଫୁଲରେ ମଧ୍ୟ) ମୁଣ୍ଡିଆ ମାରନ୍ତି । ଏସବୁ ଦୃଶ୍ୟ ମୋତେ ଭାବବିହ୍ୱଳିତ କରିଦେଲା । ଏତେବଡ଼ ବିଶ୍ୱବନ୍ଦିତ କବି ଆଗରେ କାହାର ବା ମୁଣ୍ଡ ନଇଁ ନ ଆସିବ ? ମୁଁ ଦେଖିଲି କବି ଦଣ୍ଡାୟମାନ ଅବସ୍ଥାରେ ଧ୍ୟାନମଗ୍ନ ? ଚକ୍ଷୁ ମୁଦ୍ରିତ । ବାଁ ହାତରେ ତାଙ୍କର ପ୍ରିୟ ପୋଥି 'ତିରୁକ୍କୁରାଲ' । ଯେଉଁଥିରେ ଅଛି ହଜାର ହଜାର ବର୍ଷ କିମ୍ବା ଆହୁରି ବେଶୀ, ହୁଏତ ଅନାଦିକାଳ ପର୍ଯ୍ୟନ୍ତ ମଣିଷକୁ ସତ୍‌ର ମାର୍ଗ ଦେଖାଉଥିବା ବାଣୀ ସମୂହ । କନ୍ୟାକୁମାରୀରେ ଦେବୀ କନ୍ୟାକୁମାରୀଙ୍କ ମନ୍ଦିରଟିଏ ଅବଶ୍ୟ ଅଛି । ସେ ମନ୍ଦିରର ଖ୍ୟାତି ମଧ୍ୟ କମ୍ ନୁହେଁ । ଦୈନିକ ହଜାର ହଜାର ଲୋକ ସେ ମନ୍ଦିରକୁ ଯାଉଛନ୍ତି; କିନ୍ତୁ ମୋର ମନେ ହେଲା ମଣିଷର ସବୁ ଭକ୍ତି, ଶ୍ରଦ୍ଧା ଓ ସମ୍ମାନ ଯେମିତି କବିଙ୍କ ପାଦତଳେ ଅଜାଡ଼ି ହୋଇପଡୁଛି । କବିଙ୍କ ସମଗ୍ର ମୂର୍ତ୍ତିଟି ତ କୂଳରୁ ଅତି ସ୍ପଷ୍ଟ ଦେଖାଯାଉଛି । ତା ସତ୍ତ୍ୱେ ଏତେ ସଂଖ୍ୟକ ଲୋକ ଟିକେଟ କାଟି ଲାଇନ ଲଗେଇ ପ୍ରବଳ ଭିଡ଼ ସତ୍ତ୍ୱେ ଲଞ୍ଚରେ ଚଢ଼ି ସମୁଦ୍ର ଭିତରେ ଥିବା ମୂର୍ତ୍ତି ପାଖକୁ ଯାଉଛନ୍ତି । ମହାନ କବିଙ୍କ ପାଖକୁ ଯାଇ ସମ୍ମାନ ଜଣେଇବାର ଇଚ୍ଛା ଛଡ଼ା ଆଉ କ'ଣ ଥାଇପାରେ ?

ତାମିଲନାଡୁର ଲୋକେ ସାହିତ୍ୟକୁ ସମ୍ମାନ ଦିଅନ୍ତି । କବି, ଲେଖକମାନଙ୍କୁ ସେମାନେ ସମ୍ମାନର ଶୀର୍ଷସ୍ଥାନରେ ରଖିଥାଆନ୍ତି । କାରଣ ସେମାନେ ବୁଝନ୍ତି ଯେ ସାହିତ୍ୟ ହିଁ ମଣିଷକୁ ଯୁଗେ ଯୁଗେ ବାଟ କଢ଼େଇ ଆସିଛି । ସାହିତ୍ୟ ହିଁ ମଣିଷର ପଥ ପ୍ରଦର୍ଶକ । ସାହିତ୍ୟ ଦିଏ ମଣିଷକୁ ବଞ୍ଚିବାର ରାହା । ତେଣୁ 'ତିରୁକ୍କୁରାଲ'ରେ ଯେଉଁ ସନ୍ଦେଶ ରହିଛି ତାହା ମଣିଷକୁ ଚିରକାଳ ଆଗକୁ ବଢ଼ିବାର ରାସ୍ତା ଦେଖାଇଛି ।

ମୁଁ ଆସାମରେ ଦେଖିଛି, 'ଆସାମ ସାହିତ୍ୟ ସଭା'ର ବାର୍ଷିକ ଅଧିବେଶନ ସମୟରେ ତାର ସଭାପତିଙ୍କୁ ସୁସଜ୍ଜିତ ହାତୀ ଉପରେ ବସେଇ ବିରାଟ ଶୋଭାଯାତ୍ରାରେ ସଭାସ୍ଥଳକୁ ନିଆଯାଏ । ସେ ଶୋଭାଯାତ୍ରାର ଅଗ୍ରଭାଗରେ ଥାଆନ୍ତି କେବଳ ଗୋଟିଏ

ରଙ୍ଗର ଅସମୀୟା ଶାଢ଼ି ପରିହିତା ଶହେ ଖଣ୍ଡେ ନାରୀ । ଏମାନେ ଶଙ୍ଖ ଧ୍ୱନି ମଧ୍ୟରେ (ପୁରୁଷମାନେ ଢୋଲ ମହୁରୀ ମଧ୍ୟ ବଜାଉ ଥାଆନ୍ତି) ସଭାପତିଙ୍କୁ ପାଛୋଟି ନିଅନ୍ତି । କେଉଁ ଜାତୀୟସ୍ତରର ରାଜନେତା ଆସାମରେ ଏ ସମ୍ମାନ ପାଏ ମୁଁ ଜାଣେନା । ଆସାମର ପ୍ରାଇମେରୀ ସ୍କୁଲଠାରୁ ଗଭର୍ଣ୍ଣର ହାଉସ ପର୍ଯ୍ୟନ୍ତ ସବୁଠି ଲକ୍ଷ୍ମୀନାଥ ବେଜବରୁଆ ଓ ଚନ୍ଦ୍ରକୁମାର ଅଗ୍ରୱାଲଙ୍କ ଫଟୋ ସ୍ଥାନିତ ହେଇଛି । ଶଙ୍କରଦେବଙ୍କ ଫଟୋ ସବୁଠି ପୂଜା ପାଏ । ଶଙ୍କରଦେବ ଯେ କେବଳ ଭାଗବତ ରଚନା କରିଥିଲେ ତା ନୁହେଁ ସେ ମଧ୍ୟ ଥିଲେ ନାଟ୍ୟକାର । ତାଙ୍କ ନାଟକ ମାଧ୍ୟମରେ ସେ ଜାତିପ୍ରଥା ବିରୋଧରେ ସ୍ୱର ଉତ୍ତୋଳନ କରୁଥିଲେ । ଏଥିପାଇଁ ଆସାମରେ ଏବେ ଜାତିପ୍ରଥା ଗୌଣ ହୋଇପଡ଼ିଛି । ସମଗ୍ର ଅସମୀୟା ଜାତି ଆଜି ତେଣୁ କବି ଓ ସାହିତ୍ୟିକଙ୍କୁ ସର୍ବୋଚ୍ଚ ସମ୍ମାନ ଦିଏ । ବଙ୍ଗଳାରେ କବିଗୁରୁ ଯେଉଁ ସମ୍ମାନ ପାଆନ୍ତି ରାଜନେତାମାନେ ତାର କିୟଦଂଶ ମଧ୍ୟ ପାଆନ୍ତି ନାହିଁ । ଦଳ ଓ ମତ ନିର୍ବିଶେଷରେ ରବୀନ୍ଦ୍ରନାଥ, ଶରତଚନ୍ଦ୍ର, ବଙ୍କିମ ସର୍ବୋଚ୍ଚ ସମ୍ମାନ ପାଆନ୍ତି । ଗୋଟାଏ ଜାତିର ସ୍ୱାଭିମାନ ଏଇଥିରୁ ସ୍ପଷ୍ଟ ହୋଇଯାଏ । ତାର ଗର୍ବ ଓ ଅହଂକାର ସବୁ ଏଇ ମହାନ ଲେଖକମାନଙ୍କୁ କେନ୍ଦ୍ରକରି ଘୂରି ବୁଲୁଥାଏ । ଦେଶ ବାହାରେ ଗୋଟାଏ ଜାତିର ସ୍ୱାଭିମାନ ତା'ର ସାହିତ୍ୟକୁ ନେଇ ମପାଯାଏ । ଏହା ହିଁ ଗୋଟାଏ ଜାତିର ଐତିହ୍ୟ ଓ ଇତିହାସ ।

ତାମିଲନାଡୁ ସରକାର ୧୦.୨୫ କୋଟି ଟଙ୍କା ଖର୍ଚ୍ଚକରି ଥିରୁଭାଲୁଭାରଙ୍କ ମୂର୍ତ୍ତି ନିର୍ମାଣ କରାଇଥିଲେ । ମୂର୍ତ୍ତିର ଉଚ୍ଚତା ୧୩୩ ଫୁଟ । ୧୯୭୯ ମସିହାରେ ଯେଉଁ ମୂର୍ତ୍ତି ନିମାଣର ଶୁଭ ପ୍ରଦାନ କରିଥିଲେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଏମ.ଜି. ରାମଚନ୍ଦ୍ରନ, ୨୦୦୦ ମସିହାରେ ସେ ମୂର୍ତ୍ତିକୁ ଉନ୍ମୋଚନ କରିଥିଲେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଏମ. କରୁଣାନିଧି । ମୋର କହିବାର କଥା ସାହିତ୍ୟକୁ ଉଚ୍ଚତମ ସମ୍ମାନ ଦେବାପାଇଁ ତାମିଲନାଡୁ ସରକାର ଅଗ୍ରାଧିକାର ଭିତ୍ତିରେ ତାଙ୍କ ରାଜକୋଷରୁ ଅକାତରେ ୧୦ କୋଟିରୁ ଉର୍ଦ୍ଧ୍ୱ ଟଙ୍କା ମୁଣ୍ଡି ପାରିଲେ । ଆସାମରେ ଲୋକମାନେ ବ୍ୟକ୍ତିଗତ ପ୍ରଚେଷ୍ଟାରେ ୫୦ରୁ ୬୦ ଲକ୍ଷ ଟଙ୍କା ଖର୍ଚ୍ଚ କରି 'ଆସାମ ସାହିତ୍ୟ ସଭା'ର ବାର୍ଷିକ ଅଧିବେଶନ କରାନ୍ତି ଏବଂ ବର୍ଷକୁ ଲକ୍ଷ ଲକ୍ଷ ଟଙ୍କାର ବହି ଛାପନ୍ତି ଓ ଗବେଷଣାରେ ମଧ୍ୟ ଖର୍ଚ୍ଚ କରନ୍ତି । ଆଉ ଆମେ ? କେଉଁଠି ଅଛୁ ଆମେ ? ଆମ ସରକାର ତାଙ୍କ ରାଜକୋଷରୁ ଗୋଟିଏ ପଇସା ସାହିତ୍ୟ ପାଇଁ ଖର୍ଚ୍ଚ କରି ପାରୁନାହାନ୍ତି ବୋଲି ଏବେ ସମଗ୍ର ସାହିତ୍ୟ ଓ ସଂସ୍କୃତିକୁ କରପୋରେଟ ସେକ୍ଟରର ଦୟା ଉପରେ ଛାଡ଼ି ଦେବାକୁ ନିଷ୍ପତ୍ତି ନେଇଛନ୍ତି । ହାୟ ! କେତେଦିନ ଆଉ ଏମିତି କୁଳ ବୁଡ଼ିଲାବେଳର ପୁଅମାନଙ୍କୁ ନେଇ ଆମକୁ ଚଳିବାକୁ ହେବ କେଜାଣି ? ଏଥିରୁ କ'ଣ କେହି ମୁକ୍ତିର ପଥ ଦେଖାଇ ପାରିବେନି ? ❑

('ସମାଜ'-୨୨.୧.୨୦୦୪)

# ସମ୍ବାଦ ଓ ସାହିତ୍ୟ

ଏବେ ଘଟଣାଟିଏ ଘଟିଯାଇଛି ବଲାଙ୍ଗୀର ଜିଲ୍ଲାର କୌଣସି ଏକ ଗାଁରେ ଗୋଟିଏ ପରିବାରର ତିନୋଟି ଝିଅ ଏକ ସଂଗରେ ବେକରେ ଦଉଡ଼ି ଦେଇ ଆତ୍ମହତ୍ୟା କରିଛନ୍ତି । ଏହି ତିନିଜଣ ତିନି ଭଉଣୀ ଏବଂ ସମସ୍ତେ ୨୪/୨୫ ବର୍ଷ ବୟସର । ଅତ୍ୟନ୍ତ ଦରିଦ୍ର ପରିବାର । ବାପା ମାଆ ଆଗରୁ ବିଦାୟ ନେଇଛନ୍ତି । ସେମାନଙ୍କୁ ବି.ପି.ଏଲ୍. କାର୍ଡ ମିଳିଥିଲା କି ନା ଆମେ ଜାଣୁନାଁ । ସେମାନଙ୍କୁ ସରକାରଙ୍କର ଦାରିଦ୍ର୍ୟ ଓ କ୍ଷୁଧାଦୂରୀକରଣର ଅନ୍ୟ କୌଣସି ଯୋଜନାର ଖବର ମଧ ପହଞ୍ଚି ନଥିବ । ସେ ସବୁ ବରାବର ଫାଇଲରେ ଥାଏ । ସେ ସବୁକୁ ଫାଇଲରେ ରଖି ଆମ ସରକାର 'ଫିଲଗୁଡ ଫେକ୍ଟର'ର ଉତ୍ତାପ ନିଜେ ଗ୍ରହଣ କରୁଥାଆନ୍ତି । ତେଣୁ ସେ ସବୁ ବଲାଙ୍ଗୀର ପରି ଏକ ଅନୁନ୍ନତ ଜିଲ୍ଲାକୁ ଯାଇ ପାରି ନ ଥିବା ଏଇ ତିନି ଭଉଣୀଙ୍କ ପାଇଁ ଜୀବନ ଜିଇଁବା ଦୁର୍ବିସହ ହୋଇ ପଡ଼ିଥିବ । ଏମାନଙ୍କ ପାଇଁ ଦିନରେ କ୍ଷୁଧାର ଅତ୍ୟାଚାର ଏବଂ ରାତିରେ ମଣିଷର ଜଙ୍ଗଲୀ ସଭ୍ୟତାର ଅତ୍ୟାଚାର ତମାମ୍ ସମୟ ପାଇଁ ଅସହ୍ୟ ହେଇ ଉଠିଥିବ । ଜୀବନକୁ ବଞ୍ଚେଇ ହେଉ ନ ଥିବ କି ଯୌବନକୁ ରକ୍ଷା କରି ହେଉ ନ ଥିବ । ଖାଲି ଅତ୍ୟାଚାର ଓ ଅତ୍ୟାଚାର । ଘରୁ ଗୋଡ଼ କାଢ଼ିଲେ ରକ୍ଷା ନାହିଁ କି ଘରେ କବାଟ (ଯଦିଥିବ) କିଳି ରହିଲେ ମଧ ରକ୍ଷା ନାହିଁ । ଏପରି ଅବସ୍ଥାରେ ଗୋଟିଏ ଅନୁନ୍ନତ ଅଞ୍ଚଳର ଅଶିକ୍ଷିତ ତିନୋଟି ଝିଅ ସେମାନଙ୍କ ନାରୀତ୍ୱକୁ ପଶୁଙ୍କ କବଳରୁ ବଞ୍ଚେଇବାକୁ ହେଉ କି ଗଣ୍ଡେ ଖାଇ ଦଣ୍ଡେ ଜିଇବାର କୌଣସି ରାହା ନ ପାଇ ହେଉ କିମ୍ବା ଉଭୟ କାରଣରୁ ହେଉ ଆତ୍ମହତ୍ୟା ଛଡ଼ା ଆଉ କୌଣସି ଉପାୟ ନାହିଁ ବୋଲି ଭାବିଥିବେ । ଏ ଦୁଇଟି କାରଣ ଗୋଟାଏ ନାରୀ ପାଇଁ ପ୍ରଥମ ଓ ପ୍ରଧାନ ପ୍ରଶ୍ନ । ଜୀବନ ଜିଇବାକୁ ହେଲେ ଖାଦ୍ୟ ମୁଠାଏ ଯେତିକି ଜରୁରୀ, ନାରୀତ୍ୱର ସମ୍ମାନ ରକ୍ଷା ତା' ପାଇଁ ସେତିକି ଜରୁରୀ । ସମଗ୍ର ନାରୀ ଜାତି ପାଇଁ, ତାହା ଆମେରିକାରେ ହେଉ ବା ଆଫ୍ରିକାରେ ହେଉ, ଭାରତରେ ହେଉ ବା ଚୀନରେ ହେଉ, ସମାନ ପ୍ରଶ୍ନ । ନାରୀଟିଏ ଏ ଦୁଇଟିକୁ ଯଥେଷ୍ଟ ପ୍ରାଧାନ୍ୟ ଦେଉଥିବା ବେଳେ ନିଜ ସମ୍ମାନଟିକୁ କ୍ଷୁଧାର ଉର୍ଦ୍ଧ୍ୱରେ ତୋଳି ଧରିଥାଏ । ସେ ଭୋକ ଉପାସରେ ଦିନେ ଦି ଦିନ କଟେଇ ପାରେ । କିନ୍ତୁ କ୍ଷୁଧା ନିବାରଣ ପାଇଁ ଗୋଟିଏ ମୁହୂର୍ତ୍ତ ମଧ ତା'ର ସମ୍ମାନ ସହିତ ସାଲିସ କରିବାକୁ ପ୍ରସ୍ତୁତ ନୁହେଁ । ଶ୍ରମ ପାଇଁ ତା'ର ଆପତ୍ତି ନ ଥାଏ । ଶ୍ରମ ପାଇଁ ତା'ର ଜନ୍ମ । ସାରା ଜୀବନ ଶ୍ରମ କରିବାକୁ ସେ ପ୍ରସ୍ତୁତ; କିନ୍ତୁ ସମ୍ମାନ ବିନିମୟରେ ନୁହେଁ, ନାରୀତ୍ୱର ସମ୍ମାନକୁ ସେ ଉଚ୍ଚତମ ସମ୍ମାନ ଦେଇଥାଏ ।

ଏ ସମ୍ବାଦଟି ପ୍ରକାଶ ପାଇଲା ପରେ ସାଧାରଣ ଭାବେ ଏକ ଆଲୋଡ଼ନ ସୃଷ୍ଟି ହେଇଛି । ମାନବବାଦୀ ମଣିଷମାନେ ଏଥିରେ ବ୍ୟଥିତ ହୋଇଛନ୍ତି । ସେମାନଙ୍କ ଭିତରେ ଏକ ଗଭୀର ସମ୍ବେଦନ ସୃଷ୍ଟି ହୋଇଛି । ତିନୋଟି ଫୁଟି ଆସୁଥିବା ଫୁଲ, ବା ସମାଜର ତିନୋଟି ଇଡ଼ାକୁ ସୈନିକ, ସଂଗ୍ରାମୀ ଯୋଦ୍ଧା, ତାଙ୍କ ବାହାରେ ଥିବା ମଣିଷ ସମାଜରୁ ଟିକିଏ ବୋଲି ସମର୍ଥନ ପାଇ ପାରିଲେ ନାହିଁ । କେହି ସେମାନଙ୍କ ଦୁଃଖରେ ଆହା ପଦେ କହିଲେ ନାହିଁ । ଆମେ ସବୁ ମୁଖା ପିନ୍ଧା ମଣିଷ । ଆମ ଭିତରେ ଖୋଜିଲେ ବି ମଣିଷେ ପଣିଆ ଟିକେ ମିଳିବ କି ନା ସନ୍ଦେହ । ତେଣୁ ତିନି ଝିଅର ଅକାଳ ମୃତ୍ୟୁରେ ଆମ ଭିତରେ କି ପ୍ରତିକ୍ରିୟା ସୃଷ୍ଟି ହେବ ? ସମ୍ବାଦପତ୍ରମାନେ ତାଙ୍କ କାମ କରି ଦେଲେ । ସେମାନେ ତାଙ୍କ ଦାୟିତ୍ୱରୁ କେବେ ହଟି ଯାଆନ୍ତି ନାହିଁ । ଯାହା ସମ୍ପୂର୍ଣ୍ଣ ଅଜଣା ହୋଇ ରହି ଯାଇ ଥାଆନ୍ତା ତାକୁ ସେମାନେ ସମସ୍ତଙ୍କ ଠାରେ ପହଞ୍ଚେଇବାର ବ୍ୟବସ୍ଥା କରିଦେଲେ । ଏହା ହିଁ ସେମାନଙ୍କର ସାମାଜିକ ଦାୟିତ୍ୱ, ତା'ପରର କାମଟି ଆମ ପାଖରେ । ବାକି କାମ ଆମର କରିବାର କଥା । ସେହି ଝିଅମାନଙ୍କୁ ସାମାଜିକ ନ୍ୟାୟ କିଏ ଦେବ ? ସେଇ ଝିଅମାନେ କେବଳ ସେମାନଙ୍କ ଭିତରେ ସୀମାବଦ୍ଧ ହୋଇ ରହି ନାହାନ୍ତି । ସେମାନେ କେବଳ ତିନି ଜଣ ନୁହଁନ୍ତି । ସେମାନେ ଲକ୍ଷ ଲକ୍ଷ ବା କୋଟି କୋଟି । କିମ୍ବା ଆହୁରି ବେଶୀ । ସେମାନେ ସମଗ୍ର ନାରୀ ଜାତିର ପ୍ରତିନିଧିତ୍ୱ କରୁଛନ୍ତି । ତା' ଭିତରେ ମଧ୍ୟ ଅଛନ୍ତି ଫକୀରମୋହନଙ୍କ 'ରେବତୀ' ଠାରୁ ଆରମ୍ଭ କରି ଏବର ଗୌରହରି ଦାସଙ୍କ 'ଅହଲ୍ୟା', ଜ୍ୟୋତ୍ସ୍ନା ରାଉତରାୟଙ୍କ 'ମଲ୍ଲିକା' (ଦ୍ୱିତୀୟ ପୃଥିବୀ) ରଶ୍ମି ରାଉଳଙ୍କ 'ନଖୀ' (ଝାନସୀ ରାଣୀ) ଏବଂ ସୁପ୍ରିୟା ପଣ୍ଡାଙ୍କ 'ନାଜିଆ' (ମୃତ ନଦୀ) ପ୍ରଭୃତି ଅନେକ । ଏ ସମସ୍ତେ ଏବେ ମଧ୍ୟ ବଞ୍ଚିଛନ୍ତି । ବଞ୍ଚିବେ ଯୁଗ ଯୁଗକୁ । ସାହିତ୍ୟର ପୃଷ୍ଠାରେ ଏମାନେ ବଞ୍ଚିଥିବେ କାଳ କାଳକୁ କେବଳ କହିବାକୁ ଯେ 'ପୁରୁଷ ପ୍ରଧାନ ସମାଜରେ ନାରୀ ଉପରେ ଅତ୍ୟାଚାର ପ୍ରାଗୈତିହାସିକ ଯୁଗ ଠାରୁ ଆଜିଯାଏ ବରାବର ହୋଇ ଆସୁଛି । ସମୟ ବଦଳିବା ସହିତ ତା'ର କୌଣସି ପରିବର୍ତ୍ତନ ହେଇନାହିଁ । ଏବେ ଏକ ବିଂଶ ଶତାବ୍ଦୀରେ ତାହା ଚରମ ସୀମାରେ ପହଞ୍ଚିଛି । ଥୋକେ ନାରୀକୁ ଯେମିତି ଭୋଗର ବସ୍ତୁ ହିସାବରେ ଗ୍ରହଣ କରୁଛନ୍ତି ଏ ଶତାବ୍ଦୀରେ ଅନ୍ତତଃ ସେ ମାନସିକତାର ପରିବର୍ତ୍ତନ ହେବ ବୋଲି ଆଶା କରାଯାଉଥିଲା । ସେ ସବୁ କିଛି ହେଲା ନାହିଁ । ବରଂ ଆମ ସାହିତ୍ୟରେ ସେ ଚିତ୍ର ଏତେ ଉତ୍କଟ ହେଉଛି ଯେ ସେଥିରେ ବିଶାଳ ନାରୀତ୍ୱର ପ୍ରତିନିଧିତ୍ୱ କରୁଥିବା ଏହି ତିନୋଟି ଝିଅ ପୂରାପୂରି ହଜିଯାଇ ସେ ସ୍ଥାନରେ ଅନ୍ୟ ଅବାଞ୍ଛିତମାନେ ଆସନ ଜମେଇ ବସି ଗଲେ । ଦେହବାଦର ନାରୀତ୍ୱ ତା'ର ସମସ୍ତ ଶାଖା ପ୍ରଶାଖା ମେଲେଇ ଉଦ୍‌ଭାସିତ ହୋଇ ଉଠିଲା । ଏବେ ସ୍ୱାଭାବିକ ଭାବେ ପ୍ରଶ୍ନ ଉଠେ ଏମାନେ ଆମ ସମାଜରେ କେତେ ପରସେଣ୍ଟ ? ଦେହବାଦକୁ ନେଇ ବେପସା କରୁଥିବା ଲୋକମାନେ ସବୁ ସମାଜରେ ଘୃଣାର ପାତ୍ର । ସମାଜର ଅବ୍ୟବସ୍ଥା ପାଇଁ ସେମାନଙ୍କ

ଦୁରାବସ୍ଥା । ସେଥିପାଇଁ ଆମେ ସମ୍ବେଦନଶୀଳ । ସେ ଅବ୍ୟବସ୍ଥାକୁ ସୁଧାରିବାକୁ ସାହିତ୍ୟ ଚେଷ୍ଟା କରୁଛି । କିନ୍ତୁ ମିଡ଼ିଲ କ୍ଲାସ ବା ହାୟର କ୍ଲାସରେ ଥିବା ଏବଂ ଉନ୍ନତ ପରିବେଶରେ ଅଳସ ଭାଙ୍ଗୁଥିବା ଦେହଜୀବୀମାନେ ଯଦି ଆମ ସାହିତ୍ୟରେ ପୁଣ୍ୟ ଓ ପବିତ୍ର ଭାବରେ ଚିତିତ୍ର ହୁଅନ୍ତି ତେବେ ତିନୋଟି ଝିଅ ଯୋଉମାନେ ଜୀବନ ଯୁଦ୍ଧରେ ଆମର ସ୍ୱାର୍ଥପରତା ଓ ଉଦାସୀନତା ପାଇଁ ହାରିଗଲେ ସେମାନଙ୍କୁ ଆମେ କୋଉଠି ସ୍ଥାନ ଦେବା ? ଆଜି ହୁଏତ ସେ ତିନୋଟି ଝିଅ ଆମକୁ ସେଇ କଥା ପଚାରୁଛନ୍ତି । ଜଣେ ଲେଖକ ହିସାବରେ ସେମାନେ ମରିଛନ୍ତି ବୋଲି ମୁଁ ବିଶ୍ୱାସ କରେଁ ନାହିଁ । ମୁଁ ମଧ୍ୟ ବିଶ୍ୱାସ କରେ ନାହିଁ ଯେ ସେଇ ଝିଅମାନଙ୍କ ମର୍ମବ୍ୟଥା ଯାହା ସେମାନେ ପ୍ରକାଶ କରିବାର ସୁଯୋଗ ପାଇ ନାହାନ୍ତି । ସେ ସବୁ ଏବେ ଆମର ଭୋଗବାଦୀ ନିଃଶ୍ୱାସ ପ୍ରଶ୍ୱାସର ଦୂଷିତ ବାୟୁମଣ୍ଡଳ ଭିତରେ ଗୁମ୍ଫିତ ହେଇ ରହିଯାଇଛି । ସେ ଝିଅମାନେ ନିଶ୍ଚୟ ଆଶା ରଖନ୍ତି ଯେ ଯଦି ସମାଜ ସେମାନଙ୍କୁ ନ ଦେଖିଲା, ରାଷ୍ଟ୍ର ମଧ୍ୟ 'ଫିଲଗୁଡ୍ ଫେକ୍ଟର' ମଧ୍ୟରେ ବୁଡ଼ି ରହି ସେମାନଙ୍କୁ ନ ଚିହ୍ନିଲା ତେବେ ତାଙ୍କ କଥା କିଏ ଆଉ ଅବଶିଷ୍ଟ ମଣିଷମାନଙ୍କ ପାଖରେ ପହଞ୍ଚେଇବ ? କିଏ ସାଇତି ରଖିବ କାଳ କାଳକୁ ସେମାନଙ୍କ ଜୀବନର କରୁଣ ଇତିହାସ ? କିଏ ସେ ଶେଷ ହେଉ ନ ଥିବା ସଂଗ୍ରାମର ନଥିକୁ ସାଇତି ରଖିବ, ଯାହା ଆଗାମୀ ପିଢ଼ିକୁ ମନେ ପକେଇ ଦେବ ?

ସେ ତିନି ଝିଅ କେବଳ ସାହିତ୍ୟ ଉପରେ ହିଁ ଭରସା ରଖିଥିବେ । ସେମାନେ ନିଶ୍ଚୟ ଜାଣନ୍ତି କେବଳ ସାହିତ୍ୟ ହିଁ ମଣିଷକୁ ଯୁଗେ ଯୁଗେ ବଞ୍ଚିବାର ରାହା ଦେଇ ଆସିଛି । ବଞ୍ଚିବା ପାଇଁ ସଂଗ୍ରାମର ଶୈଳୀ ଦେଖେଇ ଆସିଛି । ଏବଂ ସେଇ ସଂଗ୍ରାମ ହିଁ ସମାଜକୁ ବରାବର ଶକ୍ତି ଯୋଗାଇ ଆସିଛି ।

ଏସବୁ ସତ୍ତ୍ୱେ ଦୁର୍ଭାଗ୍ୟ ଏତିକି ଯେ, କୋଉ ପୂରାକାଳରେ ପୁରୁଷ ସିନା ନାରୀକୁ ଅବଦମିତ କରି ଗୋଟିଏ 'ସବ ଅର୍ଡ଼ିନେଟ୍' ହିସାବରେ ଦେଖି ଆସୁଥିଲା ଏବଂ ପୁରୁଷ ହିଁ ନାରୀର ସବୁ ଜ୍ୱାଳା ଓ ଯନ୍ତ୍ରଣାର କାରଣ ହେଉଥିଲା, ଏବେ ଏକବିଂଶ ଶତାବ୍ଦୀରେ ଶିକ୍ଷା ଓ ସଭ୍ୟତା ବଢ଼ିଲା ପରେ ନାରୀର ଆଉ ଏକ ଶତ୍ରୁ ଆସି ସେମାନଙ୍କ ଆଗରେ ଠିଆ ହୋଇଛି । ନାରୀ ଉପରେ ଅତ୍ୟାଚାର ବେଳେ ସେ ମଧ୍ୟ ପୁରୁଷକୁ ସାହାଯ୍ୟ କରୁଛି । ସେ ହେଉଛି ନିଜେ ନାରୀ । ସେ ମଧ୍ୟ ପୁରୁଷକୁ ସାହାଯ୍ୟ ଦେଉଛି ଏବଂ ଏ କ୍ଷେତ୍ରରେ ନାରୀଟି ଅସହ୍ୟ ଯନ୍ତ୍ରଣାରେ ଫାଟି ପଡୁଥିଲା ବେଳେ ସେ ଅନ୍ୟକୁ 'ସମାଜର ପ୍ରକୃତ ଚିତ୍ର ଆଙ୍କୁଛି' କହି ପୁରୁଷ ପାଖରେ ଠିଆ ହୋଇ ହସି ହସି ଫାଟି ପଡୁଛି । ନାରୀ ଆଜି ନାରୀର ଶତ୍ରୁ । ଯୋଉ ନାରୀ ସେଇ ନାରୀ ଉପରେ ଅତ୍ୟାଚାର କରେ ସେଇ ପୁଣି ଆଜି ରାକ୍ଷସର ହୃଦୟ ନେଇ ମା ପେଟର କନ୍ୟା ଭ୍ରୁଣଟିକୁ ମଧ୍ୟ ହତ୍ୟା କରୁଛି । ଆମ ସାହିତ୍ୟରେ ନାରୀର ଏଇ ପାଶବିକତା କଥା କିନ୍ତୁ ପ୍ରକାଶ ପାଉନାହିଁ । ଯିଏ ସୃଷ୍ଟି କରେ ଏବଂ ଯାହାର ମହନୀୟତା କେବଳ ଏଇ

ସୃଷ୍ଟି ପାଇଁ ହିମାଳୟ ଅପେକ୍ଷା ଉଚ୍ଚବୋଲି ଧରାଯାଇଥାଏ ସେ ପୁଣି ସଂହାର କରେ । ଏକବିଂଶ ଶତାବ୍ଦୀରେ ନାରୀର ଏଇ ବିଚିତ୍ର ଓ ଭୟଙ୍କର ଚରିତ୍ରକୁ କାହିଁକି କେଜାଣି ସାହିତ୍ୟରେ ଅଣା ଯାଉନାହିଁ । ଅନ୍ତତଃ ନାରୀମାନେ ଏ ଦିଗରେ ଆଗେଇ ଆସିବା କଥା କିନ୍ତୁ ସେ କଥା ହେଉନାହିଁ । ଅଧିକନ୍ତୁ ବ୍ୟଭିଚାର କ୍ଷେତ୍ରରେ ନାରୀର ଦେହବାଦୀ ଆଗୁଆ ପଣକୁ 'ବିବର୍ଜିତ ଝିଅ' ଭାବରେ ଉତ୍ତୋଳିତ କରି ରଖାଯାଇଛି । ସେମାନଙ୍କୁ ସମାଜରେ ସ୍ୱତନ୍ତ୍ର ସ୍ଥାନ ଦିଆ ଯାଇଛି । ସେମାନଙ୍କୁ ଗୌରବାନ୍ୱିତ କରାଯାଉଛି, ମହିମାମଣ୍ଡିତ କରାଯାଉଛି । ଏହା ଦ୍ୱାରା ତିନୋଟି ଯାକ ଝିଅ ଏବଂ ସେମାନଙ୍କ ପଛରେ ଦୃଢ଼ ଭାବରେ ଠିଆ ହେଇଥିବା ଅସଂଖ୍ୟ ଝିଅ, ସମଗ୍ର ପୃଥିବୀର ଅତ୍ୟାଚାରିତା ଝିଅମାନେ ନ୍ୟାୟ ପାଇବାରୁ ବଞ୍ଚିତ ହେଲେ । ସେମାନେ ସାହିତ୍ୟରେ ସମ୍ମାନଜନକ ସ୍ଥାନ ପାଇବାକୁ ହକଦାର ନୁହଁନ୍ତି ?

ଦେହବାଦକୁ ଏକ ସାମାଜିକ ଆବଶ୍ୟକତା ହିସାବରେ ଗ୍ରହଣ କରି ହେବନାହିଁ । ଅନ୍ତତଃ ସାହିତ୍ୟରେ ସେମିତି ଭାବରେ ତାକୁ ରଙ୍ଗ ଦେଇ ହେବ ନାହିଁ କି ଉତ୍ସାହିତ କଲାଭଳି ମଧ ଦେଖେଇ ହେବ ନାହିଁ । ପାଠକୀୟତା ବଢ଼େ ବୋଲି ତାକୁ ଉଚ୍ଚତର ସ୍ଥାନ ଦେଇ ହେବ ନାହିଁ । ଯଦି ହୁଏ; ସାହିତ୍ୟର ମହତ୍ତମ ଉଦ୍ଦେଶ୍ୟଟି ବ୍ୟାହତ ହେବ । ସାହିତ୍ୟର ସାମାଜିକ କର୍ତ୍ତବ୍ୟ ବିଘ୍ନିତ ହେବ ।

ଏହି ତିନୋଟି ଝିଅକୁ ଅବଶ୍ୟ କେହି କେବେ ସାହିତ୍ୟରେ ସୁଯୋଗ୍ୟ ସ୍ଥାନ ଦେବେ କି ନା ତାହା ଏକ ଭିନ୍ନ ପ୍ରଶ୍ନ । ଆମ ସାହିତ୍ୟରେ ଏବେ ଏ ପ୍ରକାର ବ୍ୟକ୍ତିତ୍ୱ କମି କମି ଆସୁଛି । ସେ ପ୍ରକାର ସତ୍ୟଶୀଳ ସୃଜନଶୀଳତା ମଧ କମି କମି ଆସୁଛି । ତା'ର ଗୋଟାଏ କାରଣ ହୁଏତ ହୋଇପାରେ ଯେ ଅନେକ କାରଣରୁ ଆମ ଭିତରେ ଏବେ ହୃଦୟହୀନତା ବେଶୀ ବୃଦ୍ଧି ପାଉଛି । ମାନବିକ ସମ୍ବେଦନ କଥାଟା ମଧ ମରି ମରି ଆସୁଛି । ଅଳ୍ପରେ ପ୍ରଚୁର ପାଇବାର ଇଚ୍ଛା ଆମକୁ ଅନ୍ଧକରି ଦେଉଛି । ତେଣୁ 'ସାଇନିଂ' କଥାଟା ଉପରେ ଜୋର ଦିଆଯାଉଛି । ସାହିତ୍ୟରେ ମଧ ଏଇ କଥାଟାକୁ ପ୍ରୟୋଗ କରି ଦେଖି ହେବ । କିଛି ମହକ ସୃଷ୍ଟି କରି ସମସ୍ତଙ୍କୁ ଅନ୍ଧ କରିଦେଇ ହେବ । ଏଇ ଭାବନାଟା ଆମକୁ ଘାରି ଥିବାରୁ ଆମେ ସାହିତ୍ୟର ଅସଲ ଉଦ୍ଦେଶ୍ୟକୁ ପଛକୁ ଠେଲି ଦେଉଛୁଁ । ଗୋଟାଏ ନକଲି ଉଦ୍ଦେଶ୍ୟ ପଛରେ ଧାଉଁଛୁ । ହେତୁକୁ ଛାଡ଼ି ଅହେତୁକୁ କୋଳେଇ ନେଉଛୁ । ଫଳରେ ୯୯ ଭାଗ ଆମଠୁ ଅଲଗା ହୋଇ ଯାଉଛନ୍ତି ଏବଂ ମାତ୍ର ୧ ଭାଗ ଆମ ପାଖରେ ଠିଆ ହେଇ ରହୁଛନ୍ତି । ଆମେ ସେଇମାନଙ୍କୁ ନେଇ ଗର୍ବ କରୁଛୁଁ । ❑

('ସମୟ'-୨୮.୨.୨୦୦୪)

# ସାହିତ୍ୟ, ସରକାର ଓ ସମ୍ବାଦପତ୍ର

ଏବେ ଆମ ଓଡ଼ିଶାରେ ବହି ମେଳାର ଋତୁ ଆରମ୍ଭ ହୋଇଛି । ତେବେ ଆଜିକାଲି ବହିମେଳା ଯେମିତି ଭାବରେ ସବୁଠି ଆରମ୍ଭ ହେଉଛି ସେଥିରେ ତାକୁ କୌଣସି ଗୋଟିଏ ଋତୁ ଭିତରେ ଆବଦ୍ଧ କରି ରଖାଯାଇ ପାରିବ ନାହିଁ । ବହିମେଳା ଏବେ ସବୁଠି ହେଉଛି, ସବୁବେଳେ ହେଉଛି । ତେଣୁ ତାକୁ ଏବେ କେଉଁଟା ମାସର ଗୋଟିଏ ଋତୁ ଭିତରେ ସୀମିତ ନ ରଖି ବର୍ଷ ଯାକର ପର୍ବ ବୋଲି କହିହେବ । ଏହା ଏକ ଶୁଭ ସୂଚନା । ବହିମେଳା ପାଠକ, ଲେଖକ, ପ୍ରକାଶକ ଓ ସାଧାରଣ ଜନତାଙ୍କର (ପୁସ୍ତକପ୍ରେମୀ) ଗୋଟାଏ ପବିତ୍ର ମିଳନ କ୍ଷେତ୍ର । ବହି ଓ ବହିମେଳାରୁ ଯେଉଁ ସଦ୍‌ଭାବ, ସମ୍ପ୍ରୀତି ଓ ସହାବସ୍ଥାନର ସମ୍ଭାବନା ସୃଷ୍ଟି ହୁଏ ତା'ର ପଟାନ୍ତର ନାହିଁ । ଏଇଠୁ ଆମେ କ'ଣ ଗୋଟିଏ ନୂଆ ସମାଜ ଗଠନର ନକ୍ସାଟିଏ ଆଙ୍କିପାରିବା ନାହିଁ ? ମୋର ଏଥିରେ ବିଶ୍ୱାସ ଅଛି । ତେବେ ଆମକୁ ସେଥିରେ ଆଉ ପ୍ରକାରେ ରଙ୍ଗ ଦେବାକୁ ହେବ । ସେଥିରେ ଆଉ ଟିକିଏ ଆନ୍ତରିକତା ଭରିବାକୁ ପଡ଼ିବ । ଆନ୍ତରିକତା ମଣିଷକୁ ଆପଣାର କରିଦିଏ । ପାଖକୁ ଟାଣି ଆଣେ ।

ବହିର ସେ କ୍ଷମତା ଅଛି । ଦୁଇଟି ଆତ୍ମାକୁ ଯୋଡ଼ିବାର, ପାଠକକୁ ଲେଖକ ପାଖକୁ ନେବାର ଏବଂ ଲେଖକକୁ ପାଠକ ସହିତ ବାନ୍ଧିବାର ଗୋଟାଏ ଅପୂର୍ବ ଶକ୍ତି ରହିଛି । ସେ ସମ୍ପର୍କ ଥରେ ସ୍ଥାପିତ ହୋଇଗଲେ ତାହା ଅମୃତରେ ପରିଣତ ହୋଇଯାଏ । ଅମୃତ ଆଉ ଆକାଶରୁ ଝରେ ନାହିଁ । ମଣିଷ ହିଁ ତିଆରି କରେ । ତାର କଥାରୁ, ଲେଖାରୁ, ତା'ର ଚିନ୍ତନରୁ, ଭାବରୁ ଅମୃତ ତିଆରି ହୁଏ । ସାରା ଜଗତକୁ ବିଞ୍ଚିଦିଏ । ସମସ୍ତଙ୍କ ଭିତରେ ବାଣ୍ଟି ଦିଏ । ତେଣୁ ବହିକୁ ଅମୃତ କହିହେବ । ସାହିତ୍ୟର ଅନ୍ୟ ନାମ ଅମୃତ । ଯୁଗେ ଯୁଗେ ତାହା ହିଁ ପ୍ରତିପାଦିତ ହୋଇଆସିଛି । ସବୁଠି ଓ ସବୁ ସମାଜରେ ଏଇ କାମଟିକୁ ସୁଚାରୁରୂପେ ସମ୍ପାଦନ କରୁ ଥିବାରୁ ବହିର ପ୍ରକାଶକ ସମାଜର ସବୁଠୁ ଗୁରୁତ୍ୱପୂର୍ଣ୍ଣ ଓ ମହତ୍ତ୍ୱପୂର୍ଣ୍ଣ କାମଟି କରିଥାଏ । ପାଠକ ଓ ଲେଖକ ଭିତରେ ଯେଉଁ ଯୋଗସୂତ୍ରଟି ସେ ରକ୍ଷା କରିଥାଏ, ଯାହା ତାକୁ ଅମୃତ ବାଣ୍ଟିବାରେ ସାହାଯ୍ୟ କରିଥାଏ, ତା'ଠାରୁ ଆଉ ପବିତ୍ର କାମ ଆଉ କିଛି ନ ଥାଏ ।

ବେଳେବେଳେ ସାହିତ୍ୟ ଭିତରକୁ ଅସାହିତ୍ୟ ବି ପଶିଆସେ । ଅସାହିତ୍ୟଟି ସବୁବେଳେ ମଣିଷ ଦ୍ୱାରା ଆଡ଼େଇ ହୋଇ ଯାଉଥିବାରୁ କି କ'ଣ କେଜାଣି ସେ ସବୁବେଳେ ନିଜକୁ ଅବହେଳିତ ମନେ କରୁଥାଏ । ବଡ଼ ହତଭାଗ୍ୟ ବୋଲି ବିଚାରୁଥାଏ । ତେଣୁ ସମୟ ଓ ସୁଯୋଗ ପାଇଲେ ସେ ମଧ ସମାଜରେ ସାହିତ୍ୟର ମାନ୍ୟତା ଦାବି କରେ । ସାହିତ୍ୟ ପରି ଚକାମାଡ଼ି ବସିଯାଏ । କହେ, ମୋତେ ଦେଖ, ମୋ' ରୂପକୁ ଦେଖ । ମୁଁ ସାହିତ୍ୟ ଠାରୁ କୋଉ ଗୁଣରେ କମ୍ ? ବେଳେବେଳେ ଅସାହିତ୍ୟ ମଧ ତାର ବ୍ୟବସାୟ ବଢ଼େଇ ଦିଏ । ପାଠକ ଅସାହିତ୍ୟର ଏ ଛଳନା ଓ ଚାତୁରି ବୁଝିପାରେନା । ସେ ଅସାହିତ୍ୟକୁ କୋଳେଇ ନିଏ । ଫଳରେ ସେ ସେଇଠି ଭୁଲ୍‌କରି ବସେ । ଅମୃତ ପିଇବା ବଦଳରେ ସେ ବିଷକୁ ପିଇଯାଏ । କିନ୍ତୁ ସବୁପ୍ରକାର ଅପଚେଷ୍ଟା ସତ୍ତ୍ୱେ ସାହିତ୍ୟ ହିଁ ସମାଜରେ ତିଷ୍ଠି ରହେ । ଅସାହିତ୍ୟ ନୁହେଁ । ତେଣୁ ପ୍ରକାଶକର ଏଇ ଗୁରୁଦାୟିତ୍ୱଟି ଭିତରେ ସେ ଯେତେବେଳେ ଅସାହିତ୍ୟର ଛଳନାଟିକୁ ବୁଝି ନ ପାରେ ସେତେବେଳେ ବ୍ୟବସାୟିକ ଦୃଷ୍ଟିରୁ ହୁଏତ ତା'ର କିଛି ଲାଭ ହୋଇପାରେ କିନ୍ତୁ ସମାଜର ଅନେକ କ୍ଷତି ହୁଏ । ଅମୃତ ବିତରିତ ହେବା ପରିବର୍ତ୍ତେ ବିଷ ହିଁ ବଣ୍ଟା ହୋଇଯାଏ । ବହିମେଳା ପାଇଁ ଏହା ଏକ ସମସ୍ୟା । ବହିମେଳାର ସୁଯୋଗ ନେଇ ଅସାହିତ୍ୟମାନେ ତାଙ୍କ ପସରା ମେଲି ଦିଅନ୍ତି ଏବଂ ତା'ପରେ ସମସ୍ତଙ୍କ ଅଜାଣତରେ ସେମାନେ ପାଠକଙ୍କ ଘରକୁ ଚାଲି ଯାଆନ୍ତି । ବହିମେଳାରେ ତେଣୁ ସମସ୍ତେ ସତର୍କ ରହିବା ଉଚିତ ।

ଅସାହିତ୍ୟକୁ ହଠାତ୍ ଚିହ୍ନି ହୁଏ ନାହିଁ । କାରଣ ସାହିତ୍ୟ ଓ ଅସାହିତ୍ୟ ଦୁହେଁ ଏମିତି ବେଶ ପକେଇ ଥାଆନ୍ତି ସେଥିରୁ ସେମାନଙ୍କୁ ଅଲଗା କରିହୁଏ ନାହିଁ । ବେଳେବେଳେ ସେମାନେ ଯାଆଁଳା ପରି ଦେଖା ଯାଆନ୍ତି । ତେଣୁ ବହି କିଣିଲା ବେଳେ ଟିକିଏ ସତର୍କତା ଅବଲମ୍ବନ କରିବାକୁ ପଡ଼େ । ସାଧାରଣତଃ ଯାହା ଅବୈଜ୍ଞାନିକ, ଯାହା ସମାଜବିରୋଧୀ, ଯାହା ମଣିଷ ମନକୁ କଳୁଷିତ କରେ, ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ପ୍ରଶୟ ଦିଏ, ଯାହା ହିଂସା ଓ ଉତ୍ତେଜନା ସୃଷ୍ଟି କରେ ତାକୁଇ ଅସାହିତ୍ୟ ବୋଲି କହିହେବ । ଯାହା ବାସ୍ତବତାକୁ ବିରୋଧ କରେ, ମଣିଷ ମନ ଭିତରେ ଘାଣ୍ଟୁତ୍ୱ ଓ ସ୍ତାବକତା ଭରିଦିଏ ତାକୁ ଅସାହିତ୍ୟ କହିହେବ । ତାର ଆଉ ଭିନ୍ନ ସଂଜ୍ଞା କିଛି ନାହିଁ । ତା' ପାଇଁ ଏମିତି କିଛି ନାମକରଣ କରାଯାଇ ନାହିଁ ଯାହାକୁ ଦେଖି ହଠାତ୍ ଚିହ୍ନି ହୋଇଯିବ । ତେଣୁ ଉଭୟ ପ୍ରକାଶକ ଓ ପାଠକ ଟିକିଏ ସତର୍କ ରହିବା ଉଚିତ । ସବୁଠୁ ବେଶୀ ସତର୍କ ହେବା କଥା ଲେଖକ । କିନ୍ତୁ ସେମାନେ ଯେତେବେଳେ ବ୍ୟବସାୟିକ ଜାଲ ଭିତରେ ଛନ୍ଦି ହୋଇପଡ଼ନ୍ତି ସେତେବେଳେ ଅଡୁଆ ହୁଏ । ଥଳିଆ ସର୍ଜନା କରି

ଯାଆନ୍ତି । ଶସ୍ତା ଲୋକପ୍ରିୟତା ମିଳେ । ଏସବୁ ପୁଞ୍ଜିବାଦୀ ବ୍ୟବସ୍ଥାର ମଞ୍ଜି । ଆମ ଦେଶରେ ସେଇଟା ଏବେ ବଡ଼ ହୋଇଯାଇଛି । ଆମେ କେତେଜଣ ମିଶି ତାକୁ ବଡ଼ କରିଦେଲୁଁ । ଯେମିତି ଚନ୍ଦ୍ରର ଗୋଟାଏ ବୈଜ୍ଞାନିକ ଦିଗ ଅଛି । ଚନ୍ଦ୍ରର ନିଜର ଆଲୋକ ନାହିଁ ବୋଲି ବୈଜ୍ଞାନିକମାନେ କହନ୍ତି । କିନ୍ତୁ ଆମ କବିମାନେ ଠିକ୍ ତା'ର ଓଲଟା କଥାଟା କହନ୍ତି । ସେମାନେ କହନ୍ତି ସେ ଆଲୁଅଟା ତା ନିଜର । ସେମାନେ ଯଦି ପ୍ରକୃତ କଥାଟା ଜାଣୁଥାନ୍ତେ ତେବେ ଜହ୍ନ ଆଲୁଅରେ ରାତିଯାକ ଅନିଦ୍ରା ରହି ଗାଧୁଥନ୍ତେ ନାହିଁ ।

ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ ପ୍ରକାଶକର ଯେମିତି ଦାୟିତ୍ୱ ଅଛି ସରକାର ଓ ସମ୍ବାଦପତ୍ରର ମଧ୍ୟ ସେମିତି ଗୋଟାଏ ବଡ଼ ଭୂମିକା ରହିଛି । ତା'ର କାରଣ ସୁସାହିତ୍ୟ ମାଧ୍ୟମରେ ସରକାର ଓ ସମ୍ବାଦପତ୍ର ଗୋଟାଏ ସୁସ୍ଥ ସମାଜ ଗଠନ ପାଇଁ ପ୍ରତିଶ୍ରୁତିବଦ୍ଧ । ସେଇଥି ପାଇଁ ସରକାର ଗ୍ରନ୍ଥାଗାର ଗଢ଼େ, ବହି କିଣେ, ବହି ପାଇଁ ବଜାର ତିଆରି କରେ । କିନ୍ତୁ ଏବେ ସରକାର ଏ କାମ ଠିକ୍‌ଭାବେ ତୁଲାଇ ପାରୁନାହାନ୍ତି ବୋଲି ଅଭିଯୋଗ ହେଉଛି । ସରକାର ଲାଇବ୍ରେରୀ ଆନ୍ଦୋଳନଟିଏ କରିବା ପାଇଁ, ଲୋକଙ୍କ ଭିତରେ ପଠନାଭ୍ୟାସ ବଢ଼େଇବା ପାଇଁ ଗ୍ରନ୍ଥାଗାର ଆଇନଟିଏ କଲେ । କୋଟି କୋଟି ଟଙ୍କା ଖର୍ଚ୍ଚ କରିବେ ବୋଲି କହିଲେ । ଏଥିରେ ଲେଖକ, ପାଠକ ଓ ପ୍ରକାଶକମାନେ ଭାରି ଖୁସି ହେଲେ । କିନ୍ତୁ କାହିଁ, କିଛି ହେଲା ନାହିଁ । ବରଂ କେତେକ କ୍ଷେତ୍ରରେ ଓଲଟା କାମ କଲେ । ପୁସ୍ତକ ପ୍ରକାଶନ ପାଇଁ ଅଧିକ ସୁଯୋଗ ସୃଷ୍ଟି କରିବା ପରିବର୍ତ୍ତେ ତା'ର ଏକମାତ୍ର ସମବାୟ ସଂସ୍ଥାଟିକୁ ମାରିଦେବାକୁ ବସିଲେଣି । ସମବାୟ ସଂସ୍ଥାର ସଂସ୍କାର ନାଁରେ ଲେଖକମାନଙ୍କର ଏକମାତ୍ର ସଂସ୍ଥାର ତଣ୍ଟି ଚିପି ଦେଲେଣି । ଆମେ ଦାବି କରିଥିଲୁଁ ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଗୋଟିଏ ଲେଖକ ସମବାୟ ସଂସ୍ଥା ହେଉ । ସେମାନେ ବହି ଛାପନ୍ତୁ ଏବଂ ଲେଖକଙ୍କୁ ରୟାଲ୍‌ଟି ମଧ୍ୟ ଦିଅନ୍ତୁ । ଏ ବିରାଟ ସମସ୍ୟାର ସମାଧାନ ପାଇଁ ତାହା ହିଁ ଏକମାତ୍ର ରାସ୍ତା । ଏଥିରେ ମୁଦ୍ରଣ କାମ ପାଇଁ ପ୍ରକାଶକମାନେ ସମବାୟ ସଂସ୍ଥା ଅଧୀନକୁ ଆସି ଯାଆନ୍ତେ କିନ୍ତୁ ପ୍ରକୃତ ଲାଭ ଲେଖକ ପାଆନ୍ତେ । ଏଥିରେ ସୁସାହିତ୍ୟ ହିଁ କେବଳ ବଜାରକୁ ଆସନ୍ତା ଏବଂ ଲେଖକମାନେ ସୁସାହିତ୍ୟ ଲେଖିବାକୁ ଉତ୍ସାହିତ ହୁଅନ୍ତେ । ସରକାର କେବଳ ଲେଖକ ସମବାୟ ସଂସ୍ଥା ଠାରୁ ବହି କିଣନ୍ତା । ସେ ବହି କେବଳ ବହି ମେଳାରୁ କିଣା ହୁଅନ୍ତା । ବହିମେଳାରେ ପ୍ରତିଯୋଗିତା ବଢନ୍ତା । ସମଗ୍ର ପୁସ୍ତକ ବ୍ୟବସାୟକୁ କେନ୍ଦ୍ରକରି ଲେଖକ, ପ୍ରକାଶକ, ବହି ବ୍ୟବସାୟୀ, ପାଠକ ଏବଂ ସରକାର ସମସ୍ତେ ଗୋଟିଏ ଗଛମୂଳରେ ବଢ଼ି ଉଠନ୍ତେ ।

ଏବେ ରାମମୋହନ ରାୟ ସଂସ୍ଥା ପାଇଁ ଯେଉଁ ବହି କିଣାଯାଉଛି, ତା' ବିରୋଧରେ ମଧ୍ୟ ଅଭିଯୋଗ ହେଉଛି । ବହୁ ଅବ୍ୟବସ୍ଥା ଓ ଅନାଚାର ଅଭିଯୋଗ ଶୁଣି ଶୁଣି କାନ

ବଧିରା ପଡ଼ିଗଲାଣି । ପ୍ରତିବର୍ଷ ବହି ନିର୍ବାଚନ ତ ସରୁନାହିଁ ଅଧିକନ୍ତୁ ଧାର୍ଯ୍ୟ ନୀତିନିୟମକୁ ମଧ୍ୟ ଧରି ରଖିହେଉ ନାହିଁ । ପ୍ରତିବର୍ଷ ଫର୍ମ ବଦଳି ଯାଉଛି । ସେଥିରେ ଲେଖକଙ୍କୁ ଆଉ ଗୁରୁତ୍ୱ ଦିଆଯାଉ ନାହିଁ । ଯେମିତି ପ୍ରକାଶକ ହିଁ ସବୁ । ଲେଖକ ବିଚାରା କେତେ କଷ୍ଟକରି ଲେଖୁଛି, ବାରଦ୍ୱାର ଶୁଣ୍ଢିପିଣ୍ଡା ହୋଇ ତାକୁ ଛପାଉଛି, ପୁଣି ସରକାରଙ୍କୁ ବହି ଦେବାପାଇଁ କଳାହାଣ୍ଡି, ଫୁଲବାଣୀ କିମ୍ବା ବରଗଡ଼ରୁ ଭୁବନେଶ୍ୱର ଆସି ହିନସ୍ତା ହୋଇ ରାଜ୍ୟ ଲାଇବ୍ରେରୀ ଠାରୁ ସଂସ୍କୃତି ନିର୍ଦ୍ଦେଶାଳୟ ଯାଏ ଦଉଡ଼ି ଦଉଡ଼ି ନୟାନ୍ତ ହେଉଛି । ଗୋଟାଏ ଘଣ୍ଟା କି ଗୋଟାଏ ଦିନରେ ସେ କାମ ସରୁନାହିଁ । ରେଳ ପ୍ଲାଟଫର୍ମରେ ସେ ରାତି ବିତାଉଛି ନଚେତ୍ ହୋଟେଲ୍‌ରେ ରହୁଛି । ପାରିବ ସେ କାମ ? ଏସବୁ କାମକୁ ସରଳ ଓ ସ୍ୱଚ୍ଛ କରିହେବ ନାହିଁ ? ଲେଖକ ବା ପ୍ରକାଶକ ସଂସ୍କୃତି ବିଭାଗକୁ ନ ଆସି ନିଜ ଜିଲ୍ଲା ସଂସ୍କୃତି ବିଭାଗରେ ଦେଲେ କ'ଣ ଅସୁବିଧା ହୁଅନ୍ତା ? ସେମାନେ ଭୁବନେଶ୍ୱର ପଠାଇବାର ବ୍ୟବସ୍ଥା କରନ୍ତୁ । ଜାତୀୟ ଗ୍ରନ୍ଥାଗାର ଯଦି ଭୁବନେଶ୍ୱରରୁ ତା' ବହି ପାଇପାରୁଛି ତେବେ ଅନ୍ୟମାନେ ସେଇ ନିୟମ ଅନୁସରଣ କଲେ କ୍ଷତି କ'ଣ ? ତା'ଛଡ଼ା ରାଜ୍ୟ ଗ୍ରନ୍ଥାଗାରକୁ ମାଗଣାରେ ବହି କାହିଁକି ଦିଆଯିବ ? ଏହା ଦ୍ୱାରା ବର୍ଷକୁ ସେହି ଗ୍ରନ୍ଥାଗାର ଯେତିକି ଅର୍ଥ ଖର୍ଚ୍ଚ କରୁଥିଲା, ତାହା ଆଉ ବ୍ୟୟିତ ହେଉନାହିଁ । ଅର୍ଥାତ୍ ଏଥିରେ ଲେଖକ ଓ ପ୍ରକାଶକ କ୍ଷତିଗ୍ରସ୍ତ ହେଉଛନ୍ତି । ଏହି ସମସ୍ତ ନିୟମକୁ ସରଳ ଓ ସ୍ୱଚ୍ଛ କରିଦେଲେ ଲେଖକ ଓ ପ୍ରକାଶକ ଅନାବଶ୍ୟକ ଯନ୍ତ୍ରଣାରୁ ମୁକ୍ତି ପାଆନ୍ତେ । ସ୍ୱଚ୍ଛତା ପାଇଁ ଏସବୁ କାମ ଇଣ୍ଟରନେଟ୍ ମାଧ୍ୟମରେ ମଧ୍ୟ ହୋଇପାରନ୍ତା । ନିର୍ବାଚିତ ବହିର ତାଲିକା ସେଥିରେ ଦେଇହେବ । ସମସ୍ତେ ନିଜ ଘରେ ବସି ସବୁକଥା ଜାଣିପାରନ୍ତେ । ସାହିତ୍ୟ ଏକାଡ଼େମୀ ଏସବୁ କାମ କରିପାରନ୍ତା ।

ଏବେ ଆସିବା ଗଣମାଧ୍ୟମ ପାଖକୁ । ଆଗରୁ କହିଛି ବହିର ପ୍ରସାର ପାଇଁ ଗଣମାଧ୍ୟମର ଗୋଟେ ବଡ଼ ଭୂମିକା ଅଛି । ପ୍ରଥମରେ ସେମାନେ ଅନ୍ତତଃ ବହିମେଳା ସମୟରେ ରିହାତି ହାରରେ ବିଜ୍ଞାପନ ଦେଇପାରିବେ । ସେମାନେ ଯଦି 'ଭାଲେଣ୍ଟାଇନ୍ ଡେ' ପାଇଁ ବିଜ୍ଞାପନରେ ରିହାତି ଦେଉଛନ୍ତି ତେବେ ବହିର ବିଜ୍ଞାପନ ପାଇଁ ରିହାତି ଦେଇ ଆମ ଭାଷା, ସାହିତ୍ୟ ଓ ସଂସ୍କୃତିର ଶ୍ରୀବୃଦ୍ଧି କରାଇ ପାରିବେ । 'ଭାଲେଣ୍ଟାଇନ ଡେ'ର ବିଜ୍ଞାପନରେ ଜଣେ ଜଣେ ଯାହା ଲେଖୁଛନ୍ତି ତାହା ଆମ ସଂସ୍କୃତିକୁ ହତ୍ୟାକଲା ଭଳିଆ ହେଲାଣି । ବରଂ ସେସବୁ ଏବେ ବନ୍ଦହେବା ଉଚିତ । ରିହାତିରେ ବହିର ବିଜ୍ଞାପନ ଆମର ସୁନ୍ଦର ରୁଚି ଓ ସୁସ୍ଥ ସମାଜ ଗଠନରେ ସହାୟକ ହେବ । ଗଣମାଧ୍ୟମମାନେ ଅନ୍ତତଃ ଏଇ ଦିଗରୁ କଥାଟାର ବିଚାର କରନ୍ତୁ । □

('ସମୟ'-୩୦.୧୧.୨୦୦୨)

# ଆମ ଉପାନ୍ତରେ ଭାଷା ଓ ସାହିତ୍ୟ

ଏବେ ଓଡ଼ିଶାରେ ପୁଣିଥରେ ଆଲୋଚନା ହେଲାଣି ଯେ, ଉପାନ୍ତ ଅଞ୍ଚଳରୁ ଆମ ଭାଷା ଓ ସାହିତ୍ୟ ମରିଆସୁଛି । ଦକ୍ଷିଣ ଓଡ଼ିଶାର ଜିଲ୍ଲାମାନଙ୍କରେ ତେଲଗୁର ପ୍ରଭାବ ବଢୁଥିବା ବେଳେ ଆମ ପଶ୍ଚିମାଞ୍ଚଳରେ ହିନ୍ଦୀର ପ୍ରଭାବ ଆଗ ପରି ଅବ୍ୟାହତ ରହିଛି । ଠିକ୍ ସେମିତି ଉତ୍ତର ବାଲେଶ୍ୱର ଓ ମୟୂରଭଂଜର କେତେକ ଅଂଶ ବଙ୍ଗଳାର ପ୍ରଭାବ ଯେମିତି ଥିଲା ଏବେ ତା'ର ପରିବର୍ତ୍ତନ ହୋଇନାହିଁ । ଆଉ ଏକ ଦିଗରେ ଦେଖିବାକୁ ଗଲେ କେନ୍ଦୁଝର ଜିଲ୍ଲାର ସବୁଠାରୁ ଶିକ୍ଷୋନ୍ନତ ଅଞ୍ଚଳ ଅଥଚ ସବୁଠାରୁ ଅବହେଳିତ ବିରାଟ ଅଂଶ ବରାବର ଟାଟାନଗର ଓ ଚକ୍ରଧରପୁର ଉପରେ ନିର୍ଭର କରି ରହୁଥିବାରୁ ସେମାନେ ମଧ୍ୟ ହିନ୍ଦୀ ଭାଷାଭାଷୀଙ୍କ ସହିତ ସମ୍ପର୍କ ରଖିବାକୁ ବାଧ୍ୟ ହେଉଛନ୍ତି । ସମ୍ପର୍କ ଯେତେ ଯୋଡ଼ି ହେବ ଓ ମଣିଷ ସହିତ ମଣିଷର ସମ୍ପର୍କ ସେତିକି ଯୋଡ଼ି ହୋଇଯିବ ସେ ସେତିକି ପ୍ରଭାବିତ ହେବ । ଏକାଧିକ ଭାଷା ଓ ସଂସ୍କୃତି ଯେତେବେଳେ ଅବସ୍ଥା ଚକ୍ରରେ ପଡ଼ି ମିଶି ଯାଆନ୍ତି ସେତେବେଳେ ବସ୍ତୁତଃ ଉଭୟର କ୍ଷୟ ଘଟିଥାଏ ଏବଂ ଗୋଟିଏ ନୂତନର ଜନ୍ମ ହୋଇଥାଏ । ଏହା ହିଁ ସାଧାରଣ ନିୟମ । ବିବର୍ତ୍ତନର ଧାରା । ଶେଷରେ ଏମିତି ଗୋଟାଏ ସମୟ ଆସି ପହଞ୍ଚେ ଯେତେବେଳେ ଏଇ ବଦଳି ଯାଉଥିବା ସୁଅରେ ଥିବା ମଣିଷମାନେ ନିଜର ସ୍ୱତନ୍ତ୍ର ଭୌଗୋଳିକ ସୀମା ରେଖାଟିଏ ଟାଣିବାକୁ ଇଚ୍ଛା କରନ୍ତି । ଆମେ ଯଦି ଭାରତବର୍ଷର ଭାଷାଭିତ୍ତିକ ପ୍ରଦେଶ ଗଠନର ଇତିହାସ ପର୍ଯ୍ୟାଲୋଚନା କରିବା ତେବେ ଏହା ହିଁ ଦେଖିପାରିବା । ତେଣୁ ଉପାନ୍ତ ଅଞ୍ଚଳରେ 'ଭାଷା ଧୀରେ ଧୀରେ ମୃତ୍ୟୁବରଣ କରୁଛି' ଏ କଥାରେ କିଛି ନୂତନତା ନାହିଁ ଓ ପରିବର୍ତ୍ତନର ଗତି ଏତେ ମନ୍ଥର ଯେ ତାକୁ ସାବଧାନତାର ସହିତ ଲକ୍ଷ୍ୟ ନକଲେ ବୁଝି ହୁଏନା ।

ଏସବୁର କାରଣକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଗୋଟିଏ ହେଉଛି ସାମାଜିକ ଓ ଅନ୍ୟଟି ହେଉଛି ଅର୍ଥନୈତିକ । କିନ୍ତୁ ଏ ଦୁଇଟି କାରଣ ଏତେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଯେ ସେମାନେ ବାହାରକୁ ଗୋଟିଏ ପରି ଦେଖାଯାଆନ୍ତି ।

ସାମାଜିକ କାରଣଟି ମଣିଷର ଦୈନନ୍ଦିନ ଆବଶ୍ୟକତା ଯୋଗୁଁ ଦୁଇପାଖର ମଣିଷ କୌଣସି ଭୌଗୋଳିକ ସୀମାରେଖାକୁ ସମ୍ମାନ ଦେବାକୁ ଚାହେଁନା । ଏପରିକି ଆନ୍ତର୍ଜାତିକ ସୀମା କ୍ଷେତ୍ରରେ ମଧ ସେଇ ଅବସ୍ଥା । ମୁଁ ଆସାମରେ ଥିଲାବେଳେ ବହୁ ଆନ୍ତର୍ଜାତିକ ସୀମାର ଲୋକ ଓ ତାଙ୍କ ଚଳଣୀକୁ ଦେଖିଛି । ଆସମା-ଭୂଟାନ, ଆସାମ-ବାଂଲାଦେଶ, ତ୍ରିପୁରା-ବାଂଲାଦେଶ ଏବଂ ନାଗାଲେଣ୍ଡ-ମିଆମାରର ଉପାନ୍ତ ବା ସୀମା ପାର୍ଶ୍ଵର ଲୋକମାନଙ୍କୁ ଦେଖିଛି । ସେମାନେ ମୁଖ୍ୟତଃ ଭାଷା ଓ ସଂସ୍କୃତି କ୍ଷେତ୍ରରେ ପରସ୍ପରଠାରୁ ଅଲଗା ନୁହଁନ୍ତି । ତେଣୁ ସେମାନଙ୍କ ବୈବାହିକ ସମ୍ପର୍କ ବରାବର ଲାଗି ରହିଥାଏ । ଭାରତୀୟ ସମାଜ ବ୍ୟବସ୍ଥାରେ ବୈବାହିକ ସମ୍ପର୍କଟା ଏତେ ଶକ୍ତ ଯେ ତା' ଆଗରେ ଭୌଗଳିକ ସୀମା କିମ୍ବା ରାଜକୀୟ ଆଇନ ଅତ୍ୟନ୍ତ ଦୁର୍ବଳ । ଥରେ ସେ ବନ୍ଧ ବନ୍ଧା ହୋଇଗଲେ ମଣିଷ ଆଉ କିଛି ମାନେନା । ତେଣୁ ସୀମା ପାଖରେ ଥିବା ମଣିଷମାନେ ସୀମାର ଅନେକ ଭିତରେ ଥିବା ମଣିଷ ଅପେକ୍ଷା ସୀମା ଆର ପାଖରେ ଗାଁକୁ ଲାଗିଥିବା ପରିବାର ସହିତ ସମ୍ପର୍କ ଯୋଡ଼ିଥାଏ । ସେମାନେ ଦୂରକୁ ଯିବାକୁ ମୋଟେ ପସନ୍ଦ କରନ୍ତିନି । ସୀମା ଦୁଇ ପାର୍ଶ୍ଵରେ ମଣିଷମାନେ ଏତେ ପରସ୍ପର ସହିତ ଆତ୍ମିକ ଭାବରେ ଯୋଡ଼ି ହୋଇ ଯାଇ ଥାଆନ୍ତି ଯେ ସେମାନେ ବରାବର ଅଭିନ୍ନ । ସେତେବେଳେ ଭାଷା ଏଇ ମଣିଷ ମାନଙ୍କର ଦାୟ ହୋଇଯାଏ । ସେଠି ଅନ୍ୟ କୌଣସି ଭାଷାକୁ ସେମାନଙ୍କ ଉପରେ ଚାପି ଦେଇ ହୁଏ ନାହିଁ ।

ଦ୍ୱିତୀୟ ପ୍ରଶ୍ନଟି ହେଲା ଅର୍ଥନୈତିକ । ଗାଁରେ ହାଟଗୁଡ଼ିକ ହେଲା ଅର୍ଥନୈତିକ ନେଣଦେଣର ମୁଖ୍ୟକେନ୍ଦ୍ର । ସୀମା ଏପାଖର ଲୋକ ସେପାଖର ହାଟକୁ ନଗଲେ ତା'ର ଜୀବନ ଅଚଳ ହୋଇଯିବ । ଗୋଟିଏ କଥାରେ ଚୁଲୀ ଜଳିବନି । ତ୍ରିପୁରା ଓ ବାଲାଂଦେଶ ସୀମାରେ ଥିବା ଏ ହାଟ ମୁଁ ଦେଖିଛି । ସେଠି ଦୁଇପ୍ରକାର ମୁଦ୍ରା ଚଳେ । ସେ କାରବାର ସେମାନେ ଜାଣନ୍ତି । ସେ ମୁଦ୍ରାର ବିନିମୟ ହାଟ ବାହାରେ ହୁଏନି । ଏଠି ସୀମାରେଖାକୁ ପୁଲିସ ଓ ଆର୍ମିର ଶହଶହ ଲୋକ ଜଗିଛନ୍ତି । ମଝିରେ ନାଁକୁ ମାତ୍ର ତାରବାଡ଼ । ସେ ମଧ ଛିଣ୍ଡି ପଡ଼ିଛି । ଲୋକମାନେ ବରାବର ଯିବାଆସିବା କରନ୍ତି । କେହି ତାଙ୍କୁ ବାଧା ଦିଏନି । ଏପରିକି ସୀମା ସେ ପାଖରୁ ମୁସଲମାନ ରମଣୀମାନେ ଆସି ହିନ୍ଦୁ ମନ୍ଦିର ସାମ୍ନାରେ ଥିବା ପୋଖରୀରେ ଗାଧୁଆନ୍ତି ଏବଂ ବାହାରୁ ଠାକୁରଙ୍କୁ ମୁଣ୍ଡିଆ ମାରି ନିଜ ଦେଶକୁ ଫେରିଯାଆନ୍ତି । ଏସବୁ ଗୋଟାଏ ବଳିଷ୍ଠ ସାଂସ୍କୃତିକ ପରମ୍ପରା । ସେଥିରୁ ସେମାନଙ୍କୁ ଅଲଗା କରିହେବ ନାହିଁ ।

କିନ୍ତୁ ଓଡ଼ିଶାର ଉପାନ୍ତ ଅଞ୍ଚଳର ଚିତ୍ର ଭିନ୍ନ । ଉପାନ୍ତ ଅଞ୍ଚଳରୁ ଲୋକମାନେ ରାଜ୍ୟ ଭିତରକୁ ଆସିବାକୁ ରାସ୍ତା ନାହିଁ । ଉପାନ୍ତ ଅଞ୍ଚଳରେ ଆମର ଯାତାୟତ ପାଇଁ ରାସ୍ତା ମୋଟେ ନାହିଁ କହିଲେ ଚଳେ । ଦକ୍ଷିଣ ଓଡ଼ିଶାର ସୀମା ଡେ଼ଇଁଲେ ବିଜୟ ନଗରମ କିମ୍ବା ବିଶାଖାପାଟଣାକୁ ଯିବାକୁ ଯେମିତି ଭଲ ରାସ୍ତା ଅଛି ସେମିତି ସବୁବେଳେ ବସ୍ ମଧ ମିଳୁଛି । କିନ୍ତୁ ବ୍ରହ୍ମପୁର କିମ୍ବା ଭୁବନେଶ୍ୱର ଆସିବାକୁ ସେ ସୁବିଧା ଅଛି କି ? ଉତ୍ତର ବାଲେଶ୍ୱର ଲୋକମାନେ ମେଦିନିପୁର କିମ୍ବା ଖଡଗପୁର ଆଡ଼କୁ ଯିବାକୁ ଯେମିତି ଭଲ ସୁବିଧା ଅଛି ବାଲେଶ୍ୱର ଆସିବାକୁ ସେ ସୁବିଧା ନାହିଁ । ଯୋଡ଼ା ଓ ବଡ଼ବିଲ ଅଞ୍ଚଳର ଲୋକମାନେ ଭୁଲରେ ମଧ କେନ୍ଦୁଝର କିମ୍ବା ଶିଳ୍ପନଗରୀ ରାଉରକେଲା ଆସନ୍ତି ନାହିଁ । ଜାମସେଦପୁର ଆଡ଼କୁ ସେମାନେ ଅତି ଆରାମରେ ଯାଇପାରିବେ । ଆମର କହିବାର କଥା ଉପାନ୍ତ ଅଞ୍ଚଳକୁ ଆମ ସରକାର କେବେବି ଆଡ ନୟନରେ ଦେଖନ୍ତି ନାହିଁ । ତେଣୁ ସେ ଅଞ୍ଚଳର ରାସ୍ତା ସବୁଠାରୁ ଦୟନୀୟ ଅବସ୍ଥାରେ ଅଛି । ଅବସ୍ଥା ଏତେ ଖରାପ ଯେ ବହୁ ବସ୍ ସେମାନଙ୍କ ରୁଟ୍ ପରମିଟ ବଦଳ କରି ଆଣିଲେଣି । ନଚେତ ବସ୍ ଚଳାଉ ନାହାନ୍ତି । ଲୋକେ ଯୋଉ ସର୍ବନିମ୍ନ ସୁବିଧା ଟିକକ ପାଇବାକୁ ଆଶା ରଖୁଥିଲେ ସେତକ ମଧ ମିଳୁନାହିଁ । ଫଳରେ ସେମାନେ ମୁଖ୍ୟସ୍ରୋତ ଠାରୁ ବିଚ୍ଛିନ୍ନ ହୋଇ ଯାଉଛନ୍ତି ବାଧ ହୋଇ । କେବଳ ରାସ୍ତା ହିଁ ଦୂର ଲୋକଙ୍କୁ ଗୋଟିଏ ସୂତ୍ରରେ ବାନ୍ଧି ରଖେ । ଆମ ନେତାମାନେ ସେତକ ବୁଝନ୍ତି ନାହିଁ, ବୁଝିଲେ ମଧ ଚୁପ୍ ରହନ୍ତି । ଭାବନ୍ତି, ଭୋଟ ବେଳ ଆସୁ ଦେଖାଯିବ ।

ଶେଷରେ ଆଉ ଗୋଟାଏ କଥା କହିଲେ ଏ ପ୍ରସଙ୍ଗ ଶେଷ ହେବ । ଉପାନ୍ତ ଅଞ୍ଚଳର ଭାଷା ସାହିତ୍ୟକୁ ଉଜ୍ଜୀବିତ କରି ରଖିବାକୁ ସାହିତ୍ୟ ଏକାଡେମୀ ତଥା ସଂସ୍କୃତି ବିଭାଗର ସୃଷ୍ଟି । ସାହିତ୍ୟ ଏକାଡେମୀ ଅବଶ୍ୟ ବରପାଲିରେ ମେହେର ଜୟନ୍ତୀ ଓ ବାଲେଶ୍ୱରରେ ଫକୀର ମୋହନ ଜୟନ୍ତୀ ବେଶ ଧୁମଧାମରେ କରୁଛି । ଏବେ କୋରାପୁଟରେ ଲକ୍ଷ୍ମଣ ନାଏକ ଜୟନ୍ତୀ ମଧ ହେଉଛି । ସୁଖର କଥା । କିନ୍ତୁ ସେ ଧୁମ୍‌ଧାମ୍‌ରେ ବେଶୀ ପଇସା ଖର୍ଚ୍ଚ ହେଉଛି ମନ୍ତ୍ରୀଙ୍କ ଗସ୍ତରେ କିମ୍ବା ଅନ୍ୟ ରାଜକୀୟ ପାରମ୍ପରିକତାରେ । ଏଥିରେ ଭାଷା ସାହିତ୍ୟର ବେଶୀ କିଛି ଉନ୍ନତି ହେଉନାହିଁ । ସେ ଅଞ୍ଚଳକୁ ଏହି କାର୍ଯ୍ୟକ୍ରମଗୁଡ଼ିକ ପ୍ରଭାବିତ କରିପାରୁ ନାହିଁ । ଭାଷା କିପରି ପ୍ରସାରିତ ହେବ ସେ ବିଷୟରେ ଆଗ୍ରହ ସୃଷ୍ଟି କରିବାକୁ ଚେଷ୍ଟା ହେବା ଉଚିତ୍ । ଏ ଚେଷ୍ଟା ପାଇଁ ଗୋଟିଏ ଉପାୟ ହେଲା ଉପାନ୍ତ ଅଞ୍ଚଳରେ ଥିବା ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନମାନଙ୍କୁ

ସକ୍ରିୟ ଭାବେ କାମରେ ନିୟୋଜିତ କରିବା । ସେ ଅଞ୍ଚଳରୁ ପ୍ରକାଶ ପାଉଥିବା ପତ୍ରପତ୍ରିକାକୁ ସାହାଯ୍ୟ କରିବା । ସେ ଅଞ୍ଚଳରେ ଥିବା ବିଦ୍ୟାଳୟ ଓ ଅନ୍ୟାନ୍ୟ ଅନୁଷ୍ଠାନକୁ ସ୍ୱତନ୍ତ୍ର ସାହାଯ୍ୟ ଯୋଗାଇଦେବା । ମୁଁ ଯେତେଦୂର ଜାଣେ ଉତ୍ତର ବାଲେଶ୍ୱର ଅଞ୍ଚଳର ବହୁ ଛାତ୍ରଛାତ୍ରୀ ଯାଇ କଣ୍ଟେଇ (କାନ୍ଥି) ବା ଏଗ୍ରା ଅଞ୍ଚଳର ସ୍କୁଲ କଲେଜରେ ପଢ଼ିବା ଆରମ୍ଭ କଲେଣି । କିନ୍ତୁ ସେମାନେ ଜଳେଶ୍ୱର, ଅମର୍ଦ୍ଦା କିମ୍ବା ବସ୍ତା କଲେଜକୁ ଆସିପାରୁ ନାହାନ୍ତି । ଏହାଠାରୁ ଦୁଃଖଦାୟକ ଘଟଣା ଆଉ କଅଣ ଥାଇପାରେ ? ଏଇ ଅବସ୍ଥା ଆମ ଓଡ଼ିଶାର ଅନ୍ୟାନ୍ୟ ଉପାନ୍ତ ଅଞ୍ଚଳରେ ମଧ୍ୟ ସୃଷ୍ଟି ହେଇଥିବ । ମାନ୍ଦ୍ରାଜ (ଚେନ୍ନେଇ), ଦିଲ୍ଲୀ, ବିଶାଖାପାଟଣା ବା କଲିକତାରେ ଯାଇ ସାହିତ୍ୟ ସଭା କରିବା ଅପେକ୍ଷା ଓଡ଼ିଶା ଭିତରେ ବିଶେଷକରି ଉପାନ୍ତ ଅଞ୍ଚଳକୁ ବିଶେଷ ଦୃଷ୍ଟି ଦେଲେ ଅବା ଅବସ୍ଥାର ଉନ୍ନତି ହୋଇପାରିବ । ଏ କ୍ଷେତ୍ରରେ ପାଠାଗାର ଆନ୍ଦୋଳନର ଗୋଟାଏ ବିଶେଷ ଭୂମିକା ରହିଛି । ସେ ଆନ୍ଦୋଳନ ବୋଧେ ଫାଇଲ୍‌ରେ ରହିଗଲା । ଏବେ ତ କୁହାଗଲାଣି କର୍‌ପୋରେଟ ସେକ୍ଟରକୁ ଏଥିରେ ସାମିଲ କରାଯିବ । ତା'ର ଫଳ କଅଣ ହେବ ସେକଥା ଆମେ ଜାଣୁଁ । ସେଥିରେ ଭାଷା ସାହିତ୍ୟ ଛଡ଼ା ଆଉ ସବୁର ଉନ୍ନତି ହେବ ।

ଏ ଦିଗରେ ସମ୍ବାଦପତ୍ରର ଗୋଟାଏ ବଡ଼ ଭୂମିକା ରହିଛି । ସାହିତ୍ୟିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମକୁ ସେମାନେ ଓଡ଼ିଶାର ସବୁ ଅଞ୍ଚଳରେ ସମାନ ଭାବରେ ପହଞ୍ଚାଇବା ଦରକାର । ଏବେ ତ ଏପରି ଅବସ୍ଥା ସୃଷ୍ଟି ହୋଇଛି ଯେ, ରାଉରକେଲାର ଗୋଟିଏ ସାହିତ୍ୟିକ କାର୍ଯ୍ୟକ୍ରମ କଥା କଟକ ଭୁବନେଶ୍ୱରରେ ମଧ୍ୟ ପହଞ୍ଚୁ ନାହିଁ । କଟକ ଭୁବନେଶ୍ୱର କଥା ଅବଶ୍ୟ ସମସ୍ତେ ଜାଣୁଛନ୍ତି । କଟକରେ ଟ୍ରାଫିକ ଜାମ୍ ହେଲେ ସାରା ଓଡ଼ିଶା ଜାଣୁଛି, କିନ୍ତୁ ଜୟପୁର, ସମ୍ବଲପୁରର ବିଶେଷ ସାହିତ୍ୟିକ କାର୍ଯ୍ୟକ୍ରମ ପ୍ରକାଶନ ପାଇଁ କୋଉ ନୀତିକୁ ଅନୁସରଣ କରେ ଆମେ ଜାଣୁନାଁ । କିନ୍ତୁ ସାମୁହିକ ଭାବେ ସମସ୍ତଙ୍କୁ ନେଇ କାର୍ଯ୍ୟକ୍ରମ ପରିବେଷିତ ନହେଲେ ତାହା ସମୂହ ସମାଜର କାମରେ ଆସିପାରିବ ନାହିଁ । ଭାଷା ଓ ସାହିତ୍ୟ ତା'ର ଶିକାର ହେବାର ସମ୍ଭାବନା ରହିଛି ।

❑

('ଅନୁପମ ଭାରତ'-୧.୫.୨୦୦୪)

# ସାହିତ୍ୟର ସଂକଟ

ଓଡ଼ିଆ ସାହିତ୍ୟ ଏବେ ଗୋଟାଏ ସଂକଟଜନକ ଅବସ୍ଥାରେ ପହଞ୍ଚିଛି ବୋଲି ଏଥର ବିଷୁବ ମିଳନ ଅବସରରେ ସାହିତି୍ୟକ, କବି ଓ ଲେଖକମାନେ ମତବ୍ୟକ୍ତ କରିଛନ୍ତି । ସେମାନେ ଯେ ଏ କଥାଟା ଏଇ ପ୍ରଥମଥର କହୁଛନ୍ତି ତା' ନୁହେଁ । ଆଗରୁ ମଧ୍ୟ କେତେଥର ଏ କଥା କହିଛନ୍ତି । କବି ଓ ଲେଖକମାନେ ବରାବର ଭାଷା ଓ ସାହିତ୍ୟର ଉନ୍ନତିର କଥା ହିଁ କହି ଥାଆନ୍ତି । ତେଣୁ ଗୋଟାଏ ଦେଶ ବା ଜାତି ଗଠନରେ ସେମାନଙ୍କ ଦାନ ଅତୁଳନୀୟ । ପ୍ରତ୍ୟେକ ଭାଷା ଓ ସାହିତ୍ୟକୁ ସେଇମାନେ ହିଁ ପୁଷ୍ଟ କରିଥାଆନ୍ତି । ବିଂଶତାବ୍ଦୀରେ ଫକୀରମୋହନ, ରାଧାନାଥ ଓ ଗଙ୍ଗାଧର ପ୍ରଭୃତି ଯଦି ଅଣ୍ଡାଭିଡ଼ି ବାହାରି ନ ଥାଆନ୍ତେ ତେବେ ଏ ଜାତିର ମୃତ୍ୟୁ କୋଉ କାଳୁ ହେଇ ସାରନ୍ତାଣି । ସେତେବେଳେ ଯେମିତି ବଙ୍ଗଳା ଓ ଇଂରାଜୀର ପ୍ରଭାବ ହୁ ହୁ ବଢ଼ିବାକୁ ଆରମ୍ଭ କଲା ସେତେବେଳେ ଓଡ଼ିଆ ଭାଷା ପ୍ରତି ଏକ ନିଶ୍ଚିତ ବିପଦ ଦେଖାଦେଇଥିଲା । ହୁଏତ ସେଇଠି କୁହାଯାଇ ପାରିଥାଆନ୍ତା, "ଓଡ଼ିଆ ଗୋଟାଏ ସ୍ୱତନ୍ତ୍ର ଭାଷା ହେଇନଥିବାରୁ ଏବଂ ସେ ଭାଷାରେ ପଢ଼ିବା ପାଇଁ ବହିପତ୍ର ନଥିବାରୁ ବଙ୍ଗଳାକୁ ମାତୃଭାଷା ହିସାବରେ ଗ୍ରହଣ କରାଯାଉ ।" ସେତେବେଳେ ପ୍ରଶାସକମାନେ ଯଦି ଦୟାକରି ତା'ର ବିରୋଧ କରି ନ ଥାଆନ୍ତେ ଏବଂ ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ଓ ତା'ର ବଙ୍ଗଳା ସହିତ କିଛି ସମ୍ପର୍କ ନାହିଁ କୁହାଯାଇ ନ ଥାଆନ୍ତା, ତେବେ ଆମର ସ୍ଥାନ ଏବେ କୋଉଠି ହେଇ ଥାଆନ୍ତା ସେ କଥା ବୁଝିବାକୁ ଅସୁବିଧା ହୁଏ ନାହିଁ । ସେତେବେଳେ ଆମକୁ ଯେ ଖାଲି କବି ଓ ଲେଖକମାନେ ବଞ୍ଚେଇ ଦେଇଥିଲେ ତା' ନୁହେଁ, ସେତେବେଳର ପ୍ରଶାସକମାନେ ଇଂରେଜୀ ଭାଷା ଓ ସାହିତ୍ୟର ପ୍ରଚାର ଓ ପ୍ରସାର ଚାହୁଁଥିଲେ ମଧ୍ୟ ପ୍ରାନ୍ତୀୟ ଭାଷାକୁ ଉପରକୁ ଉଠେଇବାକୁ ବେଶୀ ସାହାଯ୍ୟ କରୁଥିଲେ । ତେଣୁ ସେତେବେଳେ ଅଧିକାଂଶ ପ୍ରାନ୍ତୀୟ ଓ ଆଦିବାସୀ ଭାଷା ଇଂରେଜମାନଙ୍କ ଯୋଗୁଁ ନୂତନ ଜୀବନ୍ୟାସ ପାଇଥିଲା । ସେମାନେ ବହୁ ଭାଷାର ଲିପି ଓ ବ୍ୟାକରଣ ତିଆରି କରିଛନ୍ତି । ବହୁ ଭାଷାର ଅଭିଧାନ ମଧ୍ୟ ସେମାନେ ଲେଖିଛନ୍ତି । ଗୋଟିଏ ଭାଷା ଓ ସାହିତ୍ୟକୁ ଉନ୍ନତ କରିବାରେ ଏସବୁ କମ ସାହାଯ୍ୟ କରେନାହିଁ । ଇଂରେଜମାନେ ଓଡ଼ିଆ ନଥିଲେ କି ଅନ୍ୟାନ୍ୟ ଭାରତୀୟ

ଭାଷା ମଧ୍ୟ ଜାଣି ନଥିଲେ । ସେମାନେ ମଧ୍ୟ ହିନ୍ଦୁ ନଥିଲେ କି ସଂସ୍କୃତ ଭାଷାକୁ ଶିଖି ଏଠାକୁ ଆସିନଥିଲେ । ଗୋଟିଏ ଭାଷା ପ୍ରତି ସେମାନଙ୍କ ଶ୍ରଦ୍ଧା ଏତେ ବେଶୀ ଥିଲା ଯେ, ସେମାନେ ଗୋଟାଏ ବୈଜ୍ଞାନିକ ପଦ୍ଧତିରେ ତା'ର ଲିପି ତିଆରି କରିସାରିଲା ପରେ ତା'ର ଅଭିଧାନ ମଧ୍ୟ ତିଆରି କଲେ । ତା'ପରେ ନିଜେ ସ୍କୁଲ ଖୋଲି ଲୋକଙ୍କୁ ଶିକ୍ଷା ଦେଲେ । ସେତେବେଳେ ଶିକ୍ଷା ନୀତିରେ ତେଣୁ ସେମାନେ ପ୍ରଥମେ ମାତୃଭାଷାକୁ ପ୍ରାଧାନ୍ୟ ଦେଇ ଇଂରାଜୀ ଭାଷାକୁ ଦ୍ୱିତୀୟ ସ୍ଥାନରେ ରଖୁଥିଲେ । ସେମାନେ ସେତେବେଳେ ଯଦି ଚାହିଁ ଥାଆନ୍ତେ ଯେ ମାତୃଭାଷାର ମୋଟେ ଆବଶ୍ୟକତା ନାହିଁ, କହିଥାନ୍ତେ - ''ସମସ୍ତେ କେବଳ ଇଂରାଜୀ ଶିଖ ଓ ପଢ଼'', ସେଇ ଅନୁସାରେ ମଧ୍ୟ ଆଇନ କରିଦେଇଥାଆନ୍ତେ ଏବଂ ସେଥିପାଇଁ ସବୁପ୍ରକାର ପ୍ରୋତ୍ସାହନ ଦେଇ ପ୍ରଶାସକୀୟ ଚାପ ମଧ୍ୟ ପ୍ରୟୋଗ କରିଥାଆନ୍ତେ ତେବେ ଆଜି ଭାରତବର୍ଷର ଅବସ୍ଥା କଅଣ ହୋଇ ଥାଆନ୍ତା କେଜାଣି ।

ଭାରତୀୟମାନେ ଯୁଗେ ଯୁଗେ ବିଦେଶୀ ପ୍ରିୟ । ବିଦେଶର ରାଜା ଓ ବିଦେଶର ଶାସନକୁ ସେମାନେ ଯୁଗେ ଯୁଗେ ଭଲପାଇ ଆସିଛନ୍ତି । ବିଦେଶୀ ଭାଷା ଓ ବସ୍ତୁ ସେମାନଙ୍କର ଅଧିକ ପ୍ରିୟ । ଗ୍ରୀକ୍ ବୀର ଆଲେକ୍ଜାଣ୍ଡାରଙ୍କ ସମୟରୁ ଆମର ଏ ଇତିହାସ ଅଛି । ଆମେ ବ୍ୟକ୍ତିଗତ ଭାବେ କେବେ ବିଦେଶୀଙ୍କୁ ବିରୋଧ କରିନୁଁ । ତେଣୁ ବାହାରୁ ଶତ୍ରୁମାନେ ବରାବର ଆସିଛନ୍ତି, ବିନା ବାଧାରେ ବା ସାମାନ୍ୟ ବାଧାରେ ଦେଶ ଭିତରେ ପଶିଚନ୍ତି, ଲୁଟପାଟ କରିଚନ୍ତି ଓ ଯାଇଛନ୍ତି । ଅନେକଙ୍କୁ ଆମେ ସ୍ୱାଗତ ମଧ୍ୟ କରିଛୁଁ । ସେମାନେ ଆମରି ସାହାଯ୍ୟରେ ଏଠି ବସତିସ୍ଥାପନ କରିଛନ୍ତି । ତେଣୁ ସେ ଅବସ୍ଥାରେ ସେମାନେ ଯଦି ଆମ ଉପରେ ତାଙ୍କ ଭାଷା ଲଦି ଦେଇଥାଆନ୍ତେ, ବିଭିନ୍ନ ପ୍ରଲୋଭନ ମାଧ୍ୟମରେ ତାକୁ ଗ୍ରହଣ କରିବାକୁ ବାଧ୍ୟ କରିଥାଆନ୍ତେ ତେବେ ଆମେ କେମିତି ଓ କାହିଁକି ମନା କରିଥାନ୍ତୁ ?

କିନ୍ତୁ ସେମାନେ ସେପରି କିଛି କରି ନଥିଲେ । ବରଂ ଆମ ଭାଷାକୁ ଉନ୍ନତ କରିବାକୁ ଚେଷ୍ଟା କରିଥିଲେ । ଆମ ଭାଷା ଓ ସାହିତ୍ୟରେ, ଆମ ଇତିହାସରେ କଅଣ ଅଛି ସେ କଥା ଚିହ୍ନେଇ ଦେଇଥିଲେ । ଖୋଜି, ଲୋଡ଼ି ଆଣି ଆମ ପାଖରେ ପହଞ୍ଚେଇ ଦେଇଥିଲେ । ତେଣୁ ଆଜି ମଧ୍ୟ ଆମେ ଯେତେବେଳେ ଆମ ଭାଷା, ସାହିତ୍ୟ ଓ ଇତିହାସ ଏପରିକି ଆମ ଧର୍ମ ଓ ସଂସ୍କୃତି ଉପରେ ପ୍ରବନ୍ଧଟିଏ ଲେଖିବାକୁ ଯାଉଁ ସେତେବେଳେ ସେମାନଙ୍କ ଦ୍ୱାରା ଲିଖିତ ବହିକୁ ମୂଳ ସୂତ୍ର ହିସାବରେ ଗ୍ରହଣ ନକରିବାର ଉପାୟ ନାହିଁ । ଏହାକୁ ଅସ୍ୱୀକାର କରିହେବ ନାହିଁ ।

ମୋର ଏତେ ସବୁ କହିବାର ଉଦ୍ଦେଶ୍ୟ ହେଉଛି ଆଜି ଆମ ଦେଶ ସ୍ୱାଧୀନ ହେଇଛି । ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀ କୋଉକାକୁ ଅତିବାହିତ ହେଲାଣି । ନିଜେ ନିଜର ଦେଶକୁ, ତା'ର ଭାଷା ଓ ସାହିତ୍ୟକୁ ନୂଆ ରୂପ ଦେଇ ଅଧିକ ଶକ୍ତିଶାଳୀ କରାଇବାକୁ ଆମକୁ ଯଥେଷ୍ଟ ସମୟ ସୁଯୋଗ ମିଳିଲାଣି । ଆମ ସମ୍ବିଧାନରେ ସେ ସୁଯୋଗ ସୃଷ୍ଟି କରିବାକୁ ବ୍ୟବସ୍ଥା ରହିଛି । ଆମକୁ ସେଥିପାଇଁ କେହି ବାଧା ଦେଇପାରିବେ ନାହିଁ । ବାଧା ଦେଲେ ତାହା ବୈଧାନିକ ହେବନାହିଁ । ଆମ ଭାଗ୍ୟ ଆମେ ନିଜେ ତିଆରିବା । ଏହା ହିଁ ସ୍ୱାଧୀନତାର ମୂଳ ଉଦ୍ଦେଶ୍ୟ । ଗୋଟାଏ ସ୍ୱାଧୀନ ରାଷ୍ଟ୍ର ଏଇ ବିଧିବିଧାନ ଉପରେ ତିଆରି ହେଇଥାଏ । ତାକୁଇ ତା'ର ମୂଳ ଖମ୍ବ ହିସାବରେ ନିଆଯାଇଥାଏ । ଗୋଟାଏ ସ୍ୱାଧୀନ ରାଷ୍ଟ୍ର ସମସ୍ତଙ୍କୁ ସମାନ ସୁବିଧା ଦେବାକୁ ପ୍ରତିଶ୍ରୁତିବଦ୍ଧ । ସ୍ୱାଧୀନ ରାଷ୍ଟ୍ର କେବେ ପାତର ଅନ୍ତର କଥା ଚିନ୍ତା କରିପାରେ ନାହିଁ ।

କିନ୍ତୁ ଆମ ଦେଶର ସ୍ୱାଧୀନ ସରକାର ବରାବର ରାଷ୍ଟ୍ରର ଭାଷା ଓ ସାହିତ୍ୟ କ୍ଷେତ୍ରରେ ଗୋଟିଏ ଏକପାଖିଆ ମନୋଭାବ ପୋଷଣ କରି କରି ଆସୁଛନ୍ତି । ସେମାନେ କୌଣସି ପ୍ରକାରେ ପ୍ରାନ୍ତୀୟ ଭାଷାକୁ ଆଗକୁ ବଢ଼ିବାର ସୁଯୋଗ ଦେବାକୁ ଚାହାନ୍ତି ନାହିଁ । ପ୍ରାନ୍ତୀୟ ଭାଷା ପ୍ରତି ସବୁବେଳେ ଗୋଟାଏ ବୈମାତୃକ ମନୋଭାବ ନିଜ ମନ ଭିତରେ ଲୁକ୍କାୟିତ ଭାବରେ ରଖୁଛନ୍ତି । ମନେ ମନେ ତା'ର ମୃତ୍ୟୁ କାମନା କରୁଛନ୍ତି କହିଲେ ଭୁଲ ହେବନାହିଁ ।

ଦେଶ ସ୍ୱାଧୀନ ହେଲା ପରେ ଦେଶରେ ପ୍ରଥମେ ତ୍ରିଭାଷୀ ସୂତ୍ର ପ୍ରଚଳନ ହେଲା । ସେତେବେଳେ କୁହାଗଲା ଯେ ହିନ୍ଦୀ, ଇଂରାଜୀ ଓ ମାତୃଭାଷା ସମସ୍ତେ ଶିଖିବେ ଏବଂ ପିଲାମାନେ ତାକୁ ପଢ଼ିବେ । ହିନ୍ଦୀକୁ ରାଷ୍ଟ୍ରଭାଷା ରୂପେ ମାନ୍ୟତା ଦେବାରୁ ତା'ର ସମ୍ମାନ ଅନ୍ୟ ଭାଷାଠାରୁ ଉପରେ ରହିଲା । ହିନ୍ଦୀ ସରକାରୀ ମାନ୍ୟତା ସବୁଠାରେ ପାଇଲା । ରାଷ୍ଟ୍ରଭାଷାର ଉନ୍ନତି ପାଇଁ ସବୁକ୍ଷେତ୍ରରେ ମାତ୍ରାଧିକ ସୁବିଧା ଓ ସୁଯୋଗ ଯୋଗାଇ ଦିଆଗଲା । ସରକାରୀ ପ୍ରୋତ୍ସାହନ ବହୁ ଭାବରେ ବଢ଼ିଗଲା । ସ୍କୁଲ କଲେଜମାନଙ୍କରେ ହିନ୍ଦୀ କେତେକ କ୍ଷେତ୍ରରେ ବାଧ୍ୟତାମୂଳକ ହେଲା, ଅଣ ହିନ୍ଦୀଭାଷୀମାନେ ହିନ୍ଦୀ ପଢ଼ିଲେ ସେମାନଙ୍କୁ ଯଥେଷ୍ଟ ଆର୍ଥିକ ସାହାଯ୍ୟ ଦିଆଗଲା । ଫଳରେ ସରକାରୀ ଚାକିରି ସେମାନଙ୍କ ପାଇଁ ଏକପ୍ରକାର ଅବଧାରିତ ହେଇଗଲା । ପ୍ରାଇଭେଟ ସେକ୍ଟରରେ ହିନ୍ଦୀ ପ୍ରଚଳନକୁ ମଧ୍ୟ ବାଧ୍ୟତାମୂଳକ କରାଗଲା । ତେଣୁ ସେମାନେ ମଧ୍ୟ ହିନ୍ଦୀଭାଷୀ ବା ହିନ୍ଦୀ ପଢ଼ିଥିବା ବ୍ୟକ୍ତିଙ୍କ ପାଇଁ ତାଙ୍କ ଦ୍ୱାର ଖୋଲା ରଖିଲେ । ସେମାନେ ସବୁଠି ଅଧିକ ମାନ୍ୟତା ଓ ପ୍ରୋତ୍ସାହନ ପାଇଲେ । ବସ୍ତୁତଃ ଆଞ୍ଚଳିକ ଭାଷାମାନେ ପଛକୁ ଠେଲି ହେଇଗଲେ ।

ତ୍ରିଭାଷୀ ନିୟମ କିନ୍ତୁ ଭାରତର ଅଧେ ଲୋକଙ୍କୁ ଲାଗୁ ହେଲା ନାହିଁ । ହିନ୍ଦୀ ଭାଷୀଙ୍କ ପାଇଁ ଦୁଇଟି ଭାଷା ରହିଲା । ଦକ୍ଷିଣ ଭାରତ ଓ ଉତ୍ତରପୂର୍ବାଞ୍ଚଳର କେତେକ ରାଜ୍ୟ ହିନ୍ଦୀ ପ୍ରଚଳନକୁ ବିରୋଧ କଲେ । ଦକ୍ଷିଣ ଭାରତର କେତେକାଂଶରେ ହିନ୍ଦୀ ମୋଟେ ପ୍ରବେଶ କରିପାରିଲା ନାହିଁ । ସେଠି ସମ୍ବିଧାନ ପୋଡ଼ି ପର୍ଯ୍ୟନ୍ତ କଥାଗଲା । ଫଳରେ ସରକାର ଏଯାଏ ସେଠି କୋହଳ ମନୋଭାବ ପୋଷଣ କରୁଛନ୍ତି । ସରକାରୀ ଚିଠିଟିଏ ମଧ୍ୟ ସେଠାକୁ ହିନ୍ଦୀରେ ଯାଇପାରୁ ନାହିଁ । ଗଲେ ଲଙ୍କାକାଣ୍ଡ ସୃଷ୍ଟି ହେଉଯାଉଛି । ମୁଖ୍ୟମନ୍ତ୍ରୀମାନେ ନିଜେ ସେଠି ଅଣ୍ଟା ଭିଡ଼ି ବାହାରି ପଡ଼ନ୍ତି । କେନ୍ଦ୍ର ସରକାରଙ୍କ ମୁଣ୍ଡ ସେଠି ତଳକୁ ହୋଇଯାଏ । ବସ୍ତୁତଃ ହିନ୍ଦୀ ଅପେକ୍ଷାକୃତ ଦୁର୍ବଳ ବା ପ୍ରତିବାଦ କରୁନଥିବା ରାଜ୍ୟମାନଙ୍କରେ ନିଜର ରାଜତ୍ୱ ଆରମ୍ଭ କରିଦେଲା । ଓଡ଼ିଶା ତା' ଭିତରୁ ଗୋଟାଏ । ଆମେ ତାକୁ ହିନ୍ଦୀ ନକହି ରାଷ୍ଟ୍ରଭାଷା କହି ମଥାରେ ଛୁଇଁ ଦେଉଁ ।

ସରକାରଙ୍କ ଏ ଗୋତ୍ରମରା ଭାଷାନୀତି ଏବେ ଉଗ୍ରରୂପ ଧାରଣ କରିବାକୁ ଯାଉଛି । ଏବର ସରକାର ହିନ୍ଦୀକୁ ଅଧିକ ପ୍ରୋତ୍ସାହନ ଦେବା ଉଦ୍ଦେଶ୍ୟରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଉପରେ ଅଧିକ ଚାପ ସୃଷ୍ଟି କରୁଛନ୍ତି । ଏବେତ ସରକାର ସବୁ ସ୍ୱୟଂଶାସିତ (ଅଟୋନୋମାସ୍) ସଂସ୍ଥା ଉପରେ ନିଜର କର୍ତ୍ତୃତ୍ୱ ଜାହିର କରିବାକୁ ଚାହୁଁଛନ୍ତି । 'ଅଟୋନୋମାସ୍ ବଡ଼ି'ର ସମ୍ବିଧାନ ପ୍ରଦତ୍ତ ସ୍ୱାଧୀନତା ଅପହୃତ ହେଲାଣି କହିଲେ ଚଳେ । କହିବା ଉଦ୍ଦେଶ୍ୟ ହେଉଛି, ନିକଟରେ ମାନବ ସମ୍ବଳ ବିକାଶମନ୍ତ୍ରୀ ସାହିତ୍ୟ ଏକାଡ଼େମୀକୁ ଏକ ଚିଠି ଲେଖି ହିନ୍ଦୀ ସାହିତ୍ୟକୁ ଅଧିକ ୨୫ ଲକ୍ଷ ଟଙ୍କାର ପୁରସ୍କାର ଦେବାକୁ କହିଥିଲେ । ଏଥିରେ ସମସ୍ତଙ୍କର ଭ୍ରୂକୁଞ୍ଚନ ସୃଷ୍ଟିହେବା ସ୍ୱାଭାବିକ । ସାହିତ୍ୟ ଏକାଡ଼େମୀ ସବୁ ସାହିତ୍ୟକୁ ସମାନ ଭାବରେ ଦେଖିବାକୁ ପ୍ରତିଶ୍ରୁତିବଦ୍ଧ । ଏହା ହିଁ ସାମ୍ବିଧାନିକ ନିୟମ । ଏକାଡ଼େମୀ ସେଇ ନିୟମ ଅନୁସାରେ କାମ କରେ । ସଚ୍ଚା ସାହିତ୍ୟିକମାନେ ପ୍ରଶାସନ ବା ପ୍ରଲୋଭନ ଆଗରେ ମୁଣ୍ଡ ନୁଆଁନ୍ତି ନାହିଁ । ସୁଖର କଥା, ସାହିତ୍ୟ ଏକାଡ଼େମୀ ମନ୍ତ୍ରୀ ମହୋଦୟଙ୍କର ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଇଛି । ଏକାଡ଼େମୀ ତା'ର ଚିଠିରେ ମନ୍ତ୍ରୀ ମହୋଦୟଙ୍କୁ ଜଣେଇ ଦେଇଛି ଯେ, କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଭାଷାର ସାହିତ୍ୟକୁ ଭିନ୍ନ ଆଖିରେ ଦେଖିବାର ପରମ୍ପରା ଏକାଡେମୀର ନାହିଁ । ଏହା ମଧ୍ୟ ସମ୍ବିଧାନ ବିରୋଧୀ ।

ଆମେ କିନ୍ତୁ ଭାବୁନୁଁ ଏ ପ୍ରସଙ୍ଗ ଏଇଠି ସରିଯିବ ନାହିଁ । ଖୋଦ ସରକାର ଯୋଉ ନୀତିରେ ବିଶ୍ୱାସୀ ତାକୁ ସେ କାର୍ଯ୍ୟକାରୀ କରିବେ ହିଁ କରିବେ । ସାମାନ୍ୟ ସାହିତ୍ୟ ଏକାଡେମୀ ତାକୁ କେତେଦିନ ପ୍ରତିରୋଧ କରିପାରିବ ? ❑

('ସମୟ'-୧୯.୫.୨୦୦୩)

# ଭାଷା ଓ ସାହିତ୍ୟ ସଂକଟରେ

ସେଦିନ କେହି ଜଣେ ମୋତେ କହୁଥିଲେ ଏଥର କୁଆଡ଼େ ଶାନ୍ତିନିକେତନରେ ଓଡ଼ିଆ ବିଭାଗରେ ମାତ୍ର ଦୁଇଜଣ ଛାତ୍ର ଏମ୍.ଏ. ପଢ଼ିବା ପାଇଁ ଭର୍ତ୍ତି ହୋଇଛନ୍ତି । କଥାଟା ଶୁଣି ମୁଁ ବିଶ୍ୱାସ କରିପାରିଲିନି । କିନ୍ତୁ ଏଥିରେ ଅବିଶ୍ୱାସ କରିବାର କିଛି ନାହିଁ । ଓଡ଼ିଆରେ ଉଚ୍ଚତର ଶିକ୍ଷାପାଇଁ ଯେ ଆସ୍ତେ ଆସ୍ତେ ଲୋକଙ୍କର ସ୍ପୃହା କମିବାରେ ଲାଗିଛି ଏକଥା ସମସ୍ତେ ଜାଣନ୍ତି । ଏ ଅବସ୍ଥା ଯେ କେବଳ ବିଶ୍ୱ ଭାରତୀରେ ତା' ନୁହେଁ, ଆମ ଓଡ଼ିଶାରେ ମଧ୍ୟ କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ସେଇ ଅବସ୍ଥା । ଓଡ଼ିଆ ବିଭାଗରେ ଥିବା ସ୍ଥାନ ଗତ କେତେବର୍ଷ ହେଲା ପୂରଣ ହେଉନାହିଁ । ଧୀରେ ଧୀରେ ସଂଖ୍ୟା କମିବାରେ ଲାଗିଛି । ଗବେଷଣା କ୍ଷେତ୍ରରେ ସେ ଅବସ୍ଥା ଆହୁରି ଖରାପ । ଗବେଷଣା କରିବାକୁ ଆଉ କେହି ମନ ବଳାଉ ନାହାନ୍ତି । ଯେଉମାନେ ଦିନେ ଆଶାବାନ୍ଧି ଥିଲେ ଯେ ଚାକିରି କରୁଥିବା ଅବସ୍ଥାରେ ଅନ୍ତତଃ ପିଏଚ୍‌ଡ଼ି ପାଇଁ କାମ କରିବେ ସେ ଆଶା ମଧ୍ୟ ବର୍ତ୍ତମାନ ମଉଳିବାକୁ ଆରମ୍ଭ କରିବଣି । ତା'ର କାରଣ ଚାକିରି ତ ଏବେ ଦୋଦୁଲ୍ୟମାନ ଅବସ୍ଥାରେ । ଯେଉଁମାନେ କୌଣସି ପ୍ରକାରେ ସ୍କୁଲ କଲେଜମାନଙ୍କରେ ଚାକିରି ଖଣ୍ଡେ ବଜାୟ ରଖିଛନ୍ତି, ସେମାନେ ମାସ ମାସ ଧରି ଦରମା ପାଉ ନାହାନ୍ତି । ଏବେ ସେମାନେ ନିଜ ଭାଗ୍ୟକୁ ଦୋଷ ନଦେଇ ଓଡ଼ିଆ ଭାଷାକୁ ଦୋଷ ଦେଉଥିବେ । ଭାଷା ପ୍ରତି ମୋହ ଏମାନଙ୍କୁ ଏବେ ଦାଣରେ ଛିଡ଼ା କରାଇବାକୁ ଯାଉଥିବାରୁ ସେମାନେ ତାକୁ ଦୋଷ ଦେଉଥିବେ । ଓଡ଼ିଆ ନପଢ଼ି ଆଉ କିଛି ପଢ଼ିଥିଲେ ଭଲ ହୋଇଥାଆନ୍ତା ବୋଲି ଭାବୁଥିବେ । କିଛି ନହେଲେ ଇଂରାଜୀ କି ହିନ୍ଦୀ କିମ୍ବା ସଂସ୍କୃତ ପଢ଼ିଥିଲେ ପେଟ ଚାଖଣ୍ଡକ ଅପୋଷା ରହୁ ନଥାଆନ୍ତା । ଓଡ଼ିଆରେ ଡକ୍ଟରେଟ ହାସଲ କରି ପ୍ରାଇଭେଟ୍ କଲେଜରେ ଅଧ୍ୟାପକ ଅଛି କହିଲେ ଆଜିକାଲି ଆଉ କେହି ଝିଅ ଦେଉନାହାନ୍ତି । ଝିଅର ବାପା ଦୁଇଥର ଚିନ୍ତା କଲା ବେଳକୁ ଝିଅ ନିଜେ ମୁହଁ ମୋଡ଼ି ଦଉଚି । ଯଦି କେହି ପ୍ରେମରେ ପଡ଼ିଯାଇଛି, ତେବେ ସେ ମଧ୍ୟ ଭବିଷ୍ୟତ କଥା ଚିନ୍ତା କରୁଚି । ନଚେତ୍ ସାଙ୍ଗ ସାଥିର ଗଞ୍ଜଣା ସହି ପାରୁନି । ଏବେ ଭାଷା ଓ ସାହିତ୍ୟର ଅଧ୍ୟାପକମାନଙ୍କ ଭିତରେ ହିନ୍ଦୀ ବେଶ୍ ଆରାମରେ ଅଛି । ହିନ୍ଦୀ ପାଇଁ ଏବେ ସବୁ ରାସ୍ତା ଖୋଲା ଅଛି । ଇଂରାଜୀ

ଆହୁରି ଭଲ । ଦରମା ନମିକୁ, ଟ୍ୟୁସନ୍ ବେଶ୍ କିଛିଟା ସାହାଯ୍ୟ କରୁଛି । କିନ୍ତୁ ସେ ରାସ୍ତା ମଧ ଆସ୍ତେ ଆସ୍ତେ ସଂକୁଚିତ ହୋଇଆସୁଛି । ଇଂରାଜୀ ସାହିତ୍ୟ ପ୍ରତି ମୋହ ମଧ ଲୋକଙ୍କର କମିଆସୁଛି । ପ୍ଲସ୍ ଟୁ ଯାଏ ଠିକ୍ ଅଛି । ତା'ପରେ ଆଉ ତାକୁ କିଏ ପଚାରୁଛି । ତେଣୁ ଯେଉଁ ଇଂରାଜୀ ଅଧାପକମାନେ ପାଞ୍ଚବର୍ଷ ପୂର୍ବରୁ ଓଡ଼ିଆ ଓ ହିନ୍ଦୀ ଅଧାପକମାନଙ୍କୁ ଦେଖିଲେ ନାକ ଟେକୁଥିଲେ ସେମାନେ ଏବେ ହିନ୍ଦୀ ଓ ସଂସ୍କୃତକୁ ଦେଖିଲେ ପାଖରେ ବସିବାକୁ କହୁଛନ୍ତି । ତା'ର କାରଣ ଆର୍ଥିକ ଦିଗରୁ ସେମାନେ ଭଲ । ସେମାନଙ୍କ ଭବିଷ୍ୟତ ମଧ ଭଲ । କିନ୍ତୁ ଓଡ଼ିଆ ଏବେ ତଳିତଳାନ୍ତ ହେଲାଣି । ତେଣୁ ବିଶ୍ୱଭାରତୀର ଓଡ଼ିଆ ବିଭାଗରେ ଏବେ କୋକୁଆ ଭୟ ସୃଷ୍ଟି ହେଲାଣି । ଆସନ୍ତା ବର୍ଷକୁ ବିଭାଗ ବନ୍ଦ ହେବାର ଆଶଙ୍କା ଦେଖାଦେଲାଣି । ଆମ ଓଡ଼ିଶାରେ ମଧ ସେଇ ଅବସ୍ଥା ।

ମୋର ମନେଅଛି ତିରିଶ ଚାଳିଶ ବର୍ଷ ତଳେ ଯେତେବେଳେ ଗାଁରେ ପ୍ରାଇମେରୀ ସ୍କୁଲଟିଏ ଖୋଲା ଯାଉଥିଲା ସେତେବେଳେ ସ୍କୁଲ୍ ସେକ୍ରେଟାରୀ ଶିକ୍ଷକଙ୍କୁ କହୁଥିଲେ, "ତୁମେ ଦୈନିକ ସନ୍ଧ୍ୟାବେଳେ ଗାଁ ଭିତରକୁ ଯାଇ ଲୋକମାନଙ୍କୁ ବୁଝାଇ ସୁଝାଇ ତାଙ୍କ ପିଲାମାନଙ୍କୁ ସ୍କୁଲ୍‌କୁ ଆଣ ।" କାରଣ ସ୍କୁଲ୍‌ର ଉପସ୍ଥାନ ଉପରେ ସରକାର ଗ୍ରାଣ୍ଟ ମଞ୍ଜୁର କରୁଥିଲେ । ତେଣୁ ବିଚରା ଶିକ୍ଷକ ଦରମା ଗଣ୍ଡାକ ପାଇଁ ସଞ୍ଜ ହେଲେ ଲୋକଙ୍କ ଘରେ ପହଞ୍ଚୁଥିଲା । ନେହୁରା ହେଉଥିଲା । ପିଲାଙ୍କୁ ପଠାଅ ବୋଲି କହୁଥିଲା । ଅବଶ୍ୟ ଏଥିରେ କାମ ହେଉଥିଲା । ଗାଁରେ ପ୍ରାଇମେରୀ ସ୍କୁଲ ଶିକ୍ଷକଙ୍କ ସମ୍ମାନ ଅନେକ ଉପରେ । ତା' କଥା ସମସ୍ତେ ମାନୁଥିଲେ । ପିଲା ସ୍କୁଲ୍ ଯାଉଥିଲା ଏବଂ ସେ ପାଠ ସରିବା ଯାଏ ସେଠାକୁ ଯିବା ବନ୍ଦ କରୁ ନଥିଲା ।

ଏବେ ସେ ଚିତ୍ର ସଂପୂର୍ଣ୍ଣ ବଦଳି ଗଲାଣି । ଗାଁରେ ସେ ପ୍ରାଇମେରୀ ସ୍କୁଲ ନାହିଁ କି ଶିକ୍ଷକ ମଧ ନାହାନ୍ତି । ଯେଉଁଠି ଅଛି ସେଠି ମଧ୍ୟାହ୍ନ ଭୋଜନ କେନ୍ଦ୍ର ଖୋଲିବା ସତ୍ତ୍ୱେ ଛାତ୍ରସଂଖ୍ୟା ବଢୁନାହିଁ । ବରଂ କମୁଛି । ଗାଁରେ ଏବେ ଇଂଲିଶ୍ ମିଡ଼ିୟମ୍ ସ୍କୁଲ୍‌ସବୁ ଖୋଲିଲାଣି । ନଚେତ୍ ଶିଶୁମନ୍ଦିର ବା ବିଦ୍ୟାମନ୍ଦିର ସବୁ ଖୋଲିଲାଣି । ଏ ସ୍କୁଲମାନଙ୍କରେ ଓଡ଼ିଆ ପ୍ରାଧାନ୍ୟ ପାଉ ନାହିଁ । ହିନ୍ଦୀ କିମ୍ବା ଇଂରାଜୀ ମାଧମରେ ପଢ଼ା ଯାଉଛି । ସେଠି ଓଡ଼ିଆ ସଂସ୍କୃତିକୁ ପଛରେ ପକେଇ ଆଉ ଏକ ସର୍ବଭାରତୀୟ ସଂସ୍କୃତିକୁ ଅଗ୍ରାଧିକାର ଦିଆଯାଉଛି । ତା'ର କାରଣ ହେଉଛି ପିଲାର ଭବିଷ୍ୟତକୁ ଆଖି ଆଗରେ ରଖି ନୂଆ କଥାଟିକୁ ଚିନ୍ତା କରାଯାଉଛି । ଓଡ଼ିଆ ଯେ ଭବିଷ୍ୟତରେ କୌଣସି କାମ ଦେବ ନାହିଁ ଏମିତି ଗୋଟାଏ ଧାରଣା ସମସ୍ତଙ୍କ ମନରେ ସୃଷ୍ଟି ହେଲାଣି ।

ଆମ ଶିକ୍ଷା ନୀତି ତାକୁ ସାହାଯ୍ୟ କରୁଛି । ଆମ ନେତୃତ୍ୱ ତାକୁ ସାହାଯ୍ୟ କରୁଛି । ପୁଞ୍ଜିବାଦ ବ୍ୟବସ୍ଥାରେ ବଜାରକୁ ସବୁବେଳେ ପ୍ରାଧାନ୍ୟ ଦିଆଯାଏ । ବଜାର ଅର୍ଥନୀତି ଭିତରେ କଳା ଓ ସାହିତ୍ୟକୁ ମଧ୍ୟ ରଖି ଦିଆଯାଏ । ତାକୁ ସେଇ ତରାଜୁରେ ତଉଲାଯାଏ । ଯୋଉ କଳା ଓ ସାହିତ୍ୟର ବଜାର ଦର କମ୍ ଥାଏ, ସେ ପଛକୁ ପଡ଼ିଯାଏ । ଲୋକେ ଯାହା ଖୋଜନ୍ତି ତାକୁ ପରଷା ଯାଏ । ଲୋକେ ଯଦି କହିବେ ଆମ ଆଗରେ ନଗ୍ନ ଓ ମୁଖରୋଚକ ଲେଖା ପରିବେଷଣ କର, ତାକୁ କରାଯାଏ । ତେଣୁ ଏବେ ସାହିତ୍ୟରେ ରୁଚିହୀନତା ପ୍ରାଧାନ୍ୟ ପାଇଲାଣି । ଯୌନକୈନ୍ଦ୍ରିକ ସାହିତ୍ୟ ଏବେ ପୁରୋଭାଗରେ । ସାହିତ୍ୟ ପତ୍ରିକା ଓ ଗଣମାଧ୍ୟମ ମଧ୍ୟ ଏହି ଧାରାକୁ ଆସିଗଲେଣି । ଏବର ସାହିତ୍ୟ ପତ୍ରିକାକୁ ଆଉ ସାହିତ୍ୟ ପତ୍ରିକା କହିହେବନି । ତାକୁ ଯାତ୍ରା ବା ସିନେମା ପତ୍ରିକା କହିବା ଉଚିତ ହେବ । ଆଗରୁ ଅଭିନେତ୍ରୀମାନେ ନିଜକୁ ବିଜ୍ଞାପିତ କରାଉଥିଲେ ପତ୍ରପତ୍ରିକାରେ । ଏବେ ଲେଖିକାମାନେ ସେ ସ୍ଥାନ ଦଖଲ କଲେଣି । ସେମାନେ କହୁଛନ୍ତି, ଏଥିରେ ପତ୍ରିକାର ବିକ୍ରି ବଢ଼ୁଛି । ଯାହା ବିକ୍ରି ବଢ଼ାଇବ ତାହା ହିଁ ଆବଶ୍ୟକ । ନଚେତ୍ ଲାଭ କିଛି ନାହିଁ । ଏବେ କଥାଟା ଯାଇ ସବୁବେଳେ 'ଲାଭ' ଉପରେ । ତେଣୁ ଗଣମାଧ୍ୟମମାନେ ଯେତିକି ନଗ୍ନ ଚିତ୍ର ପରିବେଷଣ କରୁଛନ୍ତି ସାହିତ୍ୟ ପତ୍ରିକା ଓ ଗଳ୍ପ ଉପନ୍ୟାସମାନେ ତା'ଠୁ କମ୍ ନଗ୍ନ ସାହିତ୍ୟ ପରିବେଷଣ କରୁନାହାନ୍ତି । ଯୋଉ ପତ୍ରପତ୍ରିକା ବା ଗଣମାଧମ ଆଗରୁ ଏସବୁ କରୁ ନଥିଲେ ସେମାନେ ବଜାରରେ ପଛରେ ପଡ଼ିଯିବା ଭୟରେ ଏବେ ଆଗକୁ ମାଡ଼ିଯିବାର ବ୍ୟବସ୍ଥା କଲେଣି । ଏସବୁ ଯେ ସେମାନଙ୍କର ଦୋଷ ମୁଁ ସେ କଥା କହୁନାହିଁ । ସମୟ ବଦଳିବା ସହିତ ମଣିଷର ଯେଉଁ ରୁଚି ବଦଳି ଯାଉଛି ତା' ସହିତ ତାଳଦେଇ ଚାଲିବା ବୁଦ୍ଧିମାନର କାମ । ବ୍ୟବସାୟ କ୍ଷେତ୍ରରେ ତାହା ଏକାନ୍ତ ଜରୁରୀ । ସେଠି ପ୍ରତିଷ୍ଠିତ ମୂଲ୍ୟବୋଧର ପ୍ରଶ୍ନ ଉଠେନା । ଆମର ସମଗ୍ର ସାହିତ୍ୟିକ କଳାକୃତି ଆଜି ଏଇ ବଜାର ନୀତି ଉପରେ ଆଧାରିତ । ଆମେ କେମିତି ହିନ୍ଦୀ ଓ ଇଂରାଜୀ ବହିର ବିକ୍ରିକୁ ଟପି ପାରିବା ତାକୁ ଆଖି ଆଗରେ ରଖାଯାଉଛି । ହିନ୍ଦୀ, ଇଂରାଜୀ ଓ ବଙ୍ଗଳା ସାହିତ୍ୟରେ ଜଣକର କେତେଟା ସଂସ୍କରଣ ହେଲା, ତା' ଉପରେ ଧ୍ୟାନ ଦିଆଯାଉଥିବା ବେଳେ ଓଡ଼ିଆରେ କେତେ କପି ବିକ୍ରି ହେଲା, ତାକୁ ଦେଖାଯାଉଛି । ଆମେ ଅନ୍ତରରେ ସନ୍ତୁଷ୍ଟ । ଏସବୁକୁ ସାହିତ୍ୟର ଅଗ୍ରଗତି କି ପଶ୍ଚାଦ୍‌ଗତି କୁହାଯିବ ମୁଁ ସେ କଥା ଜାଣେନା ।

ଆମର ଶିକ୍ଷା ବ୍ୟବସ୍ଥା ଦୟନୀୟ ହୋଇପଡ଼ିଥିବା ବେଳେ ଆମ ସାହିତ୍ୟର ବିଭିନ୍ନ ବିଭାଗ ସବୁ ଅପସଂସ୍କୃତି ଓ ବଜାରଭିତ୍ତିକ ମତାଦର୍ଶରେ ଭାରାକ୍ରାନ୍ତ ହୋଇପଡ଼ିଲେଣି । ତାକୁ ନୂତନ ମୂଲ୍ୟବୋଧ କୁହାଯାଉଛି । ବଢ଼ିପାଣି ଗୋଳିଆ ହେଲେ ମଧ୍ୟ ସେଇଟା ନଈପାଣି । ତାକୁ ଆଉ କିଛି କହିହେବ ନାହିଁ । ଆମ ସାହିତ୍ୟରେ ଏମିତି ଗୋଟାଏ ଅବସ୍ଥା ସୃଷ୍ଟି ହୋଇଥିଲା ବେଳେ ସରକାରୀ ଅନୁଷ୍ଠାନ 'ସାହିତ୍ୟ ଏକାଡ଼େମୀ' ଏବେ ବିବାଦ ଜାଲରେ ଛନ୍ଦି ହୋଇପଡ଼ିଛି । ସାହିତ୍ୟ ଏକାଡ଼େମୀ ଆଜି ପ୍ରଥମକରି ହରଡ଼ଘଣାରେ ପଡ଼ି ନାହିଁ କିମ୍ବା କେବଳ ଓଡ଼ିଶାର ସାହିତ୍ୟ ଏକାଡ଼େମୀ ସମାଲୋଚନାର ଶିକାର ହେଉନାହିଁ । ଭାରତର ସବୁ ସାହିତ୍ୟ ଏକାଡ଼େମୀ ଅନ୍ତେବହୁତେ ଏମିତି ଘଣା ପେଡ଼ନ୍ତି । ସରକାରୀ ଅନୁଷ୍ଠାନମାନେ ବିବାଦ ଭିତରେ ପଡ଼ିବା ସ୍ୱାଭାବିକ । ତା'ର କାରଣ ସବୁ ଗଣତାନ୍ତ୍ରିକ ଅନୁଷ୍ଠାନରେ ଅଗଣତାନ୍ତ୍ରିକ କାମ ହୁଏ ସବୁଠୁ ବେଶୀ । ସରକାର କାହାକୁ ପୁରସ୍କାର ଦେବେ ସେଇଟା ତାଙ୍କ ଇଚ୍ଛା ଉପରେ ନିର୍ଭର କରେ । ସେ ଯେ ସବୁବେଳେ କମିଟିର ମତକୁ ସମ୍ମାନ ଦେବେ ତା'ର କିଛି ମାନେ ନାହିଁ । ହୁଏତ ଦିନ ଆସିବ ଯେତେବେଳେ ସରକାର କହିବେ ପୁରସ୍କାର ପାଇଁ କୌଣସି କମିଟିର ଆବଶ୍ୟକତା ନାହିଁ । ସଂସ୍କୃତି ମନ୍ତ୍ରୀ ଓ ତାଙ୍କ ବିଭାଗ ଯାହାକୁ ଉଚିତ ମନେ କରିବେ ତାଙ୍କୁ ଦେବେ । ବରଂ ସରକାର କହିବେ ବଛାବଛି କମିଟିରେ ଓଡ଼ିଆମାନେ ଥିବାରୁ ଲେଖକମାନେ ନ୍ୟାୟ ପାଇପାରୁ ନାହାନ୍ତି । ସେଥିରେ ସବୁ ଅଣଓଡ଼ିଆ ଏବଂ ଅଣସାହିତ୍ୟିକମାନଙ୍କୁ ରଖିଦେଲେ ବିଚାରର ତରାଜୁ ଏପାଖ ସେପାଖ ହେବ ନାହିଁ । ତା'ର ପ୍ରମାଣ ଏବେ ଏବେ ମିଳିଗଲା । ଏବେ ଓଡ଼ିଶା ବାହାରେ ଅନେକଗୁଡ଼ିଏ ସାହିତ୍ୟ ସଭା ହେଲା । ଏହି ସଭାରେ ଓଡ଼ିଆମାନେ ଯୋଗଦେଲେ । ଅଣଓଡ଼ିଆମାନେ ମଧ୍ୟ ଯୋଗଦେଲେ । କବି ସାହିତ୍ୟିକମାନେ ଯୋଗଦେଲେ । ଅକବିମାନେ ମଧ୍ୟ ଯୋଗ ଦେଲେ । କବି ନାମଧାରୀମାନେ ମଧ୍ୟ ଯୋଗଦେଇେ । ସମସ୍ତେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ଉପରେ ଇଂରେଜୀରେ ଯୋଉ ସାରଗର୍ଭକ ଭାଷଣ ଦେଲେ ତାକୁ ସମସ୍ତେ ଉଚ୍ଚ ପ୍ରଶଂସା କରିଛନ୍ତି । ଆଉ କେହି କହେ କହିଲେ ଏତେ ଚମତ୍କାର ଇଂରାଜୀ ଆମେ ଆଗରୁ କେବେ ଶୁଣି ନଥିଲୁଁ । ସରକାର ଏଥିରୁ ପ୍ରେରଣା ପାଇ ଯଦି ପୁରସ୍କାର ନିର୍ବାଚନ କମିଟି ଉଠାଇ ଦିଅନ୍ତି, ତେବେ କାହାରି କିଛି କହିବାର ନାହିଁ । ସେତେବେଳେ ଯଦି ତାଙ୍କୁ କେହି ପଚାରେ, ତମେ ଏ ଅନ୍ୟାୟ କାମ କେମିତି କଲ ? ଆଜିକାଲି ସାଧାରଣତଃ ଦେଖାଯାଉଛି ସରକାରର ଯେକୌଣସି ଭୁଲ୍ ପାଇଁ ପ୍ରଶ୍ନ ହେଲେ ସେମାନେ କହନ୍ତି ''ଆମ ପୂର୍ବ ସରକାର ଏମିତି କରୁଥିଲେ । ଏ ପରମ୍ପରା ଆଗରୁ ଅଛି ।''

ପୁରସ୍କାର ଦେବାର ପରମ୍ପରା ଆମର ଆଗରୁ ଯାହା ଥିଲା, ତାହା ଏବେ ମଧ୍ୟ ଅଛି । ତେବେ ଏବେ ଗୋଟିଏ ଅନ୍ତତଃ ଭଲ କଥା ହେଉଛି ଯେ ଆଗରୁ ଯେମିତି ସାହିତ୍ୟ ଏକାଡ଼େମୀର ସଭାପତି ପଦଟା ମୁଖ୍ୟମନ୍ତ୍ରୀ ଜାବୁଡ଼ି ଧରୁଥିଲେ ଆଜିକାଲି ସେପରି ହେଉନାହିଁ । ଏବର ମୁଖ୍ୟମନ୍ତ୍ରୀ କୁଆଡ଼େ ନିଜେ ଜଣେ ଲେଖକ । ତାଙ୍କର ବହି କୁଆଡ଼େ ଅଶୋକ ଦାସ ଅନୁବାଦ କରିବେ ବୋଲି ଶୁଣାଯାଉଥିଲା । ରୟାଲ୍‌ଟି କଥା ଛିଣ୍ଡିଲା ନାହିଁ କି କ'ଣ ହେଲା କେଜାଣି ସେ ବହି ବୋଧେ ବାହାରକୁ ଆସିନି । ମୁଖ୍ୟମନ୍ତ୍ରୀ ଲେଖକ ହେଇ ମଧ୍ୟ ସାହିତ୍ୟ ଏକାଡ଼େମୀର ସଭାପତି ହେବାର ପରମ୍ପରାକୁ ଫୋପାଡ଼ି ଦେଲେ । ଏକାଡ଼େମୀର ସଭାପତି ଜଣେ ପ୍ରବୀଣ ସାହିତ୍ୟିକ । ତା' ସତ୍ତ୍ୱେ ଏଥର ସଭାପତି ଓ ତାଙ୍କ ସହକର୍ମୀମାନେ ପକ୍ଷପାତ ବିଚାର ଅଭିଯୋଗରେ କାଠଗଡ଼ାରେ । ଆଗରୁ ସିନା ଖୋଦ ମୁଖ୍ୟମନ୍ତ୍ରୀ ମାଲିକ ହେଉଥିବାରୁ ଅଭିଯୋଗ ହେଉଥିଲା, ଏବେ କାହିଁକି ହେଉଛି ?

ସରକାର ସାହିତ୍ୟର ଉନ୍ନତି କରିବେ ବୋଲି ଗୋଟିଏ ଲାଇବ୍ରେରୀ ଆଇନ କଲେ । ଲାଇବ୍ରେରୀ ଆନ୍ଦୋଳନ ଆରମ୍ଭ ହେଲା । କୋଟି କୋଟି ଟଙ୍କା ଖର୍ଚ୍ଚରେ ପ୍ରଚୁର ବହି କିଣାହେବ ଏବଂ ଲାଇବ୍ରେରୀମାନଙ୍କୁ ଯୋଗାଇ ଦିଆଯିବ । କିନ୍ତୁ ସେସବୁ କିଛି ହେଲା ନାହିଁ । ଅଧିକନ୍ତୁ ଲେଖକମାନଙ୍କର ଯେଉଁ ସମବାୟ ସମିତି ଥିଲା ତା'ର ମଧ୍ୟ ତଣ୍ଟି ଚିପି ଦିଆଗଲା । ତାକୁ ଅକାମି କରି ଦିଆଯାଇଛି ଦୁଇବର୍ଷ ହେଲା । ଅଥଚ ଇଆଡ଼େ ଡିଣ୍ଡିମ ପିଟା ଯାଉଛି ଯେ ୨୦ କୋଟି ଟଙ୍କା ଏଥିରେ ଖର୍ଚ୍ଚ ସରିଲାଣି ।

ବୁଡ଼ିଗଲା ଲୋକର ଗୋଡ଼ ତଳକୁ ତଳକୁ । ଏବେ ଆମ ଭାଷା ଓ ସାହିତ୍ୟର ସେମିତି ଗୋଟେ ଅବସ୍ଥା ସୃଷ୍ଟି ହୋଇଛି । ଏଥିପାଇଁ କେହି ଜଣକୁ ଦାୟୀ କରିହେବ ନାହିଁ । ଏଥିପାଇଁ ଆମେ ସମସ୍ତେ ଦାୟୀ । ଯେତେଦିନ ଯାଏ ଆମ ଭିତରୁ ସ୍ତାବକତା ଦୂର ହେଇ ନାହିଁ ସେତେଦିନ ଯାଏ ଭାଷା, ସାହିତ୍ୟ ଓ ସଂସ୍କୃତିର ଉନ୍ନତି ମୋଟେ ସମ୍ଭବ ନୁହେଁ । ❑

('ସମୟ'-୨୬.୧୦.୨୦୦୨)

# ଭାଗ୍ୟବାଦ ସପକ୍ଷରେ

ଏଥର ଭୁବନେଶ୍ବର ବହିମେଳା ଦେଖିସାରିଲା ପରେ ମୋର ହଠାତ୍ କାହିଁକି କେଜାଣି ଭାଗ୍ୟବାଦ ଆଡ଼କୁ ମନ ବେଶୀ ଟାଣୁଚି । ଭାଗ୍ୟବାଦରେ ଏତେ ସୁବିଧା ଥାଏ ବୋଲି ଜାଣିନଥିଲି । ଖାଲି ଭାଗ୍ୟବାଦ କଥା ବଖାଣିଲେ ଯେତେ ଲାଭ, ଭାଗ୍ୟବାଦରେ ବିଶ୍ୱାସ କରୁଥିବା ଲୋକ ମଧ୍ୟ ଏତେ ସୁଖ ସୁବିଧା ପାଉନଥିବ । ତେଣୁ ଜଣେ ଭାଗ୍ୟବାଦରେ ବିଶ୍ୱାସ ନକରି ମଧ୍ୟ ଯଦି ଭାଗ୍ୟବାଦ ଉପରେ ଥିବା ମୋଟା ବହି ବିକ୍ରି କରେ, ସେ ହୁଏତ ଛଅ ମାସରେ କୋଟିପତି ହୋଇଯାଇପାରେ । ତାକୁ କେବଳ ଗୋଟିଏ କଥା କରିବାକୁ ହେବ । ସେ ବଡ଼ ବଡ଼ ଲୋକଙ୍କୁ ଯୋଗାଯୋଗ କରିବ, ଯେଉଁମାନେ ପ୍ରଚୁର ଅର୍ଥର ମାଲିକ - ଯେ କୌଣସି ଉପାୟରେ ହେଉ । ଏହି ବିଶିଷ୍ଟ ଗ୍ରାହକମାନେ ଏ କଥାରେ ହଜାର ହଜାର ଟଙ୍କାର ବହି କିଣି ନେଇ ଘର ଡ୍ରଇଂରୁମରେ ସଜେଇ ରଖି ଦିଅନ୍ତି । ସେମାନେ ଯେ ସବୁ ବହି ତାଙ୍କ ଜୀବନକାଳ ଭିତରେ ଥରେ ବୋଲି ପଢ଼ିବେ ତା'ର କିଛି ମାନେ ନାହିଁ । କେବଳ ଡ୍ରଇଂରୁମ୍ ସଜେଇବାରେ ସେଗୁଡ଼ିକ ଭଲ କାମ ଦିଏ । ତା'ର କାରଣ, ସେସବୁ ବହିର ପ୍ରଚ୍ଛଦ ଓ ତା'ର ଛାପାକାମ ଏତେ ସୁନ୍ଦର ହୋଇଥାଏ ସେ କାଚ ଆଲମାରୀରେ ସେଗୁଡ଼ିକ ପ୍ଲାଷ୍ଟିକ୍ ଫୁଲ ପରି ଚମକୁ ଥାଏ । ଦେଖିଲେ ଆଖି ଖୋସି ହେଇଯାଏ ।

ଏଥର ବହିମେଳାରେ ସବୁଠାରୁ ବେଶୀ ଏହି ବହିସବୁ ବିକ୍ରି ହେଉଥିବାର ଦେଖିଲି । ଜ୍ୟୋତିଷ ଶାସ୍ତ୍ର, ହନୁମାନ ଚାଳିଶା, ମନ୍ତ୍ରୌଷଧି ବିଜ୍ଞାନ, ଯୋଗିନୀ ବିଚାର ଇତ୍ୟାଦି ବହି ଦେଖି ମୁଁ ତଟକା ହୋଇଗଲି । ହସ୍ତରେଖା, ପେଙ୍ଗସୁଇ ଓ ଜ୍ୟୋତିଷ ଶାସ୍ତ୍ର (ଏବେ କେହି କେହି ତାକୁ 'ବିଜ୍ଞାନ' ବୋଲି ମଧ୍ୟ ଲେଖିଲେଣି ) ପ୍ରଚୁର ବିକ୍ରି ହୋଇଥିବାର ମନେ ହେଉଛି । ମୋର ମନେ ହେଉଛି, ଏବର କଲେଜ ପଢୁଆ ଝିଅମାନେ ବେଶୀ ଭାଗ୍ୟବାଦ ଉପରେ ବିଶ୍ୱାସ କରନ୍ତି । ସେମାନଙ୍କ ଭାଗ୍ୟ ଦୁଇ ଭାଗରେ ବିଭକ୍ତ । ଗୋଟିଏ ପାଠ ଓ ଅନ୍ୟଟି ବିବାହ । ଯେଉଁ ବୟସରେ ସେମାନେ ନିଜକୁ ଜୀବନ ଯୁଦ୍ଧରେ ଅବତୀର୍ଣ୍ଣ ହେବାପାଇଁ ଜଣେ ଲଢୁଆ ସୈନିକ ହିସାବରେ ପ୍ରସ୍ତୁତ କରିବାର କଥା, ସେତେବେଳେ ସେମାନେ ଯଦି ଗୋଟାଏ ଅନିଶ୍ଚିତ ଭାଗ୍ୟ ଉପରେ ନିର୍ଭର କରି

ରହିଯାଆନ୍ତି, ତେବେ ମୋର ମନେ ହେଉଛି ସେମାନଙ୍କ ଭବିଷ୍ୟତ ଧୂଆଁଳିଆ ହୋଇଯାଉଥିବ । ଗୋଟାଏ ସିଦ୍ଧାନ୍ତ ନେବା ସେମାନଙ୍କ ପକ୍ଷେ ସମ୍ଭବ ହେଉନଥିବ । 'ଡିସିସନ' ନେଇ ପାରୁ ନ ଥିବା ଲୋକଟିର ଜୀବନ ସବୁବେଳେ ବିଫଳତା ଆଡକୁ ଧାଇଁଥାଏ । ପୃଥିବୀର ସବୁଯାକ ଦୁଃଖ, କ୍ଳେଶ ତା' ମୁଣ୍ଡ ଉପରେ ଅଜାଡ଼ି ହୋଇପଡ଼େ । ପାରିବାରିକ ଜୀବନ ମଧ୍ୟ ତା'ପାଇଁ ଦୁର୍ବିସହ ହୋଇପଡ଼େ । ତା'ର ସବୁଥାଇ ମଧ୍ୟ କିଛି ନଥାଏ । ତେଣୁ ଭାଗ୍ୟବାଦ ଉପରେ ନିର୍ଭର କରୁଥିବା ଲୋକଟି କେବେ ନେତୃତ୍ୱ ନେଇ ପାରେ ନାହିଁ ।

ଆମ ଓଡ଼ିଶାରେ ଭାଗ୍ୟବାଦ ଉପରେ ନିର୍ଭର କରୁଥିବା ଲୋକଙ୍କ ସଂଖ୍ୟା ଏବେ ଅନେକ ବଢ଼ୁଛି । ତା'ନହେଲେ ଭାଗ୍ୟବାଦ ଉପରେ ଏତେ ବହି କେମିତି ବିକ୍ରି ହେଉ ଥାଆନ୍ତା । ସେ ବହିଗୁଡ଼ିକର ଦାମ୍ ମଧ୍ୟ କମ୍ ନୁହେଁ । ଖଣ୍ଡେ ଗଳ୍ପ କି କବିତା ବହି କିମ୍ବା ଭଲ ଓ ପୁରସ୍କୃତ ଉପନ୍ୟାସର ଦାମ ଯାହା, ଫେଙ୍ଗସୁଇ ବହିର ଦାମ୍ ତା'ର ଦୁଇ-ତିନିଗୁଣ । ମୁଁ ଯେତେବେଳେ ମାର୍କ୍ସ ଓ ଏଙ୍ଗେଲସ୍‌ଙ୍କ ବହି ପାଖରେ ମୋଟା ମୋଟା ଦୁଇଟା ବାସ୍ତୁଶାସ୍ତ୍ର ବହି ଦେଖିଲି, ସେତେବେଳେ ବିଛା କାମୁଡ଼ିଲା ପରି ଚମକି ପଡ଼ିଲି । ଭାବିଲି, ଷ୍ଟଲମାଲିକଙ୍କୁ ଏମାନେ ମାରି ଗୋଡାଉ ନାହାନ୍ତି କାହିଁକି ? ମୋ ଭିତରେ ଅସ୍ୱସ୍ତି ଭାବ ମୋତେ ଘାରି ପକେଇଲା । ନିଜକୁ ପ୍ରବୋଧ ଦେଲି । ଭାବିଲି, ଏତେ ବ୍ୟସ୍ତ ହେଲେ ଚଳିବ ? ପାର୍ଲିଆମେଣ୍ଟ ହଲରେ ତ ପୁଣି ମହାତ୍ମା ଗାନ୍ଧି ଓ ନେହେରୁଙ୍କ ଫଟୋ ପାଖରେ ସଭରକରଙ୍କ ଫଟୋ ରହିଲାଣି । କଲିକତାର ହୋଚୀମିନ୍ ସରଣୀରେ ପୁଣି ଆମେରିକାର ୟୁ.ଏସ୍.ଆଇ.ଏସ. ଅଫିସ ଅଛି । ଜଣେ ବନ୍ଧୁ କହିଲେ ଆଃ, ସଲ୍ଟଲେକରେ ଯେମିତି ସଲ୍ଟ ମିଳେନା କି ଡାଇମଣ୍ଡ ହାରବରରେ ଡାଇମଣ୍ଡ ମିଳେନା, ସେମିତି ଏ ଫଟୋ ଓ ବହିଗୁଡ଼ିକରୁ ଆପଣ କଅଣ ପାଇବେ ? ସେ ଗୁଡ଼ିକ କେବଳ ବିକ୍ରି ପାଇଁ ଡିସ୍‌ପ୍ଲେ ହେଉଛି । ଆଜିକାଲି ଯୁଗରେ ବାସ୍ତୁଶାସ୍ତ୍ର ଯେମିତି ଘରସଜା ହେବାକୁ ଯାଏ, ମାର୍କ୍ସଙ୍କ ବହି ମଧ୍ୟ ସେମିତି ଘର ସଜେଇବାକୁ ନିଆଯାଏ । ଯଦି ପ୍ରକୃତରେ ତାକୁ କେହି ପଢୁ ଥାଆନ୍ତା, କି ବୁଝୁ ଥାଆନ୍ତା ତେବେ ଅନ୍ୟଟିକୁ ପାଖ ପୂରାନ୍ତାନି ।

ବହିମେଳାରେ ତିନିଦିନ ଭିତରେ ଅନ୍ତତଃ ଦୁଇଜଣ ପୂର୍ବତନ ବିଧାୟକ ଓ ଜଣେ ପୂର୍ବତନ ମନ୍ତ୍ରୀଙ୍କୁ ଦେଖିଲି । ସେମାନେ ହାତରେ ଏହି ପ୍ରକାର ଖଣ୍ଡିଏ ଖଣ୍ଡିଏ ବହି ଧରି ଆଉ ଅଧିକ ଖୋଜୁ ଥାଆନ୍ତି । ଜଣେ ପଚାରିଲେ ଭଲ ଭଲ ବାସ୍ତୁଶାସ୍ତ୍ର ଦେଖାନ୍ତୁ । ମାଲିକ ହାତ ଦେଖେଇ ଦେଲେ । ଉଠିବାକୁ ବେଳ କାହିଁ ତାଙ୍କୁ । ରସିଦ କାଟୁ କାଟୁ

ସେ ଝାଳ ନାଳ ହେଇ ଯାଉଚନ୍ତି । ହାତରେ କହିଦେଲେ ସେଇ ଥାକ ଦେଖନ୍ତୁ । ପୃଥୁଳକାୟ 'ପୂର୍ବତନ' ଜଣକ ଭିଡ଼ ଭିତରେ ପଶି ପାରିଲେ ତ ? ନଇଁ ମଧ ପାରୁ ନାହାନ୍ତି । ତଥାପି ସେ ଚାହାଁନ୍ତି ତାଙ୍କ ଭାଗ୍ୟ ଆହୁରି ତେଜ ହେଉ । ଅନ୍ତତଃ ଆସନ୍ତା ନିର୍ବାଚନରେ ତାଙ୍କୁ କେମିତି ଟିକେଟଟିଏ ମିଳିବ ସେ ରାସ୍ତା ସେ ବହିରୁ ସହଜରେ ପାଇଯିବେ ବୋଲି ଆଶା କରିଥିବେ । ତା' ପରେ ସେ ତାଙ୍କର ଭାଗ୍ୟର ଲଣ୍ଠନଟିକୁ ତେଜିବାକୁ ଆଉ ମୋଟେ ଅସୁବିଧା ହେବ ନାହିଁ । ସେ ଜାଣି ସାରିବେଣି ଏଇ ନିର୍ବାଚନ ପୂର୍ବରୁ 'ଏରିଆ ଡେଭଲପ୍‌ମେଣ୍ଟ ଫଣ୍ଡ' ଅନ୍ତତଃ କୋଟିଏରେ ପହଞ୍ଚିବାର ସବୁ ଯୋଜନା ତିଆରି ସରିଲାଣି । ସେତକ ପାଇବାକୁ ହେଲେ ହଜାର ଟଙ୍କାର ବହି ନେଲେ କ୍ଷତି କ'ଣ ?

ଏଥର ନୂଆ କରି ବହିମେଳାରେ ରୁଦ୍ରାକ୍ଷମାଳା ଓ ଜେମ୍ସ ଉପରେ ଅନେକ ବହି ଦେଖିଲି । ଆଗ ବର୍ଷମାନଙ୍କରେ ଏସବୁ ଥିଲା କି ନା ମୁଁ ଜାଣେନା; କିନ୍ତୁ ଗୋଟିଏ କଥାରେ ଆଶ୍ଚର୍ଯ୍ୟ ହେଲି ଯେ ଏତେ ଓଡ଼ିଆ ବହି କୁଆଡୁ ଆସିଲା ? ଏସବୁ ଉପରେ ଲେଖିବାକୁ ହଠାତ୍ ଏତେ ଲେଖକ କେମିତି ସୃଷ୍ଟି ହେଲେ ? ଅଧିକାଂଶ ବହିର ଲେଖକ ଇଞ୍ଜିନିୟର । କୋଉ ଇଞ୍ଜିନିୟରିଂ କଲେଜରେ ଆଜିକାଲି ରୁଦ୍ରାକ୍ଷମାଳା, ଫେଙ୍ଗସୁଇ ଓ ଜେମ୍ସ ଉପରେ ପାଠପଢ଼ା ଯାଉଚି, ମୋତେ କେହି କହିପାରିଲେ ନାହିଁ । ଜ୍ୟୋତିଷ ଶାସ୍ତ୍ରକୁ ଗୋଟାଏ ବିଷୟ ହିସାବରେ ନ ନେଲେ ମୁରଲୀ ମନୋହର ଏବେ ବିଶ୍ୱବିଦ୍ୟାଳୟର ଗ୍ରାଣ୍ଟ କାଟିଦେବେ କହିଛନ୍ତି । ସେ କହୁଛନ୍ତି ତାକୁ ତୁମେ ଆଉ 'ଶାସ୍ତ୍ର' ବୋଲି ନ କହି 'ବିଜ୍ଞାନ' ବୋଲି କୁହ । ସେତକ କହିଦେଲେ ତାହା ବିଜ୍ଞାନରେ ପରିଣତ ହେଇଯିବ । କିଛି ଯାଏ ଆସେନା, ଆମ ମହାକାଶ ବିଜ୍ଞାନୀ ରାଷ୍ଟ୍ରପତି ଡକ୍ଟର କାଲାମ ଯଦି ସେ ବିଜ୍ଞାନକୁ ସ୍ୱୀକାର ନ କରନ୍ତି ।

ଦେଖିଲି, ଏହି ବହିର ଲେଖକମାନଙ୍କ ଭିତରୁ ଅନେକେ 'ପ୍ରଫେସର' ଓ 'ଡକ୍ଟର' ମଧ ଅଛନ୍ତି । ବହିର କାଟତି ବଢୁଛି । ଥରେ ପଦବୀଟା ଦେଖିଦେଲେ ପ୍ଲାଷ୍ଟିକ୍ ଫୁଲ ଅସଲିରେ ମିଶିଯାଏ । ସେଥିରେ ଗନ୍ଧ ନଥାଉ । କିଏ ତାକୁ ପଚାରୁଛି । ମୁଁ ଯେତେବେଳେ 'ଭାରତର ଭାଗ୍ୟ ଓ ଗ୍ରାହକ ସୁରକ୍ଷା ଆଇନ' (ସମୟ ୭.୯.୦୩) ଲେଖି ଠକ ଭବିଷ୍ୟ ବକ୍ତାମାନଙ୍କୁ ଗ୍ରାହକ ସୁରକ୍ଷା ଆଇନରେ ଛନ୍ଦିବାକୁ ଲେଖିଲି, ସେତେବେଳେ ମୋ ପାଖକୁ ଅନେକ ଚିଠି ଆସିଲା । ସେଥିରୁ ବେଶ କେତେ ଖଣ୍ଡ ଧମକପୂର୍ଣ୍ଣ ଓ ଥଟାଳିଆ ଚିଠି ମଧ ଥିଲା । ଏଗୁଡ଼ିକ ଅବଶ୍ୟ ବେନାମୀ । ସେତେବେଳେ ମୁଁ ଭାବିଲି, ତେବେ ଲେଖାଟି ସାର୍ଥକ ହେଲା । ଯଦି ଜଣେ ପଇସା ନେଇ ଗଣନା କରି ସତ୍ୟ ଘଟିବ ବୋଲି କହେ, ଅଥଚ ସେମିତି ମୋଟେ ଘଟେ ନାହିଁ, ତେବେ ତାହା ଗ୍ରାହକ

ସୁରକ୍ଷା ଆଇନ ପରିସରଭୁକ୍ତ ହେବ । ଗ୍ରାହକମାନେ ଯଦି ଜ୍ୟୋତିଷ ଶାସ୍ତ୍ରୀ ବା ଫେଙ୍ଗସୁଇର ପ୍ରବକ୍ତାମାନଙ୍କୁ ରସିଦ ମାଗିବେ, ତେବେ ମୁଁ ଭାବୁଛି ଏହି ଠକମାନେ ଦୋକାନ ବନ୍ଦ କରିଦେବେ । ସରକାର ମଧ୍ୟ କଥାଟାକୁ ବିଚାରକୁ ନିଅନ୍ତୁ । ସୁପ୍ରିମ୍‌କୋର୍ଟର ନିର୍ଦ୍ଦେଶ ଅନୁସାରେ ଏବେ ସମ୍ବାଦପତ୍ରମାନେ ବିବାହ ବିଜ୍ଞାପନ ଦେଲାବେଳେ ସତର୍କତା ନୋଟିସ୍ ମଧ୍ୟ ଦେଉଛନ୍ତି । ସାଧାରଣ ଜନତାକୁ ଠକ ବିଜ୍ଞାପନରୁ ମୁକ୍ତି ଦେବା ପାଇଁ ଏହା କରା ଯାଉଛି । ଭାଗ୍ୟଫଳ, ରାଶିଫଳ ଇତ୍ୟାଦି ଯେମିତି ଗୋଟାଏ ଗୋଟାଏ ଧୂଆଁବାଣ, ବାସ୍ତୁଶାସ୍ତ୍ର ଓ ଫେଙ୍ଗସୁଇ, ରୁଦ୍ରାକ୍ଷ, ଜେମ୍ସ ଉପରେ ବହିଗୁଡ଼ିକ ମଧ୍ୟ ସେମିତି ଅନ୍ଧବିଶ୍ୱାସ ଓ ଅବୈଜ୍ଞାନିକ ତଥ୍ୟ ଉପରେ ଆଧାରିତ । ତାକୁ ପାଠକରି ବହୁ ଲୋକ ଭୁଲ ରାସ୍ତାରେ ପରିଚାଳିତ ହେଉଚନ୍ତି । ଲୋକଙ୍କୁ ଭୁଲ ମାର୍ଗରେ ପରିଚାଳିତ କରୁଥିବା ପୁସ୍ତକକୁ ସରକାର ବିକ୍ରି ନିଷେଧ କରିଦେବା ଉଚିତ ।

ଏଥର ବହିମେଳାରେ ପ୍ରାୟ ୯୦ ଭାଗ ଦୋକାନରେ ଏଇସବୁ ବହି ବିକ୍ରି ହେଉଥିଲା । ଓଡ଼ିଶାର ଅନ୍ୟାନ୍ୟ ବହିମେଳାରେ ମଧ୍ୟ ଏମିତି ବିକ୍ରି ହେଉଥିବ । ସେ ଦୃଷ୍ଟିରୁ ବହିମେଳାର ଅସଲ ଉଦ୍ଦେଶ୍ୟ ସାଧିତ ହେଉଛି ବୋଲି ମନେ ହେଉନାହିଁ । କେବଳ ଅର୍ଥ ଉପାର୍ଜନ ଉଦ୍ଦେଶ୍ୟରେ ଏସବୁ ବହିର ବିକ୍ରିକୁ ଉତ୍ସାହିତ କରାଯିବା ଉଚିତ ନୁହେଁ । ଭାଗ୍ୟବାଦକୁ ଲୋକେ ଯେତିକି ଆପଣେଇ ନେବେ ମାନସିକ ଦୁର୍ବଳତା ସେମାନଙ୍କୁ ସେତିକି ଆବୋରି ପକେଇବ । ସେମାନେ ଆସ୍ତେ ଆସ୍ତେ ରସାତଳକୁ ଚାଲିଯିବେ । ମାନସିକ ଦୁର୍ବଳତା ହିଁ ମଣିଷର ପ୍ରଥମ ଓ ପ୍ରଧାନ ଶତ୍ରୁ ।

❑

('ସମୟ'-୨୪.୧୨.୨୦୦୩)

# ଫେଙ୍ଗସୁଇ ଓ ଫେସନ

ଏବେ ଫେଙ୍ଗସୁଇ ଓ ବାସ୍ତୁଶାସ୍ତ୍ରର ଚାହିଦା ଆମ ବଜାରେ ବୃଦ୍ଧି ପାଇଛି । ବହି ଦୋକାନମାନଙ୍କରେ ତା'ର ବିକ୍ରି ବଢ଼ିଚି । ବହିମେଳାକୁ ଯୋଉମାନେ ଯାଉଥିବେ ସେମାନେ ଦେଖୁଥିବେ କେମିତି ଥାକରେ ଏ ବହିସବୁ ଅତି ଚମତ୍କାର ଭାବେ ସଜାଇ ରଖାଯାଇଚି । ଏସବୁ ବହିର ବିଜ୍ଞାପନ ମଧ୍ୟ ବେଶ୍ ଆକର୍ଷଣୀୟ ଭାବରେ କରାଯାଇଛି । ଅଥଚ ସାହିତ୍ୟ ବହିର ବିଜ୍ଞାପନ କେବେ ବି ଦେଖିବାକୁ ମିଳେନା । ଏ କଥା ଜଣାଶୁଣା ଯେ, ଯେକୌଣସି ବସ୍ତୁର ବିକ୍ରି ତା'ର ପ୍ରଚାର ଉପରେ ନିର୍ଭର କରେ । ପ୍ରଚାର ଯେତେ ଅଭିନବ ଉପାୟରେ ହେବ ପଣ୍ୟଟି ସେତିକି ଶୀଘ୍ର ବିକ୍ରି ହେବ । ସେଥିରେ କିଛି ଥାଉ କି ନଥାଉ ତା'ର ଚାହିଦା ବଢ଼ିବ ।

ଏବେ କେତେବର୍ଷ ହେଲା ଆମ ଦେଶରେ ଅନ୍ଧବିଶ୍ୱାସ ଓ କୁସଂସ୍କାର ଉପରେ ଅନେକ ବହି ଲେଖା ଯାଉଛି । ତା'ର କାରଣ ଏସବୁ ସରକାରୀ ପ୍ରୋତ୍ସାହନ ବେଶୀ ପାଉଚି । ମୋରାରଜୀ ଦେଶାଇ ମୂତ୍ର ଚିକିତ୍ସା ଉପରେ ଖୁବ୍ ବିଶ୍ୱାସ ରଖୁଥିଲେ ବୋଲି ସେ ଯେତେବେଳେ ପ୍ରଧାନମନ୍ତ୍ରୀ ହେଲେ ସେତେବେଳେ ମୂତ୍ର ଚିକିତ୍ସାର ପ୍ରଚାର ଖୁବ୍ ବଢ଼ିଗଲା । ସେ ବିଷୟରେ ବହୁ ପଣ୍ଡିତ ତାଙ୍କର ଗବେଷଣାଲବ୍ଧ ଜ୍ଞାନକୁ ଖୁବ୍ ମୋଟା ମୋଟା ବହିରେ ରଖି ପ୍ରକାଶ କଲେ । ବଜାରରେ ମୂତ୍ର ଚିକିତ୍ସକ ଯେମିତି ହୁ ହୁ ବଢ଼ିଗଲେ ତା'ର ସପକ୍ଷବାଦୀ ଚିନ୍ତା ମଧ୍ୟ ସେମିତି ବଢ଼ିଗଲା । ଏବେ ଆଉ ସେ ବହି ଦେଖିବାକୁ ମିଳୁନି । ସେ ଚିକିତ୍ସା ମଧ୍ୟ ଲୋପ ପାଇଲାଣି । ଭାରତୀୟମାନେ ସ୍ୱଭାବତଃ ମାନସିକ ଦୁର୍ବଳ ପ୍ରାଣୀ । ଯୁଗଯୁଗ ଧରି ଏମାନେ ରାଜକୀୟ ଶାସନାଧୀନ ଥିବାରୁ ସେମାନେ ତାଙ୍କ ନିଜ ମତ ପ୍ରାୟ ପ୍ରକାଶ କରି ପାରନ୍ତିନି । ତେଣୁ ଯିଏ ଯାହା କହିଲା ସେଥିରେ 'ହଁ' ମାରି ଦିଅନ୍ତି । ସେତେବେଳେ ମୂତ୍ର ଚିକିତ୍ସା ଯେମିତି ହଠାତ୍ ଲୋକପ୍ରିୟ ହେଇ ଉଠିଥିଲା ଏବେ ସେମିତି ଜ୍ୟୋତିଷ ଶାସ୍ତ୍ର, ବାସ୍ତୁଶାସ୍ତ୍ର, ଫେଙ୍ଗସୁଇ, ରୁଦ୍ରାକ୍ଷ ଚିକିତ୍ସା, ଜେମସ୍ ଚିକିତ୍ସା ବେଶ୍ ଲୋକପ୍ରିୟ ହେଇ ଉଠିଚି । ଏ ବହି ଏତେ ବିକ୍ରି ହେଉଚି ଯେ ପ୍ରକାଶକମାନେ ଏବେ ସାହିତ୍ୟ ବହିର ପ୍ରକାଶନ ବନ୍ଦ କରି ଏଥିରେ ମାତି ଉଠିଚନ୍ତି । ଓଡ଼ିଶାରେ ଏସବୁ ବହି ପାଞ୍ଚବର୍ଷ ଆଗରୁ ମୋଟେ ନଥିଲା । ଫେଙ୍ଗସୁଇ ଶବ୍ଦ ଲୋକେ

ଶୁଣି ନ ଥିଲେ । ଅଥଚ ଏଇ କେଇଟା ବର୍ଷ ଭିତରେ ତା'ର ଲୋକପ୍ରିୟତା ଶୀର୍ଷରେ ପହଞ୍ଚିଲାଣି । ବର୍ଷକ ଭିତରେ ଖଣ୍ଡେ ବହିର ୪/୫ଟା ସଂସ୍କରଣ ବଜାରରେ ଉଭାନ ହେଇ ଯାଉଛି । ୧୯୯୯ରେ ଲେଖା ଯାଇଥିବା ଖଣ୍ଡେ ବହି ଯା' ଭିତରେ ୧୧ଶ ସଂସ୍କରଣରେ ପହଞ୍ଚି ସାରିଲାଣି । ଏତେ ଲେଖକ ବି କୋଉଠୁ ଆସିଲେ କେଜାଣି । ୧୯୯୯ ପୂର୍ବରୁ ଜଣା ନଥିବା ବିଷୟରେ ହଠାତ୍ ଏତେ ଲୋକଙ୍କର ଏତେ ଅଧ୍ୟୟନ ଆସିଲା କେଉଁଠୁ । କାହିଁକି ଏତେ ଆଗ୍ରହ । ଏ ସବୁ କଥା ଭାବିଲେ ଆଶ୍ଚର୍ଯ୍ୟ ହେବକୁ ହୁଏ । ଶୁଣିବାକୁ ମିଳେ, ଏ ସବୁ ବହିର କାଟତି ଖୁବ୍ ବେଶୀ ହେଉଥିବାରୁ ଏବେ କିଛି ପ୍ରକାଶକ ଲେଖକମାନଙ୍କୁ ଅଗ୍ରୀମ ଟଙ୍କା ଦେଇ ବହି ଉତାରିବା ପାଇଁ ବସେଇ ଦଉଚନ୍ତି । ବ୍ୟବସାୟରେ ଗୋଟିଏ ନୀତି ହେଲା ଅର୍ଥ । ମଣିଷ ଯେତେବେଳେ ଅର୍ଥସର୍ବସ୍ୱ ହେଇପଡ଼େ ସେତେବେଳେ ତା' ପାଖରେ ନୀତି ଓ ନୈତିକତା ସବୁ ଅକାମୀ ହେଇପଡ଼େ ।

ଫେଙ୍ଗସୁଇ ଓ ବାସ୍ତୁଶାସ୍ତ୍ର ଯେ କେବଳ ଓଡ଼ିଶାରେ ଲୋକପ୍ରିୟ ହେଇ ଉଠିଚି ତା' ନୁହେଁ । ସାରା ଭାରତରେ ତା'ର ସ୍ଥିତି ସମାନ । ମୁଖ୍ୟତଃ ଅନ୍ୟ ଭାଷାରୁ ଆମେ ଏସବୁ ଆଣୁଚୁଁ । ଏ ଦୁଇଟି ଯାକ ଶାସ୍ତ୍ରର ମୁଖ୍ୟ ବିଷୟବସ୍ତୁ ଓ ଉଦ୍ଦେଶ୍ୟ ଗୋଟିଏ । ଏ ଦୁଇଟି ଯାକ ପାଠ ଆମ ଭାରତବର୍ଷରୁ ଉଦ୍‌ଭବ ବୋଲି କୁହାଯାଉଚି । ଅଥର୍ବ ବେଦରେ ବାସ୍ତୁଶାସ୍ତ୍ର ଓ ଫେଙ୍ଗସୁଇ କଥା ଲେଖାଅଛି ବୋଲି କୁହାଯାଉଛି । ଏକଥା ଅଛି କି ନା ଆମେ ଜାଣୁନା । ତେବେ ଅଥର୍ବ ବେଦରେ ଭାଗ୍ୟ ଓ ଶୁଭ କଥା କୁହାଯାଇଚି । ସେଇଥିରୁ ଏ କଥାଟା ଆସି ଥାଇପାରେ । ଅଗ୍ନିପୁରାଣରେ 'ବାସ୍ତୁପୁରୁଷ' କଥା କୁହାଯାଇଚି । ବାସ୍ତୁ ପୁରୁଷ ଗୋଟାଏ ଦୁଷ୍ଟ ଭୂତ ଥିଲା । ତାକୁ ମାଟିତଳେ ପୋତି ପକାଇବାରୁ ଘର କଲେ ସେ ମାଟି ତଳେ ଥାଇ ଗୋଳମାଳ କରିପାରେ ବୋଲି ଭାବି ଆମେ ବାସ୍ତୁ ପୂଜା କରୁଁ । ଦକ୍ଷିଣ ଭାରତରେ କେତେକ ବାସ୍ତୁ ଶାସ୍ତ୍ରୀ ଅଥର୍ବବେଦ ସହିତ ଅଗ୍ନିପୁରାଣ କଥା ଲେଖିଥିବା ବେଳେ ଓଡ଼ିଶାର କୌଣସି ଲେଖକ ଅଗ୍ନି ପୁରାଣ କଥା ଲେଖିଥିବା ମୋ ନଜରକୁ ଆସିନାହିଁ । କିନ୍ତୁ ଗୋଟିଏ କଥା ଏଯାଏ ବୁଝି ହେଉନାହିଁ । ସାଧାରଣତଃ ଜଣେ ଲେଖକ ବହିଟିଏ ଲେଖିବାକୁ ଯିବା ପୂର୍ବରୁ ବିଷୟ ଉପରେ ଅନେକ ପ୍ରବନ୍ଧ ଲେଖି ପ୍ରକାଶ କରିଥାଆନ୍ତି । ସେଥିରୁ ତାଙ୍କର ଜ୍ଞାନର ସୂତ୍ର ଓ ଗଭୀରତା ଜଣାପଡ଼ିଥାଏ । ତା' ଉପରେ ଆଲୋଚନା ଓ ତର୍କ ବିତର୍କ ମଧ୍ୟ ହୁଏ । କିନ୍ତୁ ଏସବୁ କ୍ଷେତ୍ରରେ ସେ ସବୁର ସୁଯୋଗ କାହାକୁ ମିଳିନାହିଁ । ଫେଙ୍ଗସୁଇ କ୍ଷେତ୍ରରେ ସେମିତି କେତେକ କଥା କୁହାଯାଇଚି । କୁହାଯାଏ ଯେ ଫେଙ୍ଗସୁଇ ଭାରତରୁ ବୌଦ୍ଧଧର୍ମୀମାନଙ୍କ ଦ୍ୱାରା ଚୀନକୁ ଗଲା । ଏବେ ସେଠୁ ପୁଣି ଏଠାକୁ ଆସିଲା । ଏହି କଥାଟି ଉପରେ ବହୁମତ ଥିବାର

ଦେଖାଯାଏ । କେହି କେହି ଫେଙ୍ଗସୁଇ ପୂରାପୂରି ଚୀନ୍‌ର ବୋଲି କହନ୍ତି । ଜଣେ ଲେଖକ ଲେଖିଚନ୍ତି ''ଫେଙ୍ଗସୁଇ ହେଉଚି ଚୀନ୍‌ର ବାସ୍ତୁ ବିଜ୍ଞାନ' । ଅଥଚ ଆଉ ଜଣେ ଇଂରାଜୀରେ ପ୍ରବନ୍ଧଟିଏ ଲେଖିଚନ୍ତି । ସେ ଲେଖିଚନ୍ତି -''Feng shui is a cultural heritage of the chinese, which was born in India and spread in China by the Budhists.''

ତେବେ ସେ ଯା ହେଉ, ବାସ୍ତୁଶାସ୍ତ୍ର ଓ ଫେଙ୍ଗସୁଇ ଭିତରେ ଅନେକ ସ୍ଥାନରେ ଲେଖକମାନଙ୍କର ମତରେ ପାର୍ଥକ୍ୟ ଥିବାର ଦେଖାଯାଏ । ସେ ପାର୍ଥକ୍ୟ ଭିତରେ କୋଉଟା ସତ୍ୟ ବା ବିଜ୍ଞାନସମ୍ମତ ତାହା ଜଣାପଡୁ ନାହିଁ । ବାସ୍ତୁଶାସ୍ତ୍ରୀମାନେ କହନ୍ତି ବାସ୍ତୁଶାସ୍ତ୍ରର ନିୟମ ଅନୁଯାୟୀ ଘର ତିଆରି ହେଇ ଥିଲେ ତା'ର କିଛି ଅଂଶ ଭାଙ୍ଗି ତାକୁ ଆଉ ଥରେ ତିଆରି କରିବାକୁ ହୁଏ । କିନ୍ତୁ ଫେଙ୍ଗସୁଇର ନିୟମରେ ଘର ଭାଙ୍ଗିବା ଦରକାର ନାହିଁ । ଖାଲି ଦିଗ ଅନୁସାରେ ଠାକୁର ଘରକୁ ରୋଷେଇଘର ଓ ପାଇଖାନାକୁ ଅମାରଘର କରିଦେଲେ ସବୁ ଅଶୁଭଗୁଡାକ ଶୁଭ ହେଇଯାଏ । ବାସ୍ତୁଶାସ୍ତ୍ରର ନିୟମ ଅନୁସାରେ ଉତ୍ତରପୂର୍ବରେ ଶକ୍ତିର ଆଧାର ଥିବାରୁ ସେ ଦିଗକୁ ଘରର ଦୁଆର ମୁହଁ କରିଦେଲେ ଶୁଭ । କିନ୍ତୁ ଫେଙ୍ଗସୁଇ ଅନୁସାରେ ଦକ୍ଷିଣ ପୂର୍ବକୁ ଦରଜା ହେବ । ତେବେ ଆମେ କୋଉଟାକୁ ମାନିବା ? ଉଭୟଙ୍କୁ ସନ୍ତୁଷ୍ଟ କରିବାକୁ ଦୁଇପଟେ ଦୁଇଟା ଦରଜା କରିବା ? ଯଦି ଏ ଦୁଇପଟେ ରାସ୍ତା ନଥିବ ତେବେ ପଛପଟେ ଆଉ ଦୁଇଟା ଦରଜା କରିବା କି ? ବାସ୍ତୁ କହେ ଅଗ୍ନିକୋଣରେ ଚୁଲି ରହିବା ଉଚିତ୍ । ଅଥଚ ଫେଙ୍ଗସୁଇ କହେ ଦକ୍ଷିଣରେ ରହିଲେ ଭଲ । ଓଡ଼ିଆମାନେ କୋଉଟାକୁ ମାନିବେ ? ଫେଙ୍ଗସୁଇ ଯାହା କହେ ସେଗୁଡ଼ିକ ହେଲା (୧) ପିଲାର ବା ଖମ୍ବ ଦ୍ୱାରା ନିର୍ମିତ ଘର ବର୍ଜନୀୟ, (୨) ସବା ଉପର ମହଲାରେ ଘର ରଖନାହିଁ, (୩) ଡବଲ ବେଡରେ ଦୁଇଟା ଅଲଗା ଗଦି ଅଶୁଭ, (୪) ତିନି ଗୋଡ଼ିଆ ବେଙ୍ଗ ଓ ହସକୁରା ବୃଦ୍ଧ ଶୁଭ ଓ ସୌଭାଗ୍ୟପ୍ରଦ, (୫) ଚୀନ୍ ଦେଶୀୟ ସ୍ୱର୍ଣ୍ଣ ରଙ୍ଗର ତିନୋଟି ମୁଦ୍ରାକୁ ନାଲି ସୂତାରେ ବାନ୍ଧି ମନିପର୍ସରେ ରଖିଲେ ଆୟ ବୃଦ୍ଧି ହୁଏ, (୬) ଦୋକାନର ପ୍ରବେଶ ଦ୍ୱାରରେ ଦର୍ପଣ ରଖିଲେ 'ଶୁଭଶକ୍ତି' ଗୁଡିକ ଦର୍ପଣରେ ପ୍ରତିଫଳିତ ହୋଇ ବାହାରକୁ ପଳାଏ, (୭) ଗାୟତ୍ରୀ ମନ୍ତ୍ର ଉଚ୍ଚାରଣ କରନ୍ତୁ ବା କ୍ୟାସେଟ୍ ବଜାନ୍ତୁ । (ଫେଙ୍ଗସୁଇ ଯଦି ଚୀନ୍‌ର ତେବେ ସେଥିରେ ଗାୟତ୍ରୀ ମନ୍ତ୍ର କଥା ମଧ୍ୟ ଅଛି ?) ଏ ସବୁ କଥା ଏତକରେ ସରେ ନାହିଁ । ପଢ଼ାଘରେ ଟେବୁଲର ଦିଗ ପରିବର୍ତ୍ତନ କଲେ ପିଲାମାନଙ୍କ ଧୀଶକ୍ତି ବଢ଼େ ଇତ୍ୟାଦି ଇତ୍ୟାଦି । ଜଣେ ଲେଖକ ଲେଖିଚନ୍ତି ଫେଙ୍ଗସୁଇର ଜିନିଷଗୁଡ଼ିକ ଅନ୍ୟାନ୍ୟ ଦୋକାନରୁ ନ କିଣି କେବଳ ଫେଙ୍ଗସୁଇ

ଦୋକାନରୁ କିଣନ୍ତୁ । ତିନି ଗୋଡ଼ିଆ ବେଙ୍ଗ ଅନ୍ୟ ଦୋକାନରୁ ନେଲେ ଅଶୁଭ ହେଉଥିବ ।

ଏହି ବ୍ୟବସାୟିକ ବୁଦ୍ଧି ଅନ୍ୟତ୍ର କିପରି ବ୍ୟବହାର କରାଯାଇଛି ଦେଖାଯାଉ । ଏବେ ଫେଙ୍ଗସୁଇର 'ଗୁଡ୍‌ଲକ୍ ଶାଢ଼ି' ବଜାରରେ ମିଳୁଛି । ଏସବୁ ଖୁବ୍ ବଡ଼ ବଡ଼ ହୋଟେଲରେ ଅଳ୍ପଦିନ ପାଇଁ ବିକ୍ରି ହୁଏ । ସେ ଶାଢ଼ିର ବିଭିନ୍ନ ନାଁ ରହିଛି । ତା'ର ଉପକାରିତା କଥା ଯାହା ବିଜ୍ଞାପନରେ ଲେଖା ଯାଇଥିଲା ତାକୁ ପଢ଼ିଲେ ମୁଣ୍ଡ ବୁଲେଇ ଦିଏ । ମାତ୍ର କେତୋଟି ଉଦାହରଣ ଦେଉଚି । (୧) ଶାଢ଼ିର ନାଁ 'ଜୀବନ ସମୃଦ୍ଧି' । ସେଥିରେ ତିନିଗୋଡିଆ ବେଙ୍ଗ ବା ପୋନିକ୍ସ ଚଢ଼େଇର ଛବି ଥିବ । ତା'ର ଉପକାର - ସୁନିଶ୍ଚିତ ଅର୍ଥ ପ୍ରାପ୍ତି, ଇଚ୍ଛାପୂରଣ ଓ ପ୍ରେମ ଓ ପ୍ରଣୟରେ ସଫଳତା, ବିବାହ ତ୍ୱରାନ୍ୱିତ । (୨) ଶାଢ଼ିର ନାଁ 'ଗୋଲଡେନ ଡ୍ରାଗନ' । ସେଥିରେ ପ୍ରେମପକ୍ଷୀ ଓ ଡ୍ରାଗନର ଛବି ଥିବ । ଉପକାର - ନାରୀଶକ୍ତିକୁ ଜାଗ୍ରତ କରାଏ, ସୁପ୍ତ କାମନା ଓ ବାସନା ଫଳବତୀ ହୁଏ ଓ ପ୍ରଣୟରେ ସାଫଲ୍ୟ । (୩) ଶାଢ଼ିର ନାଁ 'ଆଲୋକ ଦିଶାରୀ' । ସେଥିରେ ତ୍ରିଶୂଳ ଓ ସ୍ୱସ୍ତିକ ଛବି ଥିବ । ଉପକାର - ରୂପଲାବଣ୍ୟ ଓ ବ୍ୟକ୍ତିତ୍ୱର ବିକାଶ । ଏହି ନଅ ପ୍ରକାର ଶାଢ଼ିର ବିଜ୍ଞାପନରେ ଏକଥା ମଧ୍ୟ ଲେଖାଅଛି ଯେ ଶାଢ଼ିର ଉପକାରିତା ଲୋକଙ୍କ ବିଶ୍ୱାସ ଉପରେ ନିର୍ଭର କରେ । ତେଣୁ ଦୋକାନୀ କିମ୍ବା ପ୍ରସ୍ତୁତକାରୀ ତା' ପାଇଁ ଦାୟୀ ହେବେ ନାହିଁ । ତା'ର ଅର୍ଥ ଏଇଆ ଯେ, ଜୀବନ ସମୃଦ୍ଧି ଶାଢ଼ି ପିନ୍ଧିଲା ପରେ ତାଙ୍କୁ ଯଦି ସଂଗେ ସଂଗେ କେହି ପ୍ରେମ ନିବେଦନ ନ କରେ ତେବେ ସେଥିପାଇଁ ଦୋକାନୀ ଦାୟୀ ହେବ ନାହିଁ । କିନ୍ତୁ ଯଦି ଏକାଧିକ ବ୍ୟକ୍ତି ପ୍ରେମ ନିବେଦନ କରନ୍ତି ? ସେ ଭଦ୍ରମହିଳା ଥାନାକୁ ଯିବେ ନା ପୁଣି ଦୋକାନୀ ପାଖକୁ ଯିବେ ?

ଫେଙ୍ଗସୁଇ ଏହିପରି ବହୁ ଅଯୌକ୍ତିକ ଏବଂ ଅଜବ ଯୁକ୍ତିର ସମାହାର । ତା' ପଛରେ କୌଣସି ବୈଜ୍ଞାନିକ ଯୁକ୍ତି ନାହିଁ । କିନ୍ତୁ ଆମେ ଭାରତୀୟମାନେ କେବେ ବି ଏସବୁ କଥାକୁ ଚାଲେଞ୍ଜ କରି ନାହୁଁ । ଆମେ କେବେ ପଚାରି ନାହୁଁ ଏସବୁ ପଛରେ କିଛି ସତ୍ୟତା ଅଛି କି ? କେବଳ କଞ୍ଜ୍ୟୁମେରିଜମ ବଢ଼େଇବା ଛଡ଼ା ଏହାର ଆଉ କ'ଣ ଉଦ୍ଦେଶ୍ୟ ଥାଇପାରେ ? ଯାହାର ଅନ୍ୟନାମ ଠକେଇ ।

❑

('ସମୟ'-୧୦.୧୦.୨୦୦୪)

# ପୁରସ୍କାରର ପ୍ରେକ୍ଷାପଟ

ଦିନ ଥିଲା, ଯେତେବେଳେ ଯେ କୌଣସି ପୁରସ୍କାରକୁ ସମାଜରେ ଯଥେଷ୍ଟ ମାନ୍ୟତା ମିଳୁଥିଲା । ଗୋଟାଏ ପୁରସ୍କାର ଏକ ସାମାଜିକ ପ୍ରତିଷ୍ଠା ଆଣି ଦେଉଥିଲା ଏବଂ ଲୋକେ ପୁରସ୍କୃତ ବ୍ୟକ୍ତିଙ୍କୁ ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ।

କିନ୍ତୁ କିଛି ଲୋକ ଥାଆନ୍ତି ଯେଉଁମାନେ ପୁରସ୍କାରର ଛାଇ ମାଡ଼ନ୍ତି ନାହିଁ । ପୁସ୍କାରର ନାଁ ଶୁଣିଲେ ସେମାନେ ଆଡ଼େଇ ହୋଇ ଯାଆନ୍ତି । ପୁରସ୍କାରକୁ ସେମାନେ ଅନୁଚିତ ପ୍ରଶଂସା ବୋଲି ମନେକରନ୍ତି ଏବଂ ସେସବୁ ପ୍ରଶଂସା ସେମାନଙ୍କ ସାମାଜିକ କର୍ତ୍ତବ୍ୟ ପ୍ରତି ଅଶ୍ରଦ୍ଧା ସୃଷ୍ଟି କରିବ ଭାବି ତା'ଠୁ ଦୂରେଇ ରହନ୍ତି । ସେମାନେ କହନ୍ତି ମୁଁ ଯାହା କରିଛି ତାହା ମୋର କର୍ତ୍ତବ୍ୟ । ବରଂ ମୁଁ ସେତକ କରି ନ ଥିଲେ ମୋର କର୍ତ୍ତବ୍ୟ ପ୍ରତି ଅବହେଳା କରିଛି ବୋଲି ମନେ କରନ୍ତି । ତେଣୁ ସେଥିପାଇଁ ପୁରସ୍କାରର ଆବଶ୍ୟକତା ନାହିଁ । ବରଂ ମୋର କର୍ତ୍ତବ୍ୟ କରିବା ପାଇଁ ମୋତେ ସୁଯୋଗ ଦିଅନ୍ତୁ ।

ମହାତ୍ମା ଗାନ୍ଧିଙ୍କୁ କେହି କେବେ ପୁରସ୍କାର ଦେଇ ନାହାନ୍ତି । 'ଦେଇ ନାହାନ୍ତି' ନ କହି ବରଂ 'ଦେଇପାରି ନାହାନ୍ତି' କହିବା ଠିକ୍ ହେବ । କାରଣ ମହାତ୍ମା ଗାନ୍ଧି ଭାବୁଥିଲେ ପୁରସ୍କୃତ ବ୍ୟକ୍ତିଟି କେତେକାଂଶରେ ପୁରସ୍କାର ଦେଉଥିବା ବ୍ୟକ୍ତି ବା ଅନୁଷ୍ଠାନ ଠାରେ ସଂକୁଚିତ ହୋଇଯାଏ । ସେଠି ପୁରସ୍କୃତ ବ୍ୟକ୍ତିଟି କିଛି ପରିମାଣରେ ତା'ର ନିଜର ସ୍ୱାଧୀନତା କ୍ଷୁଣ୍ଣ କରାଏ । ତା'ଛଡା ପୁରସ୍କୃତ ବ୍ୟକ୍ତି ମଧ୍ୟ କେତେକାଂଶରେ ଅହଂକାରୀ ହୋଇଉଠେ । ଆତ୍ମ ଅହଂକାର ବା ଗର୍ବକୁ ଗାନ୍ଧିଜୀ ଖୁବ୍ ଘୃଣା କରୁଥିଲେ । ବିଦ୍ୱାନ, ପଣ୍ଡିତ, ଜ୍ଞାନୀ ଓ ଗୁଣିଜନମାନେ ସମସ୍ତେ କାଳେ ତାଙ୍କୁ ଅହଂକାର ସ୍ପର୍ଶ କରିବ ବୋଲି ପୁରସ୍କାର ପାଖ ମାଡ଼ନ୍ତି ନାହିଁ ।

ସୁଭାଷ ବୋଷ ବଞ୍ଚିଥିଲେ କେବେହେଲେ 'ଭାରତ ରତ୍ନ' ଉପାଧି ଗ୍ରହଣ କରି ନ ଥାନ୍ତେ । ସେ ସେ ସବୁକୁ ଘୃଣା କରୁଥିଲେ । କିନ୍ତୁ ରବୀନ୍ଦ୍ରନାଥ ସେପରି ନ ଥିଲେ । ସେ ପୁରସ୍କାରକୁ ନାପସନ୍ଦ କରୁ ନ ଥିଲେ । ତାଙ୍କ ମତରେ ଜଣେ କବି କି ସାହିତ୍ୟିକର ଏକମାତ୍ର ସାମାଜିକ ପ୍ରତିଷ୍ଠା ହେଲା ପୁରସ୍କାର । ଯୁଗେ ଯୁଗେ କବିମାନେ ଯଶ ଆଷା

କରି ଥାଆନ୍ତି । ଆଗ କାଳରେ କେବଳ କବିମାନଙ୍କୁ ହିଁ ରାଜ ଦରବାରରେ ସମ୍ମାନ ମିଳୁଥିଲା । ପ୍ରଚୁର ପୁରସ୍କାର ଦିଆଯାଉଥିଲା । ବେଳେବେଳେ ସେମାନଙ୍କୁ ଜମିବାଡ଼ି ମଧ୍ୟ ଦିଆଯାଉଥିଲା । କବିଟିଏ ଏଥିରେ ତା'ର ଗୁଜରାଣ ମେଣ୍ଟାଇବା ସଂଗେ ସଂଗେ ସମାଜରେ ମର୍ଯ୍ୟାଦାର ସହ ବସବାସ କରିପାରୁଥିଲା । ସେଇ ଦୃଷ୍ଟିରୁ ବୋଧେ ରବୀନ୍ଦ୍ରନାଥଙ୍କ କବି ହୃଦୟ କେବେ ପୁରସ୍କାର ବା ଉପାଧିକୁ ମନାକରି ନାହିଁ । ସେ ତାକୁ ସାଦରେ ଗ୍ରହଣ କରିଛି ।

ସ୍ୱାଧୀନତା ପରେ କିନ୍ତୁ ପୁରସ୍କାରର ପ୍ରେକ୍ଷାପଟ ଅନେକ ବଦଳିଗଲା । ଦ୍ରୁତ ବଦଳିଗଲା ମଧ୍ୟ । ଏତେ ବଦଳିଗଲା ଯେ, ଲୋକେ ପୁରସ୍କାର ପାଇଁ ବ୍ୟସ୍ତ ହୋଇ ପଡ଼ିଲେ । ପୁରସ୍କାର ପାଇଁ ଲବି ସୃଷ୍ଟି ହେଲା । ପୁରସ୍କାର ପ୍ରତିଯୋଗିତାର ପରିଧି ଏତେ ବଢ଼ିଗଲା ଯେ, ଲୋକେ ଭୋକଶୋଷ ଭୁଲି ଟଙ୍କାଥଳି ଧରି ଏବଂ ଫୁଲମାଳ ନେଇ ଦିନରାତି ଘୂରି ବୁଲିଲେ ଏବଂ ଯେ କୌଣସି ଲୋକଙ୍କୁ ଦେଖିଲେ କହିଲେ 'ଏଇଟା ମୋ ବେକରେ ପକେଇ ଦିଅ ।' ସବୁଠାରୁ ଆଶ୍ଚର୍ଯ୍ୟର କଥା - ସ୍ୱାଧୀନତା ପୂର୍ବରୁ ଯେଉଁ ସଂଗ୍ରାମୀମାନେ ଗାନ୍ଧିଙ୍କ ଆଦର୍ଶକୁ ମହାନ ବୋଲି କହୁଥିଲେ ସେଇମାନେ ସ୍ୱାଧୀନତା ପରେ ନିଜପାଇଁ ସବୁ 'ସମ୍ମାନ' ଦାବି କଲେ ଏବଂ ସେଥିପାଇଁ ମଧ୍ୟ ଧରାଧରି କରିବାକୁ ଆରମ୍ଭ କଲେ । କୌଣସି ପ୍ରକାରେ ଗୋଟେ ସମ୍ମାନ ପାଇଗଲା ପରେ ନିଜକୁ ଗଡ଼ ଜିଣିଲା ପରି ମନେକଲେ ଏବଂ ତା'ପରେ ନିଜେ ସମାଜରେ ଜଣେ ସମ୍ମାନିତ ତଥା ପ୍ରତିଷ୍ଠିତ ବ୍ୟକ୍ତି ଏବଂ ସମାଜକୁ ସେମାନଙ୍କ ଦାନ ଅତୁଳନୀୟ କହି ପ୍ରତିବଦଳରେ ସମାଜ ଠାରୁ, ସରକାର ଠାରୁ ତା'ର ମୂଲ୍ୟ ମଧ୍ୟ ପାଇଲେ । ସେ ମୂଲ୍ୟ ଏବେ ବଜାର ଦର ପରି ଆକାଶଛୁଆଁ ହେଲାଣି ।

କବି ଓ ଲେଖକମାନେ ଆଉ ପାଦେ ତଳକୁ ଓହ୍ଲେଇ ଗଲେ । ସେମାନେ ପାଦେ ପାଦେ କରି ଅନେକ ତଳକୁ ଓହ୍ଲେଇ ଗଲେ । ଦିନକୁ ଦିନ ସେ ପ୍ରତିଯୋଗିତାରେ ଦୌଡ଼ ପାଇଁ କେତେ ସୂକ୍ଷ୍ମ ଉପାୟମାନ ବାହାରୁଛି, ଥରେ ଘଟଣାଟି ଏମିତି ଭାବରେ ଘଟିଥିଲା ।

ସହରର ଜଣେ ଲେଖକ, ସଂଗ୍ରାମୀ କବି ଯେ କି ତାଙ୍କ ଜୀବନରେ କବିତା ମାଧ୍ୟମରେ ଅନେକ ଲଢେଇ କରିଛନ୍ତି ବୋଲି କହନ୍ତି, ହଠାତ୍ ଖବର ପାଇଲେ ଯେ ସେ ରାଜ୍ୟ ସାହିତ୍ୟ ଏକାଡ଼େମୀର ଜଣେ ସାଧାରଣ ସଦସ୍ୟ ଭାବେ ମନୋନୀତ ହୋଇଛନ୍ତି । ଏହା ତାଙ୍କ ପକ୍ଷେ ଗୋଟାଏ ବଡ଼ ସୁଯୋଗ ବୋଲି ସେ ମନେକଲେ । ସେ ତାଙ୍କର ଜଣେ ବନ୍ଧୁଙ୍କୁ ଡାକି କହିଲେ - ଏଇ ଦେଖ ମୋତେ ଏବେ ଅନେକ ଲୋକ

ଟେଲିଫୋନ୍‌ରେ ଅଭିନନ୍ଦନ ଜଣେଇ ସାରିଲେଣି । ତା'ଛଡ଼ା ସେମାନେ ମଧ୍ୟ ତାଙ୍କ ଅନୁଷ୍ଠାନ ତରଫରୁ ସମ୍ବର୍ଦ୍ଧନା ଜଣେଇବାକୁ ମତପ୍ରକାଶ କଲେଣି । ଏ ପ୍ରକାର ପ୍ରସ୍ତାବ ମୋ ଠାକୁ ଏତେ ଆସିଲାଣି ଯେ, ମୁଁ ଏ ମାସକ ଭିତରେ ସେମାନଙ୍କୁ ଗୋଟିଏ ସନ୍ଧ୍ୟା ମଧ୍ୟ ଦେଇ ପାରୁନାହିଁ । ତମେ ମୋତେ ଟିକିଏ ସାହାଯ୍ୟ କରନ୍ତ ନାହିଁ ? ତମେ ଯଦି ସେମାନଙ୍କୁ ଡାକି ଗୋଟାଏ ମିଳିତ ଅନୁଷ୍ଠାନରେ ମୋତେ ସମ୍ବର୍ଦ୍ଧନା ଦେବାକୁ କହନ୍ତ ତେବେ କେତେ ସୁନ୍ଦର ହୁଅନ୍ତା ।

ଆମ କବି ଓ ସାହିତ୍ୟିକମାନଙ୍କୁ ପୁରସ୍କାରର ନିଶା ଏତେ ଘାରିଛି ଯେ, ସେମାନେ ଏବେ ରାଜସଭାର କବିଙ୍କ ପରି କେବଳ ସ୍ତୁତିଗାନର ସାହିତ୍ୟ ସୃଷ୍ଟି କରୁଛନ୍ତି । ସମାଜରେ ଥିବା ବାସ୍ତବ ଜନଜୀବନର ଚିତ୍ରସବୁ ପଛକୁ ଆସିଗଲାଣି । କବିମାନେ ସେ କଥା ପ୍ରାୟ ଭୁଲିଗଲେଣି । କିଏ କେତେ କାହାକୁ ସ୍ତୁତି କରିପାରିବ ସେଥିପାଇଁ କବିମାନେ ଟିଭିର ଶହେ ଚାନେଲ ପରି ମିଡ଼ିଆର ଯେତେ ଚାନେଲ ଅଛି ତାକୁ ଅଧିକାର କରିବାକୁ ବ୍ୟସ୍ତ ରହିଲେଣି । ଯିଏ ଯେତେ ଚାନେଲ ଦଖଲ କଲା ତା'ର ସେତେ ଲାଭ ।

ଆମ ଦେଶର କବି ଓ ଲେଖକମାନଙ୍କର ଏ ପୁରସ୍କାର ନିଶ କଥାଟା ଏବେ ଦେଶ ବାହାରକୁ ମଧ୍ୟ ମାଡ଼ି ଗଲାଣି । ପୃଥିବୀର ଅନ୍ୟ ଦେଶମାନେ କିଏ କେତେ ଏକଥା ଜାଣିଛି କେଜାଣି କିନ୍ତୁ ଆମେରିକା ସବୁଠୁ ବେଶି ଜାଣିଛି । ସେଠାକାର ବ୍ୟବସାୟ ଗୋଷ୍ଠୀ ଏବେ ଏହି ନିଶାରୁ ସବୁଠୁ ବେଶି ଲାଭ ଉଠାଇବାକୁ ଚାହୁଁଛି । ସେମାନେ ଚତୁର ବ୍ୟବସାୟୀ । ଯାହାର ଯୋଉଠି ବେଶି ଡିମାଣ୍ଡ ଥିବାର ଦେଖନ୍ତି ତାକୁ ସେମାନେ ସେଠାକୁ ସେତେବେଶି ସପ୍ଲାଇ କରିବାକୁ ଆରମ୍ଭ କରି ଦିଅନ୍ତି । ତେଣୁ ଏବେ ଆମ କବି, ଲେଖକ (କେତେବେଳେ କେତେବେଳେ ସମାଜସେବୀ ମଧ୍ୟ) ଓ ସାହିତ୍ୟିକ ଗୋଷ୍ଠୀଙ୍କ ମାର୍କେଟ ଆମେରିକୀୟ ପୁରସ୍କାରରେ ପ୍ଲାବିତ । ଆଉ ଖୋଜିବା ଲୋଡ଼ିବା ଦରକାର ନାହିଁ । ଆପଣଙ୍କ ଘରେ ଅଚାନକ ଆମେରିକାରୁ ସେମାନଙ୍କ ଭାରତୀୟ ଏଜେଣ୍ଟମାନଙ୍କ ମାଧ୍ୟମରେ ସୁନ୍ଦର ଓ ସୁଦୃଶ୍ୟ ଛାପା ଚିଠି ଓ ଫର୍ମମାନ ଆସି ପହଞ୍ଚିଯାଏ । ସେଥିରେ ଲେଖାଥାଏ ଆପଣଙ୍କ କାମରେ ଆମେ ମୁଗ୍ଧ ହୋଇ ଆପଣଙ୍କୁ ଆମେ ପୁରସ୍କାରଟିଏ ଦେବୁଁ । ଏତେ ଡଲାର ପଠାନ୍ତୁ ଏବଂ ସୁଶୋଭନ ପୁରସ୍କାରଟିଏ ପାଆନ୍ତୁ । ପୁରସ୍କାରର ଶ୍ରେଣୀବିଭାଗ ମଧ୍ୟ ଅଛି । ପ୍ରଥମଶ୍ରେଣୀର ପୁରସ୍କାର ପାଇଁ ଅଧିକ ଦେବାକୁ ପଡ଼େ । ଚିଠିରେ ଏକଥା ମଧ୍ୟ ଲେଖାଥାଏ ଯେ ଦତ୍ତ ଫର୍ମରେ ଆପଣଙ୍କ ବନ୍ଧୁମାନଙ୍କ ନାଁ ମଧ୍ୟ ଆପଣ ସୁପାରିଶ କରନ୍ତୁ । ସେମାନେ କଅଣ କରିଛନ୍ତି ସେସବୁ ଆମର ଆବଶ୍ୟକ ନାହିଁ । କେବଳ ସେମାନଙ୍କ ନାଁ ଓ ଠିକଣା ଆମର ଦରକାର । ସେତକ

ଆମଠାକୁ ପଠାଇ ଆପଣ ନିଜକୁ ପୁରସ୍କୃତ କରିବାରେ ସାହାଯ୍ୟ କରନ୍ତୁ । ଆପଣ ଯଦି ଟିକିଏ ସ୍ୱାଭିମାନୀ ଏବଂ ଆପଣ ଯଦି ଏ ଚିଠିର ଉତ୍ତର ନ ଦିଅନ୍ତି ସେମାନେ ପୁଣି ଲେଖିବେ । ଆପଣ ଯଦି ତିନି ଚାରିଟି ଚିଠିର ଉତ୍ତର ନ ଦିଅନ୍ତି ତେବେ ସେମାନେ ଭାବିବେ ଯେ ଆପଣ ଆଉ ଏକ ବଡ଼ ଧରଣର ପୁରସ୍କାର ଆଶା କରୁଛନ୍ତି । ଧରନ୍ତୁ Man of the year ବା ଏମିତି କିଛି । ସେତେବେଳେ ସେମାନେ ଭାରତର ଅନ୍ୟ କୌଣସି ଏକ ବୃହତ ସହରରେ ଥିବା ଅନ୍ୟ ଜଣେ ଏଜେଣ୍ଟଙ୍କ (ଓଡ଼ିଆରେ ତାକୁ ଦଲାଲ କୁହାଯାଇପାରେ) ମାଧ୍ୟମରେ ଆଉ ଏକ ଚିଠି ପଠାଇବେ । ସେଥିରେ ଆହୁରି ଅନେକ ଲୋଭନୀୟ କଥା ଲେଖାଥିବ । ମୋଟ ଉପରେ ସେମାନେ ଆପଣଙ୍କୁ ପୁରସ୍କାରଟିଏ ନ ଦେଇ ଛାଡୁ ନାହାନ୍ତି । ଏ ଧରଣର ପୁରସ୍କାରର ମୂଲ୍ୟ ଆହୁରି ବେଶି ।

କିଛିଦିନ ତଳେ ଓଡ଼ିଶାରେ ଗୋଟିଏ ଅଭିନବ ଉପାୟରେ ପୁରସ୍କାର ଦିଆଯାଉଥିଲା । ଏବେ ସେସବୁ ଆଉ ଅଛି କି ନା ମୁଁ ଜାଣେ'ନା । ଥରେ ଗୋଟିଏ ଅନୁଷ୍ଠାନ ତିନିଜଣ ବିଶିଷ୍ଟ ସାହିତ୍ୟିକଙ୍କୁ ପୁରସ୍କାର ଦେବ ବୋଲି ଘୋଷଣା କଲା । ସେମାନଙ୍କ ପାଖକୁ ଚିଠି ମଧ ଗଲା । ସେଥିରେ ଲେଖାଗଲା ଯେ, ଅମୁକ ତାରିଖରେ ଅମୁକ ସ୍ଥାନରେ ଆପଣ ଉପସ୍ଥିତ ରହି ମାନ୍ୟବର ପ୍ରଧାନ ଅତିଥିଙ୍କୁ (ଧରାଯାଉ ସେ ଜଣେ ମନ୍ତ୍ରୀ) ଠାରୁ ପୁରସ୍କାର ଗ୍ରହଣ କରିବେ । ଏଥିରେ ବିଚାରା ଲେଖକ କୃତକୃତ୍ୟ ହୋଇ ପଡ଼ିବା ସଂଗେ ସଂଗେ ନିଜକୁ ଯେତେଦୂର ସମ୍ଭବ ଉତ୍ତମ ପୋଷାକରେ ସଜେଇ ନିର୍ଦ୍ଧାରିତ ସମୟର ଯଥେଷ୍ଟ ପୂର୍ବରୁ ସଭାସ୍ଥଳରେ ପହଞ୍ଚିବେ । ସେତେବେଳେ ଅନୁଷ୍ଠାନର ସଭାପତି ଆପଣଙ୍କୁ ନିଭୃତରେ ଡାକି କହିବେ ଯେ, କ୍ଷମା କରନ୍ତୁ, କେତେକ ଅନିବାର୍ଯ୍ୟ କାରଣ ବଶତଃ ଆମେ ଆବଶ୍ୟକ ଅର୍ଥ ସଂଗ୍ରହ କରିପାରିଲୁ ନାହିଁ । ତେଣୁ ଆଜି ପ୍ରଧାନ ଅତିଥି ଆର୍ଥିକ ପୁରସ୍କାରର ଯେଉଁ ମୁଦା ଲଫାପାଟା ଆପଣଙ୍କ ହାତକୁ ବଢ଼ାଇ ଦେବେ ସେଥିରେ ଟଙ୍କା ବଦଳରେ କିଛି ଖାଲି କାଗଜ ଥିବ । ଆପଣ ସେଥିପାଇଁ ବ୍ୟସ୍ତ ହେବେ ନାହିଁ କିମ୍ବା ଲଫାପାଟିକୁ ସମସ୍ତଙ୍କ ଆଗରେ ଖୋଲିବେ ନାହିଁ । କିନ୍ତୁ ଆମେ ପ୍ରତିଶ୍ରୁତି ଦେଉଛୁଁ ଆସନ୍ତା ପନ୍ଦର ଦିନ ଭିତରେ ଆପଣଙ୍କ ପାଖକୁ ଟଙ୍କା ପଠାଇ ଦେବୁଁ । ତା' ପୂର୍ବରୁ ଅବଶ୍ୟ ଆମେ ଆପଣଙ୍କ ନାଁ ସମ୍ବାଦପତ୍ରରେ ଫଟୋ ସହ ପ୍ରକାଶ କରିଦେବୁଁ ।

ଓଡ଼ିଶାରେ ଏ ପ୍ରକାର ପୁରସ୍କାର ବ୍ୟବସାୟ ଚାଲିଥିଲା ବେଳେ କେରଳରେ ସଂପୂର୍ଣ୍ଣ ଭିନ୍ନ ଘଟଣାଟିଏ ଘଟିଛି । ସେଠାକାର ଶ୍ରୀ ଥମାସ୍ କୋଚେରୀ ନାମକ ପ୍ରଖ୍ୟାତ

ପରିବେଶ୍‌ବିଦ୍ ୫୫ ଲକ୍ଷ ଟଙ୍କାର ଗୋଟିଏ ଆନ୍ତର୍ଜାତିକ ସମ୍ମାନକୁ ପ୍ରତ୍ୟାଖ୍ୟାନ କରିଦେଇଛନ୍ତି । ଶ୍ରୀ କୋଚେରୀ 'ନ୍ୟାସନାଲ ଫିସ୍ ୱାର୍କର୍ସ୍ ଫେଡେରେସନ୍ ଅଫ୍ ଇଣ୍ଡିଆ'ର ପ୍ରତିଷ୍ଠାତା । ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କରେ ମାଛ ଧରି ଜୀବିକା ଅର୍ଜନ କରୁଥିବା ଲୋକମାନେ ଯେତେବେଳେ ବିଶିଷ୍ଟ ଶିଳ୍ପପତିମାନଙ୍କ ଦ୍ୱାରା ଆଧୁନିକ ମାଛଧରା ପ୍ରଣାଳୀ ପ୍ରବର୍ତ୍ତନ ହେବା ଫଳରେ ନିଜର ଉପାର୍ଜନ ହରାଇଲେ ଏବଂ ତା' ସହିତ ଉପକୂଳର ସମୁଦ୍ର ନାନା ଭାବରେ ପ୍ରଦୂଷିତ ହେଲା ସେତେବେଳେ ଶ୍ରୀ କୋଚେରୀ ତା' ବିରୋଧରେ ଆନ୍ଦୋଳନ କଲେ ଏବଂ ତାକୁ ଆନ୍ତର୍ଜାତିକ ରୂପରେଖ ଦେବା ପାଇଁ ଦିଲ୍ଲୀରେ ୩୨ଟି ଦେଶକୁ ନେଇ ଗୋଟାଏ ସେମିନାରର ଆୟୋଜନ କଲେ । ଠିକ୍ ସେତିକି ବେଳେ ମାଛଧରା କାମରେ ବ୍ୟସ୍ତଥିବା ଆମେରିକାର 'ସନ୍ ଅଏଲ୍' କମ୍ପାନୀ ଦ୍ୱାର ପ୍ରତିଷ୍ଠିତ 'ଏକ ପ୍ରଖ୍ୟାତ ଅନୁଷ୍ଠାନ' ତାଙ୍କୁ ଏହି ପୁରସ୍କାର ଦେବା କଥା ଘୋଷଣା କଲେ । ପଞ୍ଚାବନ ଲକ୍ଷ ଟଙ୍କାର ପୁରସ୍କାରକୁ ପ୍ରତ୍ୟାଖ୍ୟାନ କରିବା କମ୍ କଥା ନୁହେଁ । ଯେଉଁମାନେ ଅର୍ଥ ଦେଇ ବା ଲବି କରି ପୁରସ୍କାର ଯୋଗାଡ଼ କରନ୍ତି ସେମାନେ ଏ କଥା ଶୁଣିଲେ କଅଣ କହିବେ ମୁଁ ଜାଣେଁନା । କିନ୍ତୁ ଶ୍ରୀ କୋଚେରୀ ତାକୁ ପ୍ରତ୍ୟାଖ୍ୟାନ କରି କହିଲେ - 'A pollutor giving an award for marine conservation is a contradiction'

ଶିଳ୍ପପତି ତଥା ସ୍ୱାର୍ଥାନ୍ୱେଷୀମାନେ ଚିରକାଳ ସେମାନଙ୍କ ସ୍ୱାର୍ଥରକ୍ଷା ପାଇଁ ବିଭିନ୍ନ ଉପାୟରେ ଜାଲ ବିଛେଇ ସେମାନଙ୍କ ସ୍ୱାର୍ଥ ବିରୋଧରେ କାମ କରୁଥିବା ଲୋକଙ୍କୁ ଧରିବାକୁ ଚେଷ୍ଟା କରନ୍ତି । କିନ୍ତୁ କେବଳ ସଚେତନ ନାଗରିକ, ବୁଦ୍ଧିଜୀବୀ, କବି ଓ ଲେଖକମାନେ ସେ ଜାଲକୁ ଅନେକ ଦୂରରୁ ଚିହ୍ନି ପାରନ୍ତି, ସମସ୍ତେ ନୁହେଁ ।

❑

('ସମୟ' ୩୦.୯.୯୮)

# ଭାଷାଭିତ୍ତିରେ ପ୍ରଦେଶ

ଏବେ ଓଡ଼ିଶାର ପ୍ରାୟ ସବୁ ସ୍ଥାନରେ ଉତ୍କଳ ଦିବସ ପାଳିତ ହୋଇ ଯାଇଛି । କିନ୍ତୁ ଓଡ଼ିଶାର ସବୁ ସ୍ଥାନରେ ଉତ୍କଳଦିବସ ପାଳିତ ହୋଇଯାଇଛି କହିଲେ ସତ୍ୟର ଅପଲାପ ହେବ । ସବୁ ଜିଲ୍ଲାରେ ମଧ୍ୟ ପାଳିତ ହୋଇଛି ବୋଲି କହିଲେ ଆକ୍ଷରିକ ଅର୍ଥରେ ଠିକ୍ ହେବ ନାହିଁ । ତେବେ ଯଦି ପୁଲିସର ଉତ୍ସବ ଓ କୁଚକାଓ୍ବାଜକୁ ଏହା ସହିତ ସାମିଲ କରାଯାଏ ତେବେ ହୁଏତ କହି ହେବ ଯେ ଉତ୍କଳଦିବସ ସର୍ବତ୍ର ସମାନ ଭାବେ ପାଳିତ ହୋଇଯାଇଛି । କିନ୍ତୁ ପୁଲିସ୍ ପ୍ୟାରେଡ୍ କେବଳ ଜିଲ୍ଲା କିମ୍ବା ସବ୍‌ଡିଭିଜନ ସ୍ତରରେ ଅନୁଷ୍ଠିତ ହୁଏ, ରାଜ୍ୟ ସ୍ତରରେ ରାଜଧାନୀରେ ମଧ୍ୟ ହୁଏ ନାହିଁ । ତେବେ ରାଜ୍ୟ ପୁଲିସ କାର୍ଯ୍ୟାଳୟରେ ହୁଏ । ଏହା ଗାଁ ଗହଳିର ପର୍ବ ନୁହେଁ ।

ଏବେ କେତେବର୍ଷ ହେଲା ଦେଖାଯାଉଛି କେତେକ ସ୍ଥାନରେ ଏହି ଦିବସକୁ ଭିନ୍ନ ଭାବରେ ପାଳନ କରାଯାଉଛି । ଅନେକ ସ୍ଥାନରେ ସ୍ଥାନୀୟ ଦାବିଗୁଡ଼ିକ ସେଦିନ ଉତ୍‌ଥାପିତ ହେଉଛି । ସ୍ଥାନୀୟ ଦାବି ସବୁଠି ସବୁବେଳେ ଥାଏ । ବାହାରିବାକୁ ବାଟ ପାଉ ନ ଥାଏ । ସେତିକି ବେଳେ ବାହାରେ । ସ୍ଥାନୀୟ ଅସନ୍ତୋଷକୁ ପ୍ରକାଶ କରିବାର ଇଏ ଆଉ ଏକ ଉପାୟ । ଚାପି ହୋଇ ରହିଥିବା ଜନ ଅସନ୍ତୋଷ ଏଇ ଜାତୀୟ ପର୍ବମାନଙ୍କରେ ବାହାରକୁ ଆସେ । ଏପରିକି ଆମର ସ୍ୱାଧୀନତା ଦିବସ ଓ ସାଧାରଣତନ୍ତ୍ର ଦିବସମାନଙ୍କରେ ମଧ୍ୟ ଦେଶର କେତେକ ସ୍ଥାନରେ ସ୍ଥାନୀୟ ଅସନ୍ତୋଷ ଆନ୍ଦୋଳନର ରୂପ ନିଏ । ତେଣୁ ଉତ୍କଳଦିବସ ଦିନ ଓଡ଼ିଶାରେ ସ୍ଥାନୀୟ ଅସନ୍ତୋଷକୁ ଉଦ୍‌ଗାର କରିବା ନୂଆକଥା ନୁହେଁ ।

ଓଡ଼ିଶାରେ କେହି କେହି ଏହି ଦିବସକୁ 'ଜାତୀୟ ଦିବସ' ଭାବରେ ମଧ୍ୟ ପାଳନ କରିଛନ୍ତି । 'ଜାତୀୟ' ଶବ୍ଦ ଏଠି ବ୍ୟବହାର କରି ହେବ କି ନାହିଁ ସେ ବିଷୟରେ ଦୁଇପ୍ରକାର ମତାମତ ପ୍ରକାଶ ପାଉଛି । ଦଳେ କହୁଛନ୍ତି ଜାତୀୟ ଶବ୍ଦଟା ନେସନ୍ ଅର୍ଥରେ ବ୍ୟବହୃତ ହେଉଥିଲାବେଳେ ପ୍ରଦେଶ ଅର୍ଥରେ ତାକୁ ଗ୍ରହଣ କରିହେବ ନାହିଁ । ଅଭିଧାନରେ ତାକୁ ଜାତି ଓ ଧର୍ମ ନିର୍ବିଶେଷରେ ବୋଲି କୁହାଯାଇଛି । ତାହା ଦେଶ ବା ରାଷ୍ଟ୍ର ଅର୍ଥରେ ବୁଝାଉଛି । ସେମିତି ଜାତୀୟ ଛୁଟି ଦିବସ । ଆମ ନିୟମରେ ସ୍ୱାଧୀନତା ଦିବସ ସାଧାରଣତନ୍ତ୍ର ଦିବସ ଓ ଗାନ୍ଧି ଜୟନ୍ତୀକୁ ଜାତୀୟ ଛୁଟି ଦିବସ ହିସାବରେ ବୁଝାଏ । ଏ ଦୃଷ୍ଟିରୁ ଉତ୍କଳ ଦିବସକୁ ଜାତୀୟ ଦିବସ ଭାବରେ ଗ୍ରହଣ କରିହେବ ନାହିଁ ।

କିନ୍ତୁ ଆଉ ଥୋକେ ସେ ଯୁକ୍ତିରୁ ବାହାରକୁ ଯାଇ ଓଡ଼ିଶା ଏକ ଜାତିକୁ ବୁଝାଉଚି ବୋଲି କହୁଛନ୍ତି । ଏହା ପାଲଟା ଯୁକ୍ତି ହେଲେ ମଧ୍ୟ ଏହା ଯେ ଖାଲି ଓଡ଼ିଶାର କିଛି ଅଂଶରେ ପ୍ରକାଶ ପାଉଚି ତା' ନୁହେଁ । ଅନ୍ୟ କେତେ ପ୍ରଦେଶରେ ମଧ୍ୟ ଏ ମତ ପ୍ରକାଶ ପାଉଛି । ସେମାନେ ସମସ୍ତେ ଯେ ନିଜକୁ ଦେଶଠାରୁ ଅଲଗା ବୋଲି ମନେ କରନ୍ତି ତା ନୁହେଁ । ସେମାନେ ନିଜ ଭାଷାର ସ୍ୱାତନ୍ତ୍ର୍ୟ ଦୃଷ୍ଟିରୁ ଗୋଟିଏ ସ୍ୱାଭିମାନକୁ ଆଖି ଆଗରେ ରଖି ଏ କଥା କହୁଛନ୍ତି । ନିଜ ଭାଷାଟା ତ ସବୁବେଳେ ବଡ଼, ସମସ୍ତଙ୍କ ପ୍ରିୟ, ଅତି ଆପଣାର, ନିଜ ଭାଷାକୁ ଅତିମାତ୍ରାରେ ଭଲପାଇବାର ଲକ୍ଷଣ ।

କଥାଟାକୁ ନିଚ୍ଛକ ବିଚ୍ଛିନ୍ନତାବାଦ ବୋଲି ମଧ୍ୟ କହିହେବ ନାହିଁ । ବିଚ୍ଛିନ୍ନତାବାଦ ବୋଲି ଯଦି କୁହାଯାଉ ଥାଆନ୍ତା, ତେବେ ଏବର ସରକାର ନୂଆ ନୂଆ ରାଜ୍ୟ ଗଠନ କରନ୍ତେ ନାହିଁ କିମ୍ବା ସେ ପ୍ରକାର ଦାବିକୁ ଗ୍ରହଣ କରି ରାଜନୀତି ହୁଅନ୍ତା ନାହିଁ । ତାକୁ ନେଇ ଭୋଟ ଲଢ଼େଇ ମଧ୍ୟ ହୁଅନ୍ତା ନାହିଁ । ତେବେ ଏସବୁ ଏଠି ଭିନ୍ନ ପ୍ରସଙ୍ଗ । ମୁଁ କେବଳ ଏଠି ଉତ୍କଳଦିବସ ପାଳନ କଥା କହୁଛି ।

ମୋର କହିବାର କଥା ଏଥର ଓଡ଼ିଶାର ପୂର୍ବାଞ୍ଚଳରେ ଉତ୍କଳ ଦିବସ ଯେମିତି ଭାବରେ ପାଳିତ ହେଲା ପଶ୍ଚିମାଞ୍ଚଳରେ ସେମିତି ଭାବରେ ହେଲା ନାହିଁ । ପୂର୍ବାଞ୍ଚଳରେ ମଧ୍ୟ ଯେମିତି ଭାବରେ ହେବାର କଥା ସେମିତି ହେଲା ନାହିଁ ବରଂ ଆସ୍ତେ ଆସ୍ତେ ତା'ର ଜ୍ୟୋତି ହରାଇ ଆସୁଛି ବୋଲି ମନେ ହେଉଛି । କେବଳ ଉପଚାରକୁ ବାନ୍ଧି ରଖିବା ଉଦ୍ଦେଶ୍ୟରେ ଯାହା କିଛି କରାଯାଉଛି ।

ଉତ୍କଳ ଦିବସର ସଭା ଓ ଶୋଭାଯାତ୍ରାରେ ଯଦି କୋମଳମତି ଶିଶୁମାନଙ୍କୁ ସାମିଲ୍ କରାଯାଉ ନ ଥାଆନ୍ତା ତେବେ ଉତ୍ସବର ଅସଲ ରୂପଟା ଜଣା ପଡିଯାଉ ଥାଆନ୍ତା । ଅବଶ୍ୟ ସବୁ ଜାତୀୟ ଉତ୍ସବରେ ଆମେ ଏବେ ଏମିତି କରୁଛୁଁ । ଯେପରି ନେତାମାନଙ୍କ ଆଗମନ ବେଳେ ତାଙ୍କୁ ସ୍ୱାଗତ ଜଣେଇବାକୁ ଆମେ ଆମର ଛୋଟ ଛୋଟ ପିଲାମାନଙ୍କୁ ସାମିଲ କରେଇବା ବ୍ୟତୀତ ଆମର ଆଉ ବାଟ ନ ଥାଏ । ସେମାନେ ନ ଥିଲେ ଆମେ ଆମର ଜାତୀୟତା ପ୍ରଦର୍ଶନ କରି ପାରନ୍ତୁ ନାହିଁ ।

କିନ୍ତୁ ହାୟ ! ସେ ପିଲାମାନଙ୍କର ଯଦି ପାଟି ଫିଟୁ ଥାଆନ୍ତା, ସେମାନେ ଯଦି ପ୍ରତିବାଦ କରି ପାରୁ ଥାଆନ୍ତେ, ସେମାନେ ଯଦି କହି ପାରୁଥାଆନ୍ତେ ଯେ ''ହେ ମହାତ୍ମନ୍ ! ତୁମର ଏ ଖେଳଟା ଯେ ଆମର କାଳ ଏ କଥା ବୋଧେ ତୁମେ ବୁଝି ପାରୁନ । ତୁମେ ଏ କଥା ବୁଝି ପାରୁନ ବୋଲି ତୁମେ ତୁମର ଜାତୀୟ ଭାବ ପ୍ରଦର୍ଶନ ପାଇଁ ଆମକୁ ଏ ଖରା ବର୍ଷାରେ ମାଇଲ୍ ମାଇଲ୍ ରାସ୍ତା ଚଲେଇ ଚଲେଇ କଷ୍ଟ ଦେଉଛ ଏବଂ ନିଜେ ଗର୍ବ ଅନୁଭବ କରୁଛ ।''

ଛୋଟ ଛୋଟ ପିଲାମାନେ ମୋଟେ ଜାଣିପାରନ୍ତି ନାହିଁ ଯେ ତାଙ୍କ ସାଥିରେ ତାଙ୍କ ବଡ଼ଭାଇମାନେ ଏ ପର୍ବରେ ମୋଟେ ଯୋଗ ଦିଅନ୍ତି ନାହିଁ । ସେମାନେ ଯେତେବେଳେ ଏ କଥା ଜାଣି ପାରିବେ ସେତେବେଳେ ସେମାନେ ବଡ଼ ହୋଇ ଯାଇଥିବେ ଏବଂ ତା'ପରେ ଏ ଉତ୍ସବକୁ ପାଳନ କରିବା ପାଇଁ ମୋଟେ ଚିନ୍ତା କରିବେ ନାହିଁ ।

ଏଥିପାଇଁ ମଧ୍ୟ ଆମେ ଦାୟୀ । ସମଗ୍ର ଛାତ୍ରସମାଜକୁ କିପରି ଏହି ପର୍ବ ସହିତ ସାମିଲ୍ କରାଯାଇ ପାରିବ ଆମ ପାଖରେ ସେ ଯୋଜନା ନଥାଏ । ଉତ୍କଳ ଦିବସଟା ଏବେ ଅନ୍ୟାନ୍ୟ ଅନେକ ଦିବସ ପରି ଗୋଟିଏ ସରକାରୀ ଉତ୍ସବରେ ପରିଣତ ହୋଇଯାଇଛି । ସରକାରୀ ଉତ୍ସବ ଯେମିତି ହେବାର କଥା ସେମିତି ହୁଏ । କଥାରେ ବା କାଗଜରେ ବେଶୀ । କାମରେ କମ୍ ।

ଆସାମରେ ସେମିତି ହୁଏ ନାହିଁ । ଆସାମର ଜାତୀୟ ପର୍ବ ଜଣେ ପ୍ରଖ୍ୟାତ ଲେଖକ, ଶିଳ୍ପୀ, କଳାକାର ତଥା ବିପ୍ଳବୀଙ୍କ ଜନ୍ମ ଦିବସରେ ପାଳିତ ହୁଏ । ସେଦିନ ସମଗ୍ର ଆସାମ କମ୍ପି ଉଠେ । ଆକାଶବାଣୀ, ଟିଭି ଠାରୁ ଆରମ୍ଭକରି ସମସ୍ତ ସଂବାଦପତ୍ର କେବଳ ସେଇ ଦିବସ ଓ ସେ ମହାତ୍ମାଙ୍କ କଥା ହିଁ ଆଲୋଚନା କରନ୍ତି । ପ୍ରାଥମିକ ବିଦ୍ୟାଳୟ ଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ଯାଏ ସବୁଠି ସେ ପର୍ବର ପବିତ୍ର ପଦଚିହ୍ନ ଅଂକିତ ହୋଇଯାଏ । ସରକାରୀ ଓ ବେସରକାରୀ ଅଫିସ୍ ଓ ସଂସ୍ଥାମାନେ ମଧ୍ୟ ସେ ଉତ୍ସବ ପାଳନ କରନ୍ତି ବିଧିବଦ୍ଧ ଭାବେ । ରେଳବାଇ ଷ୍ଟେସନଠାରୁ ବ୍ୟାଙ୍କ ଓ ପୋଷ୍ଟ ଅଫିସ୍ ଯାଏ ସବୁଠି କିଛି ନା କିଛି ତା'ର ଚିହ୍ନ ରହିଯାଏ । କେତେକ ଜାଗାରେ ସେ ବରପୁତ୍ରଙ୍କ ବଡ଼ ବଡ଼ କଟ୍‌ଆଉଟ୍‌ମାନ ପ୍ରଦର୍ଶିତ ହୁଏ । ସମ୍ବାଦପତ୍ରମାନେ ବିଶେଷ ସଂଖ୍ୟା ପ୍ରକାଶ କରନ୍ତି । ଛାତ୍ରମାନଙ୍କ ମଧ୍ୟରେ ଏ ଉତ୍ସବ ଏକ ଅସାଧାରଣ ଉଦ୍ଦୀପନା ସୃଷ୍ଟି କରେ । କେତେ ପ୍ରକାର ପ୍ରତିଯୋଗିତା ହୁଏ ତା'ର ସୀମା ନାହିଁ । ନା ଥାଏ ଅର୍ଥର ଅଭାବ ନା ଥାଏ ଇଚ୍ଛା ଓ ଉତ୍ସାହର କାର୍ପଣ୍ୟ ।

ଶୁଣିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ ଯେ ଆସାମର ଏଇ ବରପୁତ୍ର କିନ୍ତୁ ବଂଶାନୁକ୍ରମେ ଅସମୀୟ ନୁହନ୍ତି । ଜ୍ୟୋତିପ୍ରକାଶ ଅଗ୍ରୱାଲଙ୍କ ପୂର୍ବପୁରୁଷ ପ୍ରାୟ ଶହେ ବର୍ଷ ଆଗରୁ ବ୍ୟବସାୟ ପାଇଁ ଆସାମକୁ ଆସି ସ୍ଥାୟୀ ବାସିନ୍ଦା ହୋଇଗଲେ । ଅସମୀୟା ଭାଷା ସାହିତ୍ୟ ସିନେମା ଏବଂ ରାଜନୀତିକୁ ଅସମ୍ଭବ ଦାନ ଅଗ୍ରୱାଲ ମହୋଦୟଙ୍କର । ବୋଧେ ଏଇଥିପାଇଁ ଆସାମର ରାଜଭବନ ଠାରୁ ପଞ୍ଚାୟତ ଭବନ ଯାଏ ସବୁଠି ତାଙ୍କର ବିଶାଳକାୟ ଫଟୋଚିତ୍ରମାନ ଶୋଭାପାଏ ।

ଆଉ ଆମେ ? ଏ ସବୁ କ୍ଷେତ୍ରରେ ଆମେ କେଉଁଠି ଆମକୁ ଖୋଜିବାକୁ ପଡ଼ିବ ।

ଆମେ ଉତ୍କଳ ଦିବସ ଦିନ କେବଳ ପିଲାଙ୍କ ମୁଣ୍ଡରେ ନଡ଼ିଆଟା ବାଡ଼େଇ ଦେଇ ନିଜେ ବାହାବା ନେଇ ଘରକୁ ଫେରି ଆସୁଁ । କାହିଁ କେହି ତ ସେତେବେଳେ ସେ

ଝିଲାମାନଙ୍କ କଥା ମନେ ପକାନ୍ତି ନାହିଁ । କେହି ସେତେବେଳେ ସେମାନଙ୍କ ପାଇଁ ଆହା ପଦେ ମଧ୍ୟ କହନ୍ତି ନାହିଁ । ଆମର ଜାତୀୟ ଉତ୍ସବମାନଙ୍କରେ କିଶୋର କିଶୋରୀମାନଙ୍କୁ ଯେପରି ଭାବରେ ଘଣ୍ଟା ଘଣ୍ଟା ଧରି ଖରାରେ ନୃତ୍ୟ ପ୍ରଦର୍ଶନ କରିବାକୁ କୁହାଯାଏ ତାକୁ କେହି କେବେ ମାନବିକ ବୋଲି କହିପାରିବ ନାହିଁ । ଉତ୍କଳ ଦିବସ ହେଉ ବା ଅନ୍ୟ ଜାତୀୟ ଦିବସ ହେଉ ସେ ଅବୋଧ ଶିଶୁମାନେ କ'ଣ ପାଆନ୍ତି ସେଥିରୁ ? ଶାରୀରିକ ତଥା ମାନସିକ ଯନ୍ତ୍ରଣା ମାଧ୍ୟମରେ ଜାତୀୟତା ବା ଜାତିପ୍ରେମ ମଣିଷ ମନ ଭିତରକୁ ଇନ୍‌ଜେକ୍ଟ କରିବା କଥା କେବେ ବି ଚିନ୍ତା କରି ହୁଏନି ।

ମୁଁ ପ୍ରଥମରୁ କହିଚି ଓଡ଼ିଶାରେ ଉତ୍କଳ ଦିବସ ସର୍ବତ୍ର ପାଳିତ ହୋଇନାହିଁ । ଯଥାଯଥ ଭାବରେ ମଧ୍ୟ ପାଳିତ ହୋଇନାହିଁ । କାହିଁକି ହୋଇ ନାହିଁ ? କ'ଣ ତା'ର କାରଣ ? ଓଡ଼ିଶା ଭିତରେ ଯଦି ସବୁଠି ଓଡ଼ିଶା ଦିବସ ପାଳିତ ହୋଇ ନପାରିଲା ତେବେ ଓଡ଼ିଶା ବାହାରେ କେମିତି ହେବ ? ଏହି ଲେଖକ ମାଡ୍ରାସରେ ଥିଲାବେଳେ 'ଉତ୍କଳ ଏସୋସିଏସନଟିଏ' ଗଢ଼ି (୧୯୮୨) ଉତ୍କଳ ଦିବସ ପାଳନର ଯେଉଁ ଶୁଭାରମ୍ଭ କରିଥିଲା ତାହା ଏପର୍ଯ୍ୟନ୍ତ ଚାଲୁ ରହିଛି । ଭାରତର ଅନ୍ୟାନ୍ୟ ଅନେକ ସ୍ଥାନରେ ଏବେ ଉତ୍କଳ ଦିବସ ପାଳିତ ହେଉଛି । ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦ୍ୱିବେଦୀ ଅରୁଣାଚଳରେ ରାଜ୍ୟପାଳ ଥିଲା ବେଳେ ବଡ଼ ଧୂମ୍‌ଧାମ୍‌ରେ ଉତ୍କଳ ଦିବସ ପାଳିତ ହେଉଥିଲା । କିନ୍ତୁ ଶ୍ରୀଯୁକ୍ତ ଲୋକନାଥ ମିଶ୍ର ଆସାମରେ ରାଜ୍ୟପାଳ ଥିଲାବେଳେ ଗୁଆହାଟିର ଉତ୍କଳ ଏସୋସିଏସନ୍ ସେ ବର୍ଷ ଉତ୍କଳଦିବସ ବଦଳରେ 'ଆସାମୀ ଉତ୍କଳ ସାଂସ୍କୃତିକ ସନ୍ଧ୍ୟା' ଭାବରେ ପାଳନ କରିଥିଲେ । ଶ୍ରୀଯୁକ୍ତ ମିଶ୍ର ଏବଂ ଶ୍ରୀଯୁକ୍ତ ହିତେଶ୍ୱର ସାଇକିଆ ଏ ସଭାରେ ଉଦ୍‌ବୋଧନ ଦେଇଥିଲେ ।

ମୋର କହିବାର ଉଦ୍ଦେଶ୍ୟ ହେଉଛି ଓଡ଼ିଶା ବାହାରେ ଏବେ ଉତ୍କଳ ଦିବସ ପାଳନ ପାଇଁ ଆମର ଉତ୍ସାହ ବଢ଼ୁଥିବା ବେଳେ ଓଡ଼ିଶା ଭିତରେ ତାହା କମି କମି ଆସୁଛି । ତା'ର ଏକମାତ୍ର କାରଣ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ପରେ ଏବଂ ପରବର୍ତ୍ତୀ ଅବସ୍ଥାରେ ଗଡ଼ଜାତ ସମୂହର ମିଶ୍ରଣର ଅର୍ଦ୍ଧଶତାବ୍ଦୀ ଅତିବାହିତ ହୋଇଥିଲେ ମଧ୍ୟ ଆମେ ଏଯାଏ ଏ ସମସ୍ତଙ୍କୁ ଆପଣାର କରିବାକୁ ଚେଷ୍ଟା କରିନାହୁଁ । ଅଧିକନ୍ତୁ ଏ କଥା କହିଲେ ଅସତ୍ୟ ହେବ ନାହିଁ ଯେ ଆମେ ଏକ ସ୍ୱତନ୍ତ୍ର ତଥା ଉନ୍ନତ ଇଲାକାର ଅଧିବାସୀ ଏକଥା ଆମ ମନଭିତରେ ସବୁବେଳେ ବସା ବାନ୍ଧିଥାଏ । ଏଥିପାଇଁ ଆମର ଗର୍ବ ମଧ୍ୟ କମ ନୁହେଁ । ଆମର ଭାଷା ସାହିତ୍ୟ ଓ ସଂସ୍କୃତି ଅନ୍ୟମାନଙ୍କ ଠାରୁ ଅନେକ ଉର୍ଦ୍ଧ୍ୱରେ । ସର୍ବୋପରି ଆମେ ଅନ୍ୟମାନଙ୍କୁ ଅଧୀନ କରି ରଖିବାର ସ୍ଥାୟୀ ପଟ୍ଟା ହାସଲ କରିଛୁ ବୋଲି ଗୋଟିଏ ମିଛ ଅହମିକା ଆମକୁ ସବୁବେଳେ ଆଚ୍ଛନ୍ନ କରି ରଖିଛି ।

ଆମେତ ଏଯାଏ ସମ୍ବଲପୁରୀ ଭାଷାକୁ ଆମ ଭାଷା ବୋଲି କହିବାର ସାହସ ହାସଲ କରିପାରିଲୁ ନାହିଁ । ଆମେ ଏ ଯାଏ ବିଶ୍ୱ ବିଖ୍ୟାତ ସମ୍ବଲପୁରୀ ଶାଢ଼ିକୁ ଓଡ଼ିଶୀ ଶାଢ଼ିର ମାନ୍ୟତା ଦେଲୁ ନାହିଁ । ଯଦିଓ ତା ବିନା ଓଡ଼ିଶୀ ନୃତ୍ୟ ଅସମ୍ଭବ ହୋଇପଡ଼ିଛି, ଗଡ଼ଜାତ ଅଞ୍ଚଳର ସାହିତ୍ୟ ଓ ସଂସ୍କୃତି ବିଷୟରେ ଆମର ଗବେଷଣା ହୋଇ ନାହିଁ କି ତାକୁ ଆମ ସାଥିରେ ମିଶେଇବାର ଚେଷ୍ଟା ମଧ କରିନାହୁଁ ।

ତ୍ରିପୁରା ସରକାର ଏସବୁ ଦିଗରେ ଅନେକ ଆଗରେ । ସେମାନେ ଉପଜାତିମାନଙ୍କୁ ନିଜ ସହିତ ମିଶେଇବାକୁ ଚମତ୍କାର ପଦକ୍ଷେପମାନ ନେଇଛନ୍ତି । ଗାଁ ଗାଁରେ ଉଭୟ ଭାଷା, ସାହିତ୍ୟ ଓ ସଂସ୍କୃତିର ମିଶ୍ରଣରେ ନୂଆ ନୂଆ ନାଟକମାନ ଲେଖାଯାଉଛି ଏବଂ ସେଥିରେ ଉଭୟ ଦଳ ଭାଗ ନେଉଛନ୍ତି । ଏଇସବୁ ନାଟକକୁ ପ୍ରଚୁର ସରକାରୀ ସାହାଯ୍ୟ ମିଳେ । ଏହା ଦ୍ୱାରା ଉଭୟ ଜାତି ଭିତରେ ଭଲ ସମନ୍ୱୟ ରକ୍ଷା କରି ହୁଏ ।

ଆସାମରେ ଶଂକରଦେବ ଜାତିପ୍ରଥାର ବିଲୋପ ପାଇଁ ନାଟକର ସାହାଯ୍ୟ ନେଇଥିଲେ । ତାଙ୍କ ଲିଖିତ ନାଟକରେ ସେ ସବୁବେଳେ ଅଛବ ଜାତିର ଲୋକଟିକୁ ଭଗବାନ ଶ୍ରୀକୃଷ୍ଣ ଭୂମିକା ଦେଇ ନିଜେ ଚଣ୍ଡାଳ ଭୂମିକାରେ ତାଙ୍କ ପଦସେବା କରୁଥିଲେ । ସେ କଥାଟି ସେତେବେଳେ ଆସାମରେ ଗୋଟିଏ ବୈପ୍ଳବିକ ପରିବର୍ତ୍ତନ ଆଣିବାରେ ଅନେକ ସାହାଯ୍ୟ କରିଥିଲା ।

ଏ ସବୁ ସତ୍ତ୍ୱେ ଆସାମରେ କିଛିଲୋକ ପାର୍ବତ୍ୟ ବୋଡ଼ୋମାନଙ୍କୁ ନିଜ ସହିତ ମିଶିବାକୁ ଆନ୍ତରିକ ଉଦ୍ୟମ କଲେ ନାହିଁ । ଫଳରେ ଆଜିର ସମସ୍ୟା ଉପୁଜୁଛି । ବୋଡ଼ୋମାନେ ତାଙ୍କର ସମସ୍ତ ଅସନ୍ତୋଷର ଉଦ୍‌ଗୀରଣ ପାଇଁ ୧୯୯୧ର ହୋଇଥିବା ଜନଗଣନା ସମୟରେ ନିଜକୁ ଆଗପରି ଅସମୀୟା ନଲେଖି ବୋଡ଼ୋ ବୋଲି ଲେଖିଥିଲେ । ସେମାନେ ଏବେ ସ୍ୱତନ୍ତ୍ର ରାଜ୍ୟ ଦାବି କରୁଛନ୍ତି ।

ପୃଥିବୀର କୌଣସି ଦେଶରେ କୌଣସି ସମୟରେ ମଣିଷର ଅସୀମ ତ୍ୟାଗ ବିନା ସମାଜରେ ପରିବର୍ତ୍ତନ ଆସିନାହିଁ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଆମର ନେତାମାନେ ଯେଉଁ ଅସୀମ ତ୍ୟାଗ ସ୍ୱୀକାର କରି ଯାଇଛନ୍ତି ତା'ର କାଣିଚାଏ ମଧ ଆମଠାରେ ନାହିଁ । ଏବେ ସେଇ ନାଁକୁ ବିକି ଭାଙ୍ଗି ଆମେ ଖାଉଛୁ । ଏଥିରେ ଓଡ଼ିଆ ଜାତି କେତେଦିନ ବଞ୍ଚିବ ?

ଆମେ ଏତେ ଦିନଯାଏ କେବଳ ଗୋଟିଏ ଆତ୍ମପ୍ରବଞ୍ଚନା ଭିତରେ ଦେଇ ଗତିକରି ଚାଲିଛୁଁ । ଏଥିରେ ଆମେ ନିଜେ ନିଜକୁ ଠକୁଁ । ଓଡ଼ିଆ ଜାତି ଏ ସବୁର ଉର୍ଦ୍ଧ୍ୱକୁ ନ ଆସିବା ଯାଏ ତା'ର ମୁକ୍ତି କାହିଁ ?

□ (ସମୟ-୧୯.୪.୨୦୦୦)

# ଧର୍ମ ଓ ରାଜନୀତି

ଏବେ ଧର୍ମ ଓ ରାଜନୀତିକୁ ପୂରାପୁରି ମିଶେଇ ଦିଆଗଲାଣି । ଏ ଦୁଇଟାଯାକ ମିଶି ପ୍ରାୟ ଗୋଟିଏ ହୋଇଗଲାଣି । ହୋଇଗଲାଣି ବୋଲି କୁହାଯାଉଚି ଭାରତବର୍ଷକୁ ଗୋଟିଏ ହିନ୍ଦୁ ରାଷ୍ଟ୍ରରେ ପରିଣତ କରିଦିଆଯିବ । ହିନ୍ଦୁରାଷ୍ଟ୍ର କହିଲେ ସେମାନେ କହୁଛନ୍ତି ଦେଶରେ ବାସ କରୁଥିବା ପ୍ରତ୍ୟେକ ଲୋକ କେବଳ ହିନ୍ଦୁ କଥା ହିଁ କହିବ । କେବଳ ହିନ୍ଦୁତ୍ୱର ନୀତିନିୟମ ପାଳନ କରିବ ବା ତାକୁ ସମ୍ମାନ ଦେବ । ହିନ୍ଦୁତ୍ୱର ଧ୍ୱଜାଧାରୀମାନଙ୍କୁ ଆଗେ ବାଟ ଛାଡ଼ି ଦେବ । ତା' ଛଡ଼ା ଜଣେ ଯଦି ହିନ୍ଦୁ ହେଇଥିବ ତେବେ ସେ ସବୁବେଳେ ନିଜକୁ ହିନ୍ଦୁ ବୋଲି ଗର୍ବ କରୁଚି ବୋଲି କହିବ । ତା' ରକ୍ତରେ ହିନ୍ଦୁ ରକ୍ତ ପ୍ରବାହିତ ହେଉଚି ବୋଲି ସେ କହିବୁଲିବ ଏବଂ ଅନ୍ୟ ଯେକୌଣସି ଧର୍ମର ଲୋକମାନେ ଯେ ତା' ଅପେକ୍ଷା ମୋଟେ ଭଲ ନୁହେଁ ଏଇ ପ୍ରକାର ଗୋଟାଏ ଭାବନା ସେ ମନ ଭିତରେ ରଖି ଗର୍ବରେ ଫୁଲି ଉଠୁଥିବ । ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ହିନ୍ଦୁଟି ଯେ ଅନ୍ୟମାନଙ୍କ ତୁଳନାରେ ଅନେକ ଉଚ୍ଚରେ ଏ କଥା ତା ମନରେ ଥିବ ଏବଂ ସେମିତି ଭାବରେ ସେ ଅନ୍ୟମାନଙ୍କୁ ଦେଖୁଥିବ । ଅନ୍ୟ ଦିଗରେ ଯେଉଁମାନେ ହନ୍ଦୁ ନୁହଁନ୍ତି ସେମାନେ ହିନ୍ଦୁମାନଙ୍କୁ ବଡ଼ଭାଇ ଭାବି ତା' ପାଖରେ ମୁଣ୍ଡ ନୁଆଁଇ ପକାଉଥିବେ । ବଡ଼ଭାଇ ପାଖରେ ନିଜର ବଶତାକୁ ବିକି ଦେଇଥିବେ ଏବଂ ସେ ଯାହା କହୁଥିବେ ତାକୁ ମାନୁଥିବେ । ତା'ର ସବୁପ୍ରକାର ସ୍ୱାଧୀନତା, ଇଚ୍ଛାକୁ ସେ ବଡ଼ ପାଖରେ ପରଶି ଦେଉଥିବ ।

ହିନ୍ଦୁତ୍ୱର ଠିକାଦାରମାନେ କାହିଁକି ଏପରି କହୁଛନ୍ତି ପଚାରିଲେ ସେମାନେ କହୁଛନ୍ତି 'ପାକିସ୍ତାନ କାହିଁକି ମୁସଲମାନ ରାଷ୍ଟ୍ରଟିଏ ଗଠନ କରିଚି ? ସେମାନଙ୍କ ଯୁକ୍ତି ସେତକରେ ସରିଯାଉଚି । ପାକିସ୍ତାନ ଯାହା କରିବ ଆମେ ସେଇଆ କରିବୁଁ । ଏବେ ଯଦି ମିଆମାର କି ଶ୍ରୀଲଙ୍କା ଘୋଷଣା କରିବ ଯେ ଆମ ଦେଶ ବୌଦ୍ଧଧର୍ମର ଦେଶ ହେଇଗଲା, ତେବେ ଆମେ କ'ଣ କରିବା ? ବୁଦ୍ଧଙ୍କ ଜନ୍ମ ଏବେ କେବଳ ଭାରତରେ ନୁହେଁ, ଖୋଦ ଓଡ଼ିଶାରେ ବୋଲି ଏବଂ ଆମ ଭୁବନେଶ୍ୱର ପାଖରେ ବୋଲି କହିଲେଣି । ସେମାନେ

କୁଆଡ଼େ ଏଥିପାଇଁ ଅନେକ ତଥ୍ୟ ପାଇଚନ୍ତି । ପାକିସ୍ତାନ ଇସ୍‌ଲାମ ରାଷ୍ଟ୍ର ଘୋଷିତ ହେଇଥିବା ନ୍ୟାୟରେ ଭାରତବର୍ଷକୁ 'ବୌଦ୍ଧ ଦେଶ' ବୋଲି କହି ହୁଅନ୍ତା । ଏଥିରେ ଅନ୍ତତଃ ଗୋଟିଏ ସୁବିଧା ହୁଅନ୍ତା ଯେ ଏସିଆର ଅର୍ଦ୍ଧାଧିକ ଦେଶ ଏବେ ବୌଦ୍ଧ ଧର୍ମାବଲମ୍ବୀ ଥିବାରୁ ଆମର ସଂଖ୍ୟା ଅନେକ ବଢ଼ିଯାଆନ୍ତା । ଆମକୁ ଅନେକ ବୈଦେଶିକ ସାହାଯ୍ୟ ମଧ୍ୟ ମିଳନ୍ତା । ବୁଦ୍ଧ ଆମ ଦେଶରେ ଜନ୍ମ ହେଇଥିଲେ ବୋଲି ଆମେ ବହୁତ ଗର୍ବ କରନ୍ତେ । ସାରା ଏସିଆରେ ଆମେ ଗୋଟାଏ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ବୋଲି ନିଜକୁ କହନ୍ତୁ । ଇତିହାସଟାକୁ ଏମିତି ଭାବରେ ବଦଳେଇ ଦେଲେ ଚଳନ୍ତା । କିନ୍ତୁ ସେମିତି ହେଉ ନାହିଁ । କୁହାଯାଉଚି ହିନ୍ଦୁଙ୍କ ସଂଖ୍ୟା ବଢ଼େଇବାକୁ ହେବ ଏବଂ ସମସ୍ତଙ୍କୁ ହିନ୍ଦୁ ଧର୍ମରେ ଦୀକ୍ଷିତ କରେବାକୁ ହେବ । ଯଦି ବୁଝାଶିଖାରେ କେହି ଦୀକ୍ଷିତ ନହୁଏ ତେବେ ବଳପ୍ରୟୋଗ କରିବାକୁ ହେବ । ସେମାନେ କୁହନ୍ତି ନିଜ ଧର୍ମକୁ ପ୍ରସାରିତ କରିବାକୁ ହେଲେ ବଳ ପ୍ରୟୋଗ କଲେ ଧର୍ମ ସହାୟ ହେବ । ଅର୍ଥାତ୍ ବଳ ପ୍ରୟୋଗ ବା ଧର୍ମ ପାଇଁ ହିଂସା ଆଚାରଣ ବା ଅନ୍ୟ ଅର୍ଥରେ ହତ୍ୟା, ରକ୍ତପାତ ଇତ୍ୟାଦି ହିନ୍ଦୁଧର୍ମର ଗୃହୀତ ନୀତି । ସେମାନଙ୍କ ଯୁକ୍ତିରେ ଏ କଥାଟା ଠିକ୍ । ଏ ପରମ୍ପରା ଆମର ଅଛି । ଯେତେବେଳେ ଭାରତରେ ବୌଦ୍ଧ ଧର୍ମ ହୁ ହୁ ବଢ଼ିବାକୁ ଲାଗିଲା, ସେତେବେଳେ ଆଦି ଶଂକରାଚାର୍ଯ୍ୟଙ୍କ ଶିଷ୍ୟମାନେ ବହୁସଂଖ୍ୟାରେ ବୌଦ୍ଧ ସନ୍ନ୍ୟାସୀମାନଙ୍କୁ ହତ୍ୟା କରିଥିଲେ । ଏ ଗଣହତ୍ୟା ଏପରି ରୂପ ଧାରଣ କରିଥିଲା ଯେ, ଫଳରେ ଯୋଉ ଦେଶରେ ବୁଦ୍ଧ ଜନ୍ମଲାଭ କରିଥିଲେ ସେ ଦେଶରେ ବୌଦ୍ଧ ଧର୍ମ ଲୋପ ପାଇଲା । ଏସିଆର ସବୁ ଦେଶକୁ ଏହା ବ୍ୟାପି ଯାଇଥିଲା । ଏବେ ଯଦି ଏ ଇତିହାସକୁ କେହି ବଦଳେଇ ଦେବାକୁ ଚାହେଁ ସେଥିରେ କାହାରି କିଛି କରିବାର ନାହିଁ । ବୌଦ୍ଧ ସନ୍ନ୍ୟାସୀମାନଙ୍କୁ ହତ୍ୟା କରିବା ପଛରେ ସେତେବେଳେ ରାଜା ମହାରାଜାମାନଙ୍କର ପ୍ରଚ୍ଛନ୍ନ ହାତ ଥିଲା । ସେମାନେ ହିନ୍ଦୁ ମୌଳବାଦୀମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ଏବଂ ସମାଜରେ ସେମାନେ ସୁପ୍ରିମୋ ବୋଲି ସ୍ୱୀକାର କରୁଥିଲେ । ବ୍ରାହ୍ମଣ ଓ ଧର୍ମଗୁରୁମାନେ ବରାବର ରାଜାମାନଙ୍କୁ ହାତରେ ରଖିଥାଆନ୍ତି ଏବଂ ସେମାନଙ୍କ ନିଜ ଇଚ୍ଛାକୁ କାର୍ଯ୍ୟକାରୀ କରାଇବାରେ ତାଙ୍କୁ ବ୍ୟବହାର କରନ୍ତି । ତା'ର ଅର୍ଥ ଧର୍ମଗୁରୁମାନେ ସବୁବେଳେ ରାଜନୀତିରେ ପ୍ରଭାବ ବିସ୍ତାର କରୁଥିଲେ ।

ଋଷ ବିପ୍ଳବ ପରେ ଏ ଚିନ୍ତାଧାରାରେ ଟିକିଏ ଭଟ୍ଟା ପଡ଼ିଆସିଲା । ଲୋକେ ନା ଈଶ୍ୱରଙ୍କୁ ବିଶ୍ୱାସକୁ ନେଲେ ନା ଧର୍ମଗୁରୁ ଓ ରାଜାମାନଙ୍କୁ । ତା'ର ପ୍ରଭାବ ଭାରତରେ

ମଧ୍ୟ ପଡ଼ିଲା । ସ୍ୱାଧୀନତା ପରେ ଭାରତରେ ଆଧୁନିକ ଶିକ୍ଷା ଯେତିକି ବିସ୍ତାର ଲାଭ କଲା ମଣିଷ ମନରୁ ଧର୍ମର ପ୍ରଭାବ ସେତିକି କମି କମି ଆସୁଥାଏ । ହିନ୍ଦୁତ୍ୱ ପ୍ରତି ଲୋକଙ୍କ ଶ୍ରଦ୍ଧା କମିବାର ଆଉ ଗୋଟାଏ କାରଣ ହେଲା, ତା' ଭିତରେ ଥିବା କଠୋରତା । ଏ କଠୋରତା ପାଇଁ ବ୍ରାହ୍ମଣ ଓ ସେମାନେଙ୍କ ମୌଳବାଦ ହିଁ ଦାୟୀ । ସେମାନେ କେବଳ ନିଜର ପ୍ରାଧାନ୍ୟ ବଢେଇବା ପାଇଁ ଧର୍ମାଚରଣରେ ମିଛ କଠୋରତା ସବୁ ଆରୋପ କଲେ, ଯାହା ଲୋକଙ୍କ ପାଇଁ ଅସହ୍ୟ ହୋଇ ଉଠିଲା । ତେଣୁ ହିନ୍ଦୁ ଧର୍ମର ଲୋକେ ଅଲଗା ହେଇଗଲେ ଏବଂ ନିଜ ନିଜର ଗୋଷ୍ଠୀ ସବୁ ଗଢ଼ିଲେ । ଏସବୁ ପ୍ରକାରାନ୍ତରେ ହିନ୍ଦୁତ୍ୱ ବିରୋଧରେ ଗଲା ।

ଏବେ ସ୍ୱାଧୀନତାର ପଚାଶ ବର୍ଷ ପରେ ଲୋକେ ସାଧାରଣ ଭାବେ ଧର୍ମକୁ ଭୁଲିଯିବାକୁ ବସିଲେଣି । ଧର୍ମ ଯେ ଜଣକର ଜୀବନ ଧାରଣର ଏକାନ୍ତ ଆବଶ୍ୟକତା ସେ କଥା ଏକବିଂଶ ଷତାବ୍ଦୀର ମଣିଷ ଆଉ ସ୍ୱୀକାର କରୁନାହିଁ । ତେଣୁ ସେ ଧର୍ମକୁ ଆଉ ପ୍ରାଧାନ୍ୟ ଦେଉନାହିଁ । ଜଣେ ମୋଟେ କୌଣସି ଧର୍ମରେ ନଥିଲେ ତାର କ୍ଷତି ହେବ ବୋଲି ସେ ଭାବୁନାହିଁ । ଏବର ମଣିଷଟିଏ ସବୁବେଳେ ଏତେ ବ୍ୟସ୍ତ ରହୁଚି ଯେ ତାକୁ ଉପାସନା ପାଇଁ ମନ୍ଦିର କି ମସ୍‌ଜିଦ୍ ଯିବା ପାଇଁ ସମୟ ମିଳୁନାହିଁ । ସାଧାରଣ ଭାବେ ବଞ୍ଚିବାକୁ ହେଲେ ତାକୁ ଅହରହ ସଂଗ୍ରାମ କରିବାକୁ ପଡୁଚି । ସାରାଦିନ ମନ୍ଦିର କି ମସ୍‌ଜିଦ୍‌ରେ ସେ ରହିଲେ ଈଶ୍ୱର ତାକୁ ପାଣି ଟୋପାଏ ମଧ୍ୟ ଦେବେ ନାହିଁ । ଏ ବିଶ୍ୱାସ ତା'ର ଦୃଢ଼ ହେଲାଣି । ଈଶ୍ୱର ନିଜେ ମଧ୍ୟ ଏକଥା କେବେ କହିନାହାନ୍ତି । ସେ କୁହନ୍ତି - ''ଆଗେ କାମ କର । ଫଳ ନିଶ୍ଚୟ ମିଳିବ ।'' କିନ୍ତୁ ଆମ ଧର୍ମଗୁରୁମାନେ କହନ୍ତି -''କିଛି କରିବା ଦରକାର ନାହିଁ, ନିଜକୁ ପୂରାପୂରି ଈଶ୍ୱରଙ୍କ ଠାରେ ସମର୍ପି ଦିଅ । ସେ ତୁମକୁ ସବୁ ଦେବେ ।'' ଏସବୁ ମିଛ କଥାରେ ପଡ଼ି ଲୋକ ଠକେ । ତଥାପି ଶିଖେ ନାହିଁ । ଯୋଉମାନେ ଶିଖୁଛନ୍ତି ସେମାନେ ଆସ୍ତେ ଆସ୍ତେ ମନ୍ଦିର ଠାରୁ ଦୂରତା ରକ୍ଷା କଲେଣି । ମନ୍ଦିର, ମସଜିଦ୍‌କୁ, ଠାକୁର ଉପାସନାକୁ ଗୋଟାଏ ସିମ୍ବଲିକ୍ ଉପାୟରେ ଗ୍ରହଣ କଲେଣି । ଭାବନ୍ତି ଏଇଟା ବି ଥାଉ, ସେଇଟାବି ଥାଉ । ମଣିଷର ଦୁର୍ବଳ ମନଟା ସବୁବେଳେ ଭୟ ଦେଖାଏ । ତେଣୁ ସେ ରାସ୍ତାରେ ଯାଉ ଯାଉ ମନ୍ଦିର ପାଖରେ ମନେ ମନେ ମୁଣ୍ଡିଆଟିଏ ମାରିଦିଏ । ଭାବେ କାଳେ ଠାକୁର ବିଗିଡ଼ି ଯିବେ । ଏଇ ଦୁର୍ବଳତାର ସୁଯୋଗ ନେଉଛି ଏବର ସାଧୁ ସନ୍ନ୍ୟାସୀର ଖୋଳ ପକେଇଥିବା

ରାଜନେତା । ସେ ବୁଲି ବୁଲି ପ୍ରଚାର କରୁଚି "ଧର୍ମ ଆମର ସବୁ । ହିନ୍ଦୁତ୍ୱ ବଢ଼ିଲେ ମଣିଷ ବଞ୍ଚିବ, ଜାତି ବଞ୍ଚିବ, ଦେଶ ବଞ୍ଚିବ । ତେଣୁ ତୁମେ ହିନ୍ଦୁ ବୋଲି ଗର୍ବ କରିବା ଉଚିତ ।" ତାକୁ ଅବଶ୍ୟ ଏଯାଏ କେହି ପଚାରି ନାହାଚି, "ହେ ସାଧୁ ବାବା, ମୁଁ ହିନ୍ଦୁ ବୋଲି ଗର୍ବ କରୁଚି, ମୁଁ ହିନ୍ଦୁର ନିୟମ ମାନୁଚି, କିନ୍ତୁ ମୋ' ପେଟ ତ ପୂରୁ ନାହିଁ । ମୋ' ପିଲାମାନେ ଭୋକରେ ଅଛନ୍ତି । ମୋର ଘର ନାହିଁ । ମୋର ଚାକିରି ଚାଲିଗଲା । ମୋ' ପୁଅ ବେକାର । ମୋ' ସ୍ତ୍ରୀର କି ବଢ଼ିଲା ଝିଅର ପିନ୍ଧିବା ପାଇଁ ଶାଢ଼ୀ ଖଣ୍ଡେ ନାହିଁ । ମୋ' ଛୋଟପୁଅକୁ ଔଷଧ ଟୋପେ ମିଳୁନାହିଁ । ମୋ' ଜମିକୁ ମହାଜନ ନେଇଗଲା । ତେବେ ତୁମ ହିନ୍ଦୁତ୍ୱକୁ ନେଇ ମୁଁ କ'ଣ କରିବି ?"

ଏବେ ଦୁଇଜଣ ମହାନ ବ୍ୟକ୍ତିତ୍ୱ ଓଡ଼ିଶାର କେତେକ ଜାଗାରେ ବୁଲି ବୁଲି ହିନ୍ଦୁତ୍ୱର ସୁରକ୍ଷା ପାଇଁ ଲୋକଙ୍କୁ ବୁଝାଇଥିଲେ । ସେମାନେ ହେଲେ ଜଗଦ୍‌ଗୁରୁ ଶଂକରାଚାର୍ଯ୍ୟ ଓ ଆଉ ଜଣେ ସମଗ୍ର ବିଶ୍ୱରେ ହିନ୍ଦୁତ୍ୱକୁ ଅନ୍ୟ ସବୁଧର୍ମ ଉପରେ ରଖିବାକୁ ଚେଷ୍ଟା କରୁଥିବା ପ୍ରବୀଣ ତୋଗାଡ଼ିଆ । ଏମାନେ କୌଣସି ରାଜନୈତିକ ଦଳର ନୁହଁନ୍ତି କିମ୍ବା ଏମାନେ ମଧ୍ୟ ସନ୍ନ୍ୟାସ ବ୍ରତ ଅବଲମ୍ବନ କରନ୍ତି ନାହିଁ । ମୋର କହିବାର ଅର୍ଥ ଏମାନେ ହିନ୍ଦୁ ଧର୍ମର ସୁରକ୍ଷା ପାଇଁ କହୁଥିଲେ ମଧ୍ୟ ପ୍ରତ୍ୟକ୍ଷ ରାଜନୀତି କରନ୍ତି ନାହିଁ । କିନ୍ତୁ ଦୁହିଁଙ୍କର ବକ୍ତବ୍ୟ ଏକ ହୋଇଥିବାରୁ ଏବଂ ଏବର ଦଳୀୟ ରାଜନୀତିକୁ ସୁହାଉଥିବାର ତାଙ୍କ ମନ ରାଜନୀତିକୁ ପ୍ରଭାବିତ କରୁଛି । ତେବେ ତୋଗାଡ଼ିଆଙ୍କ କେତେ କଥା ପ୍ରଣିଧାନଯୋଗ୍ୟ । ସେ ଗୋଟିଏ ସାକ୍ଷାତକାରରେ କହିଲେ - (ସମାଜ, ୧୨, ଜାନୁଆରୀ) ପାଶ୍ଚାତ୍ୟବାସୀଙ୍କର ସେଠାରେ ସଭ୍ୟତା, ଚଳଣି ପ୍ରତି ଧୀରେ ଧୀରେ ମୋହ ତୁଟିଯାଉଛି । ଫଳରେ ଇଂଲଣ୍ଡରେ ମାତ୍ର ସାତ ପ୍ରତିଶତ ଲୋକ ଚର୍ଚ୍ଚକୁ ଯାଉଛନ୍ତି । ରୋମରେ ଏହି ସଂଖ୍ୟା ତିନି ପ୍ରତିଶତରେ ଆସି ପହଞ୍ଚିଛି । ... ଏହାର ଅର୍ଥ ହିନ୍ଦୁ ଧର୍ମକୁ ସେମାନେ ଧର୍ମାନ୍ତର ହେଇଯାଉଛନ୍ତି ବୋଲି ମୁଁ କହୁନାହିଁ । ଆମର ଜୀବନ ଶୈଳୀର କିଛି ଅଂଶକୁ ସେମାନେ ଗ୍ରହଣ କରୁଛନ୍ତି ।" ମୁଁ ଭାବୁଛି ତାଙ୍କ କଥାଟାର ପ୍ରଥମ ଭାଗଟା ଠିକ୍ । ଦ୍ୱିତୀୟଟା ନୁହେଁ । ଅସଲ କଥା ହେଉଛି ଏବେ ପୃଥିବୀରେ ଆଧୁନିକ ଶିକ୍ଷା ଓ ବିଜ୍ଞାନର ପ୍ରଭାବ ମଣିଷ ଉପରେ ଠିକ୍ ଭାବରେ ପଡୁଛି । ଲୋକେ ବୁଝିଲେଣି ବସ୍ତୁବାଦୀ ଜଗତରେ ଧର୍ମ ଓ ଈଶ୍ୱରଙ୍କ ଭୂମିକା କମି କମି ଆସୁଛି । ଈଶ୍ୱର ଅପେକ୍ଷା ବିଜ୍ଞାନକୁ ଲୋକେ ବେଶୀ ବିଶ୍ୱାସ କଲେଣି । ମନ୍ଦିର, ଚର୍ଚ୍ଚ, ମସ୍‌ଜିଦ୍ ସବୁ

ଏବେ ଆକର୍ଷଣବିହୀନ ହୋଇପଡୁଛି । ତେଣୁ ଏବର ବିଶ୍ୱର ମଣିଷ ଧର୍ମର ମିଥ୍ୟା ଆବରଣରୁ ଧୀରେ ଧୀରେ ମୁକ୍ତ ହେବାକୁ ଚାହୁଁଛି । ଜଣେ ଶାକାହାରୀ ହେଲେ ଯଦି ହିନ୍ଦୁତ୍ୱକୁ ଗ୍ରହଣ କରୁଛି ବୋଲି ବୁଝାଉଥାଆନ୍ତା, ତେବେ ପୃଥିବୀର ସବୁ ଗରିବ ଦଳିତ ଯୋଉମାନେ କେବଳ ଭାତ ଓ ଲୁଣ ଛଡା ଆଉ କିଛି ଖାଇବାକୁ ପାଆନ୍ତି ନାହିଁ ସେମାନେ ପ୍ରଥମେ ହିନ୍ଦୁ ବୋଲି ପରିଗଣିତ ହୁଅନ୍ତେ । ଠିକ୍ ସେମିତି ମଧ ଗୋ-ବଧ ହେଲେ ଦେଶର ଉନ୍ନତି କେମିତି ହେବ ? ଏକଥା ବୁଝିବା ଉଚିତ ଯେ, ବିଜ୍ଞାନର ପ୍ରଭାବ ଯୋଗୁଁ ଆମର କୃଷିଭିତ୍ତିକ ସମାଜର ବ୍ୟବସ୍ଥା ବଦଳି ଗଲାଣି । ଗୋରୁ ଆଉ କୃଷି କାମରେ ଲାଗୁନାହିଁ । ଗାଈ କ୍ଷୀର ମଣିଷର ଆବଶ୍ୟକତା ପୂରଣ କରିପାରୁ ନାହିଁ ବୋଲି ବିଜ୍ଞାନ ତା'ର ବିକଳ୍ପ ବ୍ୟବସ୍ଥା କଲାଣି ।

ବାକି ରହିଲା ଧର୍ମାନ୍ତରଣ । ଧର୍ମାନ୍ତରଣରେ କାହାରି କିଛି ଲାଭ ହୁଏ ନାହିଁ । ଏସବୁ ମଧ ଅନାବଶ୍ୟକ ଉଦ୍ଦେଶ୍ୟ ରଖି କରାଯାଉଛି । ସବୁ ଧର୍ମର ମୌଳବାଦୀମାନେ ଧର୍ମାନ୍ତରଣ କରାଉଛନ୍ତି । କିନ୍ତୁ ହିନ୍ଦୁ ମୌଳବାଦୀମାନେ ପ୍ରଥମେ ହିନ୍ଦୁ କିଏ ଓ ତା'ର ଅଧିକାର ସବୁକୁ ସ୍ପଷ୍ଟ କରିଦେବା ଉଚିତ । ଇସ୍କନ ସଦସ୍ୟମାନେ ହିନ୍ଦୁଧର୍ମର ସବୁ ନୀତିକୁ ଗ୍ରହଣ କରିଥିଲେ ମଧ ସେମାନଙ୍କୁ ହିନ୍ଦୁ ବୋଲି ମୌଳବାଦୀମାନେ ସ୍ୱୀକାର କରୁନାହାନ୍ତି କି ହିନ୍ଦୁ ମନ୍ଦିରରେ ସେମାନଙ୍କୁ ପ୍ରବେଶାଧିକାର ମିଳୁନାହିଁ । ଠିକ୍ ସେମିତି ଯେଉଁ ଦଳିତ ବା ଆଦିବାସୀମାନେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ ଓ ପରେ ସେମାନେ ପୁଣି ହିନ୍ଦୁତ୍ୱକୁ ଫେରିଆସନ୍ତି ସେମାନଙ୍କୁ ମଧ ହିନ୍ଦୁ ମନ୍ଦିରରେ ପ୍ରବେଶାଧିକାର ମିଳୁନାହିଁ । ଯେଉଁ ମୌଳବାଦୀମାନେ ଏ ସମସ୍ତଙ୍କୁ ହିନ୍ଦୁ ବୋଲି ସ୍ୱୀକାର କରୁନାହାନ୍ତି ସେମାନଙ୍କର ଧର୍ମାନ୍ତରଣ ବିଷୟରେ କ'ଣ କହିବାର ଅଛି ? ଯଦି କୁହାଯାଏ ହିନ୍ଦୁତ୍ୱରେ ହିଂସା ବା ଦ୍ୱେଷର ସ୍ଥାନ ନାହିଁ ତେବେ ପ୍ରଥମେ ଗୁଜରାଟ ଗଣହତ୍ୟା ଓ ଷ୍ଟେନ୍ସ୍ ପୋଡ଼ି ଇତ୍ୟାଦିକୁ ପ୍ରକାଶ୍ୟରେ ନିନ୍ଦା କରିବାକୁ ପଡ଼ିବ । ଚର୍ଚ୍ଚ, ମସ୍‌ଜିଦ ଓ ମନ୍ଦିରକୁ ସମାନ ଆଖିରେ ଦେଖିବାକୁ ହେବ । ତାହା ହିଁ ହିନ୍ଦୁତ୍ୱର ଅନ୍ତର୍ନିହିତ ବିଶାଳତା ଓ ମହାନତା । ତାହାହିଁ ପ୍ରକୃତ ଧର୍ମ ।

❑

('ସମୟ'- ୫.୨.୨୦୦୩)

# ବଡ଼ ମାୟାବୀ ଜୀବ ଏ ନୁହେଁ କାହାରି

ପୁରାଣର କଥାଟିଏ - ବଶିଷ୍ଠ ଋଷି ଏକଦା ରାମଚନ୍ଦ୍ରଙ୍କୁ ମାନବ ଜୀବନର ଅସଲ ରହସ୍ୟ ସମ୍ପର୍କରେ ବୁଝାଇବାକୁ ଯାଇ କହିଲେ, ''ହେ ରାମ ! ଗହନ ଅରଣ୍ୟ ମଧ୍ୟରେ ବୁଲୁ ବୁଲୁ ମୁଁ ଥରେ ଅଦ୍ଭୁତ ଜୀବଟିଏ ଦେଖିଥିଲି । ସେ ଭୂଇଁରେ ପଡ଼ିଥାଏ ଏବଂ ପ୍ରତି ମୁହୂର୍ତ୍ତରେ ତା'ର ଆକାର ପ୍ରକାର ବଦଳ କରୁଥାଏ । ତା'ର ହସ୍ତ, ପାଦ, ଆଖି ଓ କାନ ପ୍ରଭୃତି ମଧ୍ୟ କ୍ଷଣ କ୍ଷଣକେ ସ୍ଥାନ ପରିବର୍ତ୍ତନ କରୁ ଥାଆନ୍ତି । ସେ କେତେବେଳେ ପାହାଡ଼ ଓ ଗଛ ଦେହରେ ବାଡ଼େଇ ହୋଇ ଯାଉଥାଏ । ଆଉ କେତେବେଳେ ଆକାଶକୁ ଉଠି ପୁଣି କଚାଡ଼ିହୋଇ ପଡୁଥାଏ । ସେ ଗର୍ଜନ କରୁଥାଏ ପୁଣି ବୀଣା ପରି ସ୍ୱରରେ ଗୀତ ମଧ୍ୟ ଗାଉଥାଏ । ହେ ରାମ ! ମୁଁ ଏ ଆଶ୍ଚର୍ଯ୍ୟ ଜୀବକୁ ଦେଖି ଭାବିଲି ଈଶ୍ୱର ଏହାକୁ କେଉଁ ଉଦ୍ଦେଶ୍ୟରେ ଜନ୍ମ ଦେଇଛନ୍ତି ଓ ଏହାର ନାମ କଅଣ ? ମୁଁ ତ ଏ ପ୍ରକାର ଜୀବକୁ ଆଗରୁ କେବେ ଦେଖି ନଥିଲି ।'' ରାମଚନ୍ଦ୍ର ଆଶ୍ଚର୍ଯ୍ୟ ହୋଇ ବଶିଷ୍ଠଙ୍କୁ ଅନେଇ ରହିଲେ ।

ମହର୍ଷି କିଛିକ୍ଷଣ ଧ୍ୟାନ ମଗ୍ନ ହେଲେ, ତା'ପରେ ଆଖି ଖୋଲି କହିଲେ, ''ମୋ ପ୍ରଶ୍ନର ଉତ୍ତର ମୋ ଭିତରୁ ଆସି ମୋ ଆଗରେ ଛିଡ଼ା ହେଲା । ଜୀବଟି ଆଉ କେହି ନୁହେଁ । ମଣିଷର ମନ ଯେ କି ପ୍ରତି ମୁହୂର୍ତ୍ତରେ ତା'ର ରୂପ, ରଙ୍ଗ, ଆକାର, ପ୍ରକାର, ଇଚ୍ଛା ଓ ଅନିଚ୍ଛାମାନଙ୍କୁ ବଦଳ କରୁଥାଏ । ଏକ ମାୟାବୀ ରୂପ ମଣିଷକୁ ସବୁବେଳେ ପ୍ରଭାବିତ କରି ରଖିଥାଏ ।''

ପାଠକେ ! ବଶିଷ୍ଠ ଋଷି 'ମନ'କୁ ଏହିପରି ଭାବରେ ଦେଖିଥିଲେ । ହୁଏତ ପାଞ୍ଚହଜାର ବର୍ଷତଳେ ତା'ର ବର୍ଣ୍ଣନା ଏମିତି ଭାବରେ କରା ଯାଇଥିଲା । କିନ୍ତୁ ଯା ଭିତରେ ଭାରତବର୍ଷର ନଦୀମାନଙ୍କରେ କେତେ ପାଣି ବହି ଗଲାଣି । ସେ ସମୟ ମଧ୍ୟ ବଦଳି ଗଲାଣି । ଏବେ ଆଉ ବଶିଷ୍ଠ ନାହାନ୍ତି କି ରାଜା ରାମଚନ୍ଦ୍ର ମଧ୍ୟ ନାହାନ୍ତି । ଏ ପରିବର୍ତ୍ତିତ ପରିସ୍ଥିତିରେ ବଶିଷ୍ଠ ଋଷି ବର୍ଣ୍ଣିତ 'ମନ'ର ନାମ ବଦଳି ଯାଇ 'ରାଜନୀତି' ହେଇ ଗଲାଣି । ସେ 'ମନ'ରେ ରାଜନୀତି ଛଡ଼ା ଆଉ କଅଣ ଥାଏ ? କ୍ଷଣ କ୍ଷଣକେ ସେ ତା'ର ରୂପ, ରଙ୍ଗ, ଆକାର, ପ୍ରକାର ସବୁ ବଦଳ କରୁଛି । ମାୟାବୀ ରୂପରେ ମଣିଷକୁ ଆଚ୍ଛନ୍ନ କରି ରଖିଛି । ମଣିଷ ଅନ୍ଧହେଇ ଯାଉଛି । ମାୟା ଜାଲରେ ପଡ଼ି ସେ

କଅଣ କରୁଛି ଜାଣି ପାରୁନି । ତାର ଉଦାହରଣଟିଏ ଦେଖନ୍ତୁ । ଯୋଉ ମାୟାବୀ ରାଜନୀତି ୨୦୦୦ ମସିହାରେ ପାରାଦ୍ୱୀପରେ ତୈଳ ବିଶୋଧନାଗାରର ଶୁଭଦେଇ କହିଥିଲା ଯେ ୨୦୦୩ରେ ତାହା ଉତ୍ପାଦନ ଆରମ୍ଭ କରିବ ଏବଂ ଏହାଦ୍ୱାରା ଲକ୍ଷ ଲକ୍ଷ ଓଡ଼ିଆ ପୁଅ ଚାକିରି ପାଇବେ, ସେଇ ରାଜନୀତି ୨୦୦୩ରେ ତା'ର ରୂପ ବଦଳ କରି କହିଲା ତୈଳ ବିଶୋଧନାଗାର ''ଜରୁର୍ ହୋଗା'' । ଏବେ ଆଉ ଉତ୍ପାଦନ କେବେ ହେବ ସେ କଥା କୁହାଗଲା ନାହିଁ । ହୁଏତ ସେଥିପାଇଁ ପାଞ୍ଚହଜାର ମସିହାକୁ ଲକ୍ଷ୍ୟଧାର୍ଯ୍ୟ ହୋଇଥିବ । ଆଉ ଏକ ରାମାୟଣ ଯୁଗ କି ଆହୁରି ମଧ୍ୟ ଗଡ଼ି ଯାଇପାରେ । କାରଣ 'ଜରୁର ହୋଗା' ଏପରି ଏକ ଭବିଷ୍ୟତ କାଳ ଯାହାର ସୀମା କେହି କେବେ ଧାର୍ଯ୍ୟ କରି ପାରି ନାହିଁ କି ପାରିବ ନାହିଁ ମଧ୍ୟ । ଅନିର୍ଦ୍ଦିଷ୍ଟ କାଳଯାଏଁ ଏହା ଏମିତି ଚାଲିଥିବ ।

ଏ ମାୟାବୀ ଜୀବଟି ଓଡ଼ିଶାରେ ତାର ଜାଲ ଭଲ ଭାବରେ ବିଛାଇ ପାରୁଛି । ଖାଲି ଓଡ଼ିଶାରେ ନୁହେଁ, ସମଗ୍ର ଭାରତରେ । ଜାଲ ବିଛାଇବା ଅତି ସହଜ । ଓଡ଼ିଆମାନେ ଏ ଜାଲରେ ସହଜରେ ପଡ଼ି ଯାଆନ୍ତି । ନାକ ଖାଇଲେ ହଁ, କାନ ଖାଇଲେ ହଁ । ଏ ମାୟାବୀ ରାଜନୀତି ସ୍ୱାଧୀନତାଠାରୁ ଆଜିଯାଏଁ ଯେତେ ଯେତେ ପ୍ରତିଶ୍ରୁତି ଦେଇଛି କେବଳ ରାଉରକେଲା ଇସ୍ପାତ କାରଖାନା ଓ ହୀରାକୁଦ ବନ୍ଧକୁ ଛାଡ଼ିଦେଲେ ଆଉ କେଉଁଟା ପୂରଣ ହେଇଛି ? ନେହେରୁଙ୍କ ସମୟରେ ଏ ମାୟାବୀ ରାଜନୀତି ନ ଥିଲା । ତେଣୁ ତା କଥା ଅଲଗା । ପରବର୍ତ୍ତୀ କାଳରେ ଦଣ୍ଡକାରଣ୍ୟ ଯୋଜନା, ନୀଳାଚଳ ଇସ୍ପାତ ନିଗମ ଯାହା ତିନିଥର ଶୁଭ ଦେଲାପରେ ଏବେ ଢୋକେ ପିଇ ଦଣ୍ଡେ ଜିଉଁଛି, ଗୋପାଳପୁର ଓ ଧାମରା ବନ୍ଦର, ଗୋପାଳପୁର ଇସ୍ପାତ, ଏବଂ ତା ପରେ ୭ଟା ଇସ୍ପାତ କାରଖାନା, ୩ଟି ତୈଳ ବିଶୋଧନାଗାର, ୧୩ଟା ତାପଜ ବିଦ୍ୟୁତ କାରଖାନା, କୃଷିର ଓ ଅନ୍ୟାନ୍ୟ ଶିଳ୍ପ ପାଇଁ ୪୦ ହଜାର କୋଟି ଟଙ୍କାର ପୂର୍ବ ଏସୀୟ ରାଷ୍ଟ୍ରର ପୁଞ୍ଜିଲଗାଣର ନିର୍ଭେଜାଲ ପ୍ରତିଶ୍ରୁତି, ପାଞ୍ଚ ବର୍ଷରେ ୨୦ ଲକ୍ଷ ବେକାରଙ୍କ ଚାକିରି ଏବଂ ଶେଷରେ ପୂର୍ବତଟ ରେଳବାଇ ଇତ୍ୟାଦି ଇତ୍ୟାଦି ଯେତେ ଯାହା ମିଳିଛି ସବୁକୁ ଏ ଯାଏ ଆମେ ଅଣ୍ଟିରେ ସାଇତିଛୁ । ''ମଞ୍ଜି ବି ଲଗା ହେଇଛି'' ଷଢେଇକଳା ଓ ଖରସୁଆଁର । 'ସବୁ ମାୟାରେ ବାୟା' ଆମେ ଗର୍ବରେ ଫାଟି ପଡୁଛୁ । ଆମର ଆଉ କିଛି ନ ଥାଉ ପ୍ରତିଶ୍ରୁତି ତ ଅଛି । ସିଏ ଯିବ କୁଆଡ଼େ ?

କେବଳ ଆମର ଏଇ ମୁନିଋଷିର ଦେଶରେ ହିଁ ପ୍ରଧାନମନ୍ତ୍ରୀଠାରୁ ଆରମ୍ଭ କରି ସରପଞ୍ଚ ଯାଏ ସମସ୍ତେ ସବୁବେଳେ ମିଛ କହି ପାରନ୍ତି । ପାଶ୍ଚାତ୍ୟ ଦେଶୀମାନେ ହିନ୍ଦୁ ନୁହଁନ୍ତି କି ସେଠି ମୁନିଋଷି ନ ଥିଲେ; କିନ୍ତୁ ସେମାନେ ମିଛ କହନ୍ତି ନାହିଁ । ଏଇ ତ ଇରାକ ଘଟଣାରେ ସେମାନେ ଭୁଲଟାକୁ ସ୍ୱୀକାର କରିଗଲେ । ମୋନିକା ଘଟଣାରେ ହେଉ

ହେଉ, ବା ପ୍ରଫୁମୋ ଘଟଣାରେ ହେଉ । ୱାଟରଗେଟ ହେଉ ବା ଅଷ୍ଟ୍ରେଲିଆର ପ୍ରଧାନମନ୍ତ୍ରୀ ବବ୍ ହକ୍ ଘଟଣାରେ ହେଉ, ଜନତା ଆଗରେ ସେମାନେ ଭୁଲଟାକୁ ମାନି ଯାଆନ୍ତି; କିନ୍ତୁ ଆମ ରାଜନୀତି ସେ କଥା କରେ ନାହିଁ । ଆମକୁ ମହାଭାରତ ଶିକ୍ଷା ଦେଇଛି । ଯୁଧିଷ୍ଠିର କଅଣ କହିଲେ; 'ଅଶ୍ୱତ୍ଥମା ହତ' ଏବଂ ତାପରେ ? ଏବର ରାଜନୀତିର ମିଛ ଆହୁରି ମାର୍ଜିତ । ''ଜରୁର ହୋଗା'' । କେତେ ଏସୋସିସ୍ ଦେଖୁନାହାନ୍ତି ? କାହାର ସାଧ ଅଛି ତାକୁ ସନ୍ଦେହ କରିବ ? ଏବେ ପୁଣି କହିଲେଣି କୋଟିଏ ଲୋକଙ୍କୁ ଚାକିରି ଦେବେ । ନରସିଂହ ରାଓ ଗରିବଙ୍କ ଦୁଃଖ ଦୂର କରିବାକୁ ନିର୍ବାଚନ ପୂର୍ବରୁ ସାତଟି ଡିପାର୍ଟମେଣ୍ଟକୁ ଗୋଟିଏ ଅର୍ଡରରେ 'ପ୍ରୋ-ପୁଅର' ବୋଲି ଘୋଷଣା କରି ଦେଲେ । ଗରିବମାନେ ଏମିତି ହଟିଗଲେ ଯେ ଏବର ସରକାର ବି.ପି.ଏଲ ତାଲିକାରେ କାହାକୁ ରଖିବେ ଚିହ୍ନଟ କରି ପାରୁ ନାହାନ୍ତି । ଆମ ଜାନକୀ ବାବୁ କହିଥିଲେ ୨୦ ଲକ୍ଷ ବେକାରଙ୍କୁ ଚାକିରି ଦେବେ । ୨୦ଜଣ ମଧ୍ୟ ପାଇଲେନି । ଏବର ପ୍ରଧାନମନ୍ତ୍ରୀ ତାଙ୍କୁ ଟପିଗଲେ । ପ୍ରାକ୍ ନିର୍ବାଚନ ପ୍ରତିଶ୍ରୁତି କୋଟିଏ ।

ମିଛ କିଏ ଓ କାହିଁକି କୁହେ ? ବିବେକାନନ୍ଦ କହିଲେ ''ଯିଏ ଯେତେ ଦୁର୍ବଳ ସେ ସେତିକି ମିଛ, ଛଳନା ଓ ମାୟାର ଆଶ୍ରୟ ନିଏ । ଭୟରୁ ଧର୍ମର ସୃଷ୍ଟି ।'' 'ଜରୁର ହୋଗା'କୁ କେବେବି 'ହୁଆ'ରେ ପରିଣତ କରି ପାରୁ ନ ଥିବା ପ୍ରଧାନମନ୍ତ୍ରୀ ଭାରତର ଦୁର୍ବଳତମ ପ୍ରଧାନମନ୍ତ୍ରୀ । ସେ ଏ ଦେଶର ଏକମାତ୍ର ପ୍ରଧାନମନ୍ତ୍ରୀ ଯେ କି କୌଣସି ମୁଖ୍ୟମନ୍ତ୍ରୀଙ୍କୁ କୌଣସି ବିଷୟରେ ନିର୍ଦ୍ଦେଶ ଦେଇ ପାରିବେ ନାହିଁ । ବରଂ ସୋନିଆ ପାରିବେ । କିନ୍ତୁ ସେ ନୁହେଁ । ଏପରିକି ନିଜ ଦଳର ଏକମାତ୍ର ମୁଖ୍ୟମନ୍ତ୍ରୀ ନରେନ୍ଦ୍ର ମୋଦିଙ୍କୁ ମଧ୍ୟ ଦେଇ ପାରିବେ ନାହିଁ । ଦେଲେ ସେ ହୁଏତ କହିବେ, ''ସରି, କମ୍ ଥ୍ରୋ ପ୍ରପର ଚାନେଲ ।'' ଯିଏ ଯେତେ ଦୁର୍ବଳ ହେବ ସିଏ ସେତିକି ଛନଛାର ମୁଖା ପିନ୍ଧିବ । ସିଏ ସେତିକି ବାହାସ୍ଫୋଟ ମାରିବ । ଯିଏ ଯେତିକି ନିଜକୁ ଅସୁରକ୍ଷିତ ମନେକରିବ ସିଏ ସେତିକି ମାୟାଜାଲ ଭିତରେ ନିଜକୁ ଢାଙ୍କି ରଖିବ । ଆମ ମୁଖ୍ୟମନ୍ତ୍ରୀ ସେ ସବୁଠୁ ଅଲଗା ନୁହଁନ୍ତି । ପାରାଦ୍ୱୀପ ବିଶୋଧନାଗାର କାହିଁକି ହେଲା ନାହିଁ ବୋଲି ସେ କାହାକୁ ପଚାରିବେ ? ପ୍ରଧାନମନ୍ତ୍ରୀଙ୍କୁ ? ସେ ସାହସ କାହିଁ ?'' ''ତ୍ରିଶୂଳ ବନ୍ଦ କର'', କହି ପାରିବେ ଏ କଥା ? ସିଂହାସନ ଓଲଟି ଯାଏ ଯଦି ? ତେଣୁ ସବୁଠି ଗୋଟାଏ 'ପିଠାଖିଆ ଠାରରେ' କାମ ଚାଲିଛି । ମାୟାର ଭ୍ରମ ଭିତରେ ସମସ୍ତେ ପିଠା ଖାଉଛନ୍ତି । ଛଳନାର ଖୋଳ ଭିତରେ ସମସ୍ତେ । ଛଳନାର ବ୍ୟୂହ ଭିତରେ ଥିବା ଲୋକଟି ସବୁବେଳେ ନିଜର-ଅନ୍ୟ କାହାରି ନୁହେଁ । ❑

('ସମାଜ'- ୧୦.୮.୨୦୦୩)

# ଶୋଭାଯାତ୍ରା ରବିବାରର ଅବସର ବିନୋଦନ ନୁହେଁ

ଶୋଭାଯାତ୍ରା କେବେ ମଣିଷର ଅବସର ବିନୋଦ ନ ଥିଲା କି ନାହିଁ । ସପ୍ତାହର ଶେଷ ଦିନ କିମ୍ବା ଛୁଟି ସମୟରେ କର୍ମକ୍ଳାନ୍ତ ମନକୁ ହାଲୁକା କରିବା ଉଦ୍ଦେଶ୍ୟରେ ଶୋଭାଯାତ୍ରାକୁ ବ୍ୟବହାର କରା ଯାଇନାହିଁ କିମ୍ବା ଶୋଭାଯାତ୍ରାର ସେମିତି କିଛି ଉଦ୍ଦେଶ୍ୟ ମଧ୍ୟ ନ ଥିଲା । ଶୋଭାଯାତ୍ରା ବରଯାତ୍ରୀଙ୍କ ମାନସିକ ଉନ୍ମାଦନା ମଧ୍ୟ ନୁହେଁ ଯେଉଁଠି ଯାତ୍ରୀମାନେ ଗୋଟାଏ ହାତରେ ମୃଦୁ ପାନୀୟ ବା ଶରୀର ଓ ମନ ଉତ୍ତେଜକ ସୁରା ଧରି ଅନ୍ୟ ହାତରେ ସିଗାରେଟ ଫୁଙ୍କୁ ଫୁଙ୍କୁ ଢଳି ଢଳି ଚାଲନ୍ତି କିମ୍ବା ନିଜ ଆୟତ୍ତରେ ନ ଥିବା ପାଦକୁ ସମ୍ଭାଳୁ ସମ୍ଭାଳୁ ନାଁ ନ ଥିବା ନୃତ୍ୟର ତାଳେ ତାଳେ ଦୋହଲୁ ଥାଆନ୍ତି । ଶୋଭାଯାତ୍ରା ଏକ ବିଳାସ ମଧ୍ୟ ନୁହେଁ ଯେଉଁଠି ମଣିଷର ଖିଆଲି ମନ ଖୋଜୁଥାଏ ଟିକିଏ ଅଏସ କରିବାକୁ । ଶୋଭାଯାତ୍ରା କେବେ ପାର୍କ ବା ହ୍ରଦ କୂଳରେ ଆୟୋଜିତ କବିତା ଆସର ନ ଥାଏ ଯେଉଁଠି କବିମାନେ ବେକରେ ଗଜରାମାଳ ପକେଇ ନାରୀ ଓ ଫୁଲର ଚିତ୍ର ଆଙ୍କୁ ଥାଆନ୍ତି ।

ଶୋଭାଯାତ୍ରା ହେଉଛି ଭୋକିଲା ପେଟର ପଟୁଆର । ପୁଂଜୀଭୂତ ଅସନ୍ତୋଷ ଓ ଅତ୍ୟାଚାରର ଭାରରେ ମୁଣ୍ଡ ଟେକି ପାରୁ ନ ଥିବା ନିର୍ଯ୍ୟାତିତ ମଣିଷର ଏକୀଭୂତ ଅନ୍ୟନାମ ଶୋଭାଯାତ୍ରା । ଲୁହ ଓ ଲହୁର ସମ୍ମିଳିତ ବୃନ୍ଦଗାନର ଅନ୍ୟନାମ ଶୋଭାଯାତ୍ରା । ମଣିଷର ଜନ୍ମଗତ ଅଧିକାରକୁ ସାବ୍ୟସ୍ତ କରିବା ପାଇଁ, ମଣିଷର ବଞ୍ଚିବାର ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ଯେଉଁ ସଂଗ୍ରାମ ଆବଶ୍ୟକ ହୁଏ ତାର ସାଜସଜାର ଅନ୍ୟନାମ ହିଁ ଶୋଭାଯାତ୍ରା । ଏକ ସମରାଭ୍ୟାସ ବଞ୍ଚିବା ପାଇଁ, ନାଯ୍ୟ ଅଧିକାର ପାଇଁ । ନିଜ ହକକୁ ଛଡ଼େଇ ନେବା ପାଇଁ । କାରଣ ମଣିଷ ସବୁ ସହିପାରେ । ପେଟର ଦାଉ ସହି ପାରେନା । ଏହି ଦାଉକୁ ବାକିଆ ଖାତାରେ ଚଢ଼େଇ ହୁଏନା । ସେ ମଧ୍ୟ କାହାକୁ ଅପେକ୍ଷା କରେନା । ଘଣ୍ଟା ଓ ମିନିଟର ପ୍ରତ୍ୟେକ ଟିକି ଟିକି ସହିତ ସେ ଦାଉର ଅସହ୍ୟ ଯନ୍ତ୍ରଣା ବଢ଼ି ବଢ଼ି ଚାଲିଥାଏ । ସେତେବେଳେ ବଞ୍ଚିବାର ମୋହ ତାକୁ ପାଗଳ କରେ । ମୁକ୍ତିର ମୋହ ତାକୁ ଉନ୍ମାଦ କରାଏ । ସେ ଖୋଜେ ମୁକ୍ତିର ପଥ । ସେଇ ଖୋଜିବାର

ପ୍ରକ୍ରିୟା ହିଁ ଶୋଭାଯାତ୍ରା । ତାକୁ ଆଉ କିଛି କହି ହେବ ନାହିଁ । ତାକୁ ଏକ ସୌଖୀନ ଉଦ୍ଦେଶ୍ୟରେ ନେଇ ହେବ ନାହିଁ । ଶୋଭାଯାତ୍ରା ମୁକ୍ତିକାମୀ ମଣିଷର ଯୁଦ୍ଧ ଯାତ୍ରା । ପୃଥିବୀର ସବୁ ଯୁଦ୍ଧରେ ମଣିଷ ହିଁ ପ୍ରଥମେ ବଳି ପଡ଼ନ୍ତି । ଯେ କୌଣସି ଯୁଦ୍ଧରେ ସୈନିକ ପ୍ରଥମେ ବଳି ପଡ଼େ । ସେ ବଳି ଅନିବାର୍ଯ୍ୟ । ଏକ ଅବଶ୍ୟମ୍ଭାବୀ ସ୍ୱାଭାବିକତା । ତାକୁ ଏଡେଇ ହେବ ନାହିଁ । କିନ୍ତୁ ଯୁଦ୍ଧର ପ୍ରକ୍ରିୟା ଥରେ ଆରମ୍ଭ ହୋଇ ଗଲେ ଆଖି ଆଗରେ ଥିବା ମଣିଷଙ୍କର, ଯୁଦ୍ଧ ସହିତ ସଂପୃକ୍ତ ନ ଥିଲେ ମଧ୍ୟ ମୃତ୍ୟୁ ଅବଧାରିତ । ସେମାନେ ଶତ୍ରୁ ପକ୍ଷର ହୋଇ ପାରନ୍ତି କିମ୍ବା ନ ହୋଇ ପାରନ୍ତି ମଧ୍ୟ । ସେମାନେ ପଥଚାରୀ ହୋଇ ପାରନ୍ତି । ଯୁଦ୍ଧର ପ୍ରଭାବ ତାର ସୀମା ସରହଦ ଭିତରେ ଆସୁଥିବା କୀଟ ପତଙ୍ଗକୁ ମଧ୍ୟ ଛାଡ଼େ ନାହିଁ । ସମସ୍ତେ ଧତି ସହିବାକୁ ବାଧ୍ୟ । ଯୁଦ୍ଧର ଇତିହାସ ଆମକୁ ତାହା ହିଁ କୁହେ । ଶୋଭାଯାତ୍ରାକୁ ଆଇନ ବଳରେ ନିୟନ୍ତ୍ରିତ କରି ହୁଏନାହିଁ । ଭୋକିଲା ପେଟର ପଟୁଆର ପାଖରେ ଆଇନ ଅତ୍ୟନ୍ତ ଦୁର୍ବଳ । ପୃଥିବୀର କୌଣସି ଦେଶରେ ହୋଇ ନାହିଁ । ଅତ୍ୟନ୍ତ ସ୍ୱେଚ୍ଛାଚାରୀ ଶାସନ ମଧ୍ୟ ପୁଂଜୀଭୂତ ଅସନ୍ତୋଷରେ ଉର୍ଦ୍ଧ୍ୱମୁଖୀ ହେଉଥିବା ଭୋକିଲାଙ୍କ ଯୁଦ୍ଧକୁ କେବେ ଅଟକାଇ ପାରିନାହିଁ । ନିୟନ୍ତ୍ରିତ କରିପାରି ନାହିଁ । ଆଜିର ଭୋକ କାଲିକୁ ଅପେକ୍ଷା କରେନା । ସେ ରାଜା ବା ଶାସନକୁ ମୋଟେ ଖାତିର କରେନା । ତେଣୁ ତାକୁ ଅଟକେଇବ କିଏ ?

ଆମ ଭାରତବର୍ଷ ଗୋଟିଏ ଗଣତନ୍ତ୍ରର ଦେଶ । ଗଣତନ୍ତ୍ରରେ ଲୋକ ସର୍ବେସର୍ବା । ସେମାନେ ଶାସନ କରନ୍ତି, ଆଇନ ମଧ୍ୟ ତିଆରି କରନ୍ତି । ସେମାନଙ୍କ ନିଜ ପାଇଁ ନିୟମ ନୀତି ନିର୍ଦ୍ଧାରଣ କରନ୍ତି । ତେଣୁ ତାଙ୍କ ହାତରେ ଥାଏ ପ୍ରଭୂତ କ୍ଷମତା । ସେ କ୍ଷମତା ରାଷ୍ଟ୍ରର ଯେ କୌଣସି କ୍ଷମତା ଠାରୁ ଅନେକ ବଡ । ସେଇ ଅନୁସାରେ ଆମ ସମ୍ବିଧାନ ତିଆରି ହେଇଚି । ସେ ସମ୍ବିଧାନ ସବୁ କ୍ଷମତା ଠୁଳ କରିଛି ଲୋକଙ୍କ ହାତରେ । କୌଣସି ବ୍ୟକ୍ତି ବିଶେଷ କି ଅନୁଷ୍ଠାନକୁ ସେ ମୋଟେ ବଡ ବୋଲି ବିଚାର କରେ ନାହିଁ । ଆମ ସମ୍ବିଧାନରେ ଯେଉଁ ତିନିଟି ସ୍ତମ୍ଭ କଥା କୁହା ଯାଇଛି, ସେମାନେ ମଧ୍ୟ ଲୋକଙ୍କ ଅପେକ୍ଷା ବେଶି କ୍ଷମତାଶାଳୀ ନୁହଁନ୍ତି କି ଲୋକଙ୍କୁ ଏକତରଫା ଭାବେ ଜବତ କରିବାକୁ ଅଧିକାର ପାଇ ନାହାଁନ୍ତି । ଯେହେତୁ ତିନିଟି ଯାକ ସ୍ତମ୍ଭ ପରସ୍ପର ଉପରେ ନିର୍ଭରଶୀଳ । କେହି ସୁପ୍ରିମ ନୁହଁନ୍ତି । ସୁପ୍ରିମ ହେବାର ସୁଯୋଗ ମଧ୍ୟ ନାହିଁ । ସେ ଅବସ୍ଥାରେ କୌଣସି ସ୍ତମ୍ଭ ନିଜକୁ ସର୍ବଶକ୍ତିମାନ ବୋଲି ଭାବିବାର ଅବକାଶ ମୋଟେ ନାହିଁ । କାରଣ ସେମାନେ ପ୍ରତ୍ୟେକ ପ୍ରତ୍ୟେକ ପାଖରେ ଉତ୍ତରଦାୟୀ ଏବଂ ଶେଷରେ ସେ ସମସ୍ତେ ଲୋକଙ୍କ ପାଖରେ ଉତ୍ତରଦାୟୀ । ସାର୍ବଭୌମ କ୍ଷମତା କାହାରିକୁ ଦିଆଯାଇ ନାହିଁ ।

ଲୋକେ ନିଜକୁ ଶାସନ କରିବା କ୍ଷମତା ତିଆରି କରିଛନ୍ତି ଠିକ, କିନ୍ତୁ ସେ ଆଇନ ଲୋକଙ୍କ ବିରୋଧରେ ପ୍ରୟୋଗ ହେଲେ କିମ୍ବା ଆଇନର ଅପପ୍ରୟୋଗ ହେଲେ ସେମାନେ ସମଗ୍ର ଏଷ୍ଟାବ୍ଲିଶମେଣ୍ଟକୁ ପୋପାଡ଼ି ଦେଇ ପାରନ୍ତି । ଯେମିତି ହୋଇଥିଲା ଜରୁରୀକାଳୀନ ପରିସ୍ଥିତିର ଅବସାନ ହେଲା ପରେ । ଲୋକେ ସେ ଜରୁରୀକାଳୀନ ପରିସ୍ଥିତ କଥା ଭୁଲିନାହାନ୍ତି । ଭୁଲିବେ ନାହିଁ ମଧ୍ୟ । ଶୋଭାଯାତ୍ରା ବାହାର କରିବାର ଅଧିକାର ବା ପ୍ରତିବାଦ କରିବାର ଅଧିକାର, ଧର୍ମଘଟର ଅଧିକାର ଏ ସବୁକୁ ମଣିଷର ବଂଚିବାର ଅଧିକାର ଭାବରେ ଗ୍ରହଣ କରାଯିବା ଉଚିତ । ପ୍ରତିବାଦର ଅଧିକାରକୁ ଛଡେଇ ନେବା ଅର୍ଥ ଆଉ ଏକ ଏମାରଜେନ୍ସି ଘୋଷଣା କରିବା । ଏମାର୍ଜେନ୍ସି କେବଳ ଲୋକଙ୍କ ଉପରେ ଅତ୍ୟାଚାରର ସୁଯୋଗ ସୃଷ୍ଟି କରେ । ସମଗ୍ର ମଣିଷ ସମାଜ ଭୟଭୀତ ହୋଇଯାଏ । ବାହାରକୁ ବାହାରି ପାରେନା । ଏବଂ ତା ପରେ ଯେଉଁ ବିସ୍ଫୋରଣ ଘଟେ ତାକୁ କିଏ ସମ୍ଭାଳି ପାରିବ ? ଆମ ସାମ୍ବିଧାନିକ ନିୟମ ଅନୁସାରେ ଜଣେ ଅଭିଯୋଗକାରୀ କେବେ ନିଜେ ନିଜର ବିଚାର କରି ପାରେନା । ସେ ସୁଯୋଗ ତାକୁ ଦିଆଯାଇନି । ପୃଥିବୀରେ କୌଣସି ଗଣତାନ୍ତ୍ରିକ ରାଷ୍ଟ୍ରରେ ଅଭିଯୋଗକାରୀ ନିଜେ ନିଜର ବିଚାର କରିବାର ନଜିର ନାହିଁ । ଯଦି ସେପରି ହୁଏ ସେ କ୍ଷେତ୍ରରେ ଆଇନର ଅପପ୍ରୟୋଗ ହେବାର ସମ୍ଭାବନା ଥାଏ । କାରଣ ସେଠି ନ୍ୟାୟର ନିକିତି ନିଜ ଆଡ଼କୁ ବେଶି ଢଳିବାର ସମ୍ଭାବନା ଅଛି । ଯାହାର ଅନ୍ୟନାମ ଆଇନର ଧର୍ଷଣ । ଭାରତବର୍ଷର ମହାନ ପରମ୍ପରାରେ ସେ ଅବସ୍ଥା କେବେ ବି ସୃଷ୍ଟି ହେଇନାହିଁ । ତେଣୁ କଲିକତାର ଜନ ଗହଳିକୁ କାଟି ଆଗକୁ ଯାଉଥିବା ଭୋକିଲା ଲୋକଙ୍କ ପଟୁଆରରେ ମହାମାନ୍ୟ ଆଇନର ଦଣ୍ଡଧାରୀ ଅଟକି ଯାଇ ଯୋଉ ଅଭିଯୋଗ ଆଣିଲେ ତାର ବିଚାର ସେ ନିଜେ କରି ନ ପାରନ୍ତି । ଯଦି କରନ୍ତି ତାହା ଆଇନର ପରମ୍ପରାଗତ ପବିତ୍ରତାକୁ ନଷ୍ଟ କରିବ । ଆମେ ସେ ପରମ୍ପରାକୁ ଉର୍ଦ୍ଧ୍ୱରେ ଟେକି ଧରିବାକୁ ଚେଷ୍ଟା କରିବା ଉଚିତ ।

❑

('ଅନୁପମ ଭାରତ'- ୬.୧୧.୨୦୦୩)

# ଦୁର୍ନୀତିର ଅନ୍ୟ ନାମ ନୀତି ହେଲେ

ଦୁର୍ନୀତିର ଅନ୍ୟ ନାମ ନୀତି ହେଲେ କଥାଟା ଅନେକ ସହଜ ହେଇଯିବ । ସେତେବେଳେ ଆଉ କାହାରି କିଛି ଚିନ୍ତା କରିବାର ନ ଥିବ । ପୁଲିସ ଓ ପ୍ରଶାସନର ମୁଣ୍ଡବ୍ୟଥା ଯଥେଷ୍ଟ କମିଯିବ । ସେମାନଙ୍କୁ ବର୍ଷଯାକ ବ୍ୟସ୍ତ ରହିବାକୁ ହେବ ନାହିଁ । ସେମାନେ ବରଂ ସେଇ ସମୟରେ ଅନେକ ଜନ ହିତକର କାମରେ ଯୋଗ ଦେଇ ପାରିବେ । ସମାଜରୁ ଅପରାଧ ମଧ୍ୟ କମିଯିବ । ସେତେବେଳେ ନେତାମାନେ ବରଂ କହି ପାରିବେ ଯେ ଆମେ ଗୋଟାଏ ଅପରାଧବିହୀନ ଶାସନ ବ୍ୟବସ୍ଥା ଲୋକଙ୍କୁ ଦେଇ ପାରିଛୁଁ । ଆଉ କେହି କେହି ପାଦେ ଆଗେଇ ଯାଇ କହି ପାରିବେ ଯେ, ''ଯାହା କଂଗ୍ରେସ ଗତ ପଚାଶ ବର୍ଷ ଭିତରେ ପାରି ନ ଥିଲା ଆମେ ତାକୁ କଲମ ଗାରରେ କରି ଦେଲୁଁ ।'' ଫର୍ଣ୍ଣାଡ଼େସଙ୍କ ପରି ମନ୍ତ୍ରୀମାନେ ଜୟପ୍ରକାଶ ଓ ଲୋହିଆଙ୍କ ଉପରେ ଚଟି ବହି ଲେଖି 'ଏହାହିଁ ସୋସିଆଲିଜମ୍‌ର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ବୋଲି କହି ପାରିବେ । ଏସବୁ ସତ୍ତ୍ୱେ କିଛି ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଅସୁବିଧାରେ ପଡ଼ିବେ । ସେମାନଙ୍କୁ ବିରୋଧ କରୁଥିବା କୌଣସି ବ୍ୟକ୍ତି ବା ରାଜନେତାଙ୍କୁ ସେ ଦୁର୍ନୀତି କରୁଛନ୍ତି ବୋଲି କହି ତାଙ୍କ ପଛରେ ଦୁର୍ନୀତି ନିବାରଣ ବିଭାଗକୁ ଲଗେଇ ଦେଇ ପାରିବେ ନାହିଁ । ସେମାନଙ୍କୁ ରାତି ଅଧିଆ ମନ୍ତ୍ରୀମଣ୍ଡଳରୁ ବା ସେମିତିକା ଅନ୍ୟ କୌଣସି ପଦରୁ ବାହାର କରି ତାଙ୍କ ଅଫିସରେ ତାଲା ପକେଇ ପାରିବେ ନାହିଁ । ପୁଲିସ ମଧ୍ୟ 'ତାଙ୍କ ଅଫିସ ଓ ଘରୁ ଅନେକ ଗୁରୁତ୍ୱପୂର୍ଣ୍ଣ କାଗଜ ଜବତ ହେଇଛି' ବୋଲି କହିପାରିବ ନାହିଁ । ଏସବୁ ରାଜନୈତିକ ମାମଲାରେ ଅବଶ୍ୟ କେବେ ଚାର୍ଜସିଟ ଦିଆଯାଏ ନାହିଁ । ନିର୍ଦ୍ଦେଶ ନ ମିଳିଲେ ଫାଇନାଲ ରିପୋର୍ଟ ମଧ୍ୟ ଦେଇ ହୁଏନା । ତେଣୁ ପୁଲିସ ଅସୁବିଧାରେ ପଡ଼େ ।

ଦୁର୍ନୀତିର ଅନ୍ୟ ନାମ ନୀତି ହେଲେ ଗଣମାଧ୍ୟମ ମଧ୍ୟ ଅଡୁଆରେ ପଡ଼ିବ । ଯେଉଁମାନେ ଚମକ ସୃଷ୍ଟି କରିବାକୁ ଚାହାଁନ୍ତି ସେମାନଙ୍କ କାଟତି ଅନେକ କମିଯିବ । କିନ୍ତୁ ସବୁଠାରୁ ବେଶୀ ଅଡୁଆରେ ପଡ଼ିବେ ଏଇ ପ୍ରାଥମିକ ଶିକ୍ଷକମାନେ । ମାଧ୍ୟମିକ ଶିକ୍ଷକମାନେ ମଧ୍ୟ । ଯେଉଁ ବୟସରେ ପିଲାମାନଙ୍କୁ ନୀତିଶିକ୍ଷା ଦିଆଯାଏ ଏବଂ ଏଇ ମହତ୍ କାମ ପାଇଁ ସେମାନଙ୍କୁ ଆମ ନେତାମାନେ 'ସମାଜର ମେରୁଦଣ୍ଡ' କହି ବିନା

ଦରମାରେ କାମ କରାନ୍ତି, ସେ ଶିକ୍ଷକମାନଙ୍କ ପାଟି କ୍ଲାସରେ ଖଜି ମାରିଯିବ । ସେମାନେ ନୀତି ଓ ଦୁର୍ନୀତିର ସଂଜ୍ଞା ଖୋଜି ପାଇବେ ନାହିଁ । କାରଣ ସେମାନେ ଏଯାଏଁ ଜାଣିଥିଲେ ଯେ ନୀତି ଶେଷ ହେଲେ ଅନୀତି ଆରମ୍ଭ ହୁଏ ଏବଂ ଅନୀତିର ପୂର୍ଣ୍ଣାଙ୍ଗ ବିକାଶ ହୁଏ ଦୁର୍ନୀତିରେ । ଆମର ଏସବୁ କହିବାର ଅର୍ଥ ହେଉଛି ଦୁର୍ନୀତି ବିରୋଧରେ ଯିଏ ଯେତେ କହୁ ବା ଲେଖୁ ନା କାହିଁକି ଏବଂ ଦୁର୍ନୀତି ବିରୋଧରେ ପୁଲିସ ପ୍ରଶାସନର ସମରସଜ୍ଜା ଯେତେ ହେଉନା କାହିଁକି ଦୁର୍ନୀତି କିନ୍ତୁ ତା' ରାସ୍ତାରେ ଠିକ୍ ଚାଲିଛି । ସେ ମୋଟେ କାହାକୁ ଖାତିର କରୁନାହିଁ । ମଣିଷ ଦୁର୍ନୀତି କରେ; କିନ୍ତୁ ସେ ଇଶ୍ୱରଙ୍କୁ ଭୟ କରେ ବୋଲି ତା' ପାଖରେ ଯାଇ ପହଞ୍ଚିଯାଏ । ଦୁର୍ନୀତି କିନ୍ତୁ ଈଶ୍ୱରଙ୍କୁ ମଧ୍ୟ ଭୟ କରେନା । ଏବେ ସମଗ୍ର ଭାରତରେ ଦୁର୍ନୀତି ନିବାରଣ ସପ୍ତାହ ପାଳିତ ହୋଇଗଲା । ବେଶ୍ ଜାକଜମକରେ ହେଲା । ସତେ ଯେମିତି ଗୋଟାଏ ସରକାରୀ ପର୍ବ । ପର୍ବକୁ ଏବେ ଯିଏ ଯେତେ ଧୂମଧାମରେ ପାଳନ କରୁଛି ସେଥିରେ ତାର ସେତିକି ଆନ୍ତରିକତା ଅଛି ବୋଲି ପ୍ରମାଣିତ କରୁଛି । ଧୂମଧଡ଼କା ଯେତେ ବଢ଼ିବ ସେ ସେତିକି ପ୍ରଚାର ପାଇବ । ଫଟୋ ଓ ଭାଷଣ ସବୁ ରେକର୍ଡ଼ ହେଇ ଟିଭି ଓ ଆକାଶବାଣୀରେ ପ୍ରସାରିତ ହେବ । ସମ୍ବାଦପତ୍ରରେ ସ୍ଥାନ ପାଇବ । ଦୁର୍ନୀତି ତାକୁ ଦେଖିଲେ ଡରେ ନାହିଁ କି ଟିକିଏ ବି ଲାଜ କରେ ନାହିଁ । ଆମେ ଏବେ ଯେତେବେଳେ ଦୁର୍ନୀତି ବିରୋଧରେ ସଚେତନତା ସୃଷ୍ଟି ପାଇଁ ସପ୍ତାହ ବ୍ୟାପୀ ଆନ୍ଦୋଳନ କରୁଥିଲୁଁ ଠିକ୍ ସେତିକି ବେଳେ ଦୁର୍ନୀତି ମଧ୍ୟ ତାର ଜୟଯାତ୍ରା ଜାରି ରଖିଥିଲା । ୩୬ ହଜାର କୋଟି ଟଙ୍କାର ଜାଲ ଷ୍ଟାମ୍ପ ପେପର ମାମଲାର ଅବଦୁଲ କରିମ ତେଲଗୀ ଏତିକିବେଳେ ଧରା ପଡ଼ିଲା । ଏହି ମାମଲାରେ ଏବେ ଭାରତର ଅନେକ ରାଜ୍ୟ ଜଡ଼ିତ ହେଇ ପଡ଼ିବାର ସମ୍ଭାବନା ଦେଖାଦେଇଛି । ବର୍ତ୍ତମାନ ସୁଦ୍ଧା ଭାରତର ଏହି ବୃହତ୍ତମ ଅପରାଧର ଚେର ଆନ୍ଧ୍ର, କର୍ଣ୍ଣାଟକ, ମହାରାଷ୍ଟ୍ର, ଦିଲ୍ଲୀ ଓ ଓଡ଼ିଶାରେ ପହଞ୍ଚି ସାରିଥିବାର ପ୍ରକାଶ ପାଇଛି । ସବୁଯାକ ଧରା ପଡ଼ିଲା ପରେ ତାହା କେତେ ହଜାର କୋଟି କି କେତେ ବିଲିଅନ ଡଲାରକୁ ଟପିବ ସେ କଥା କିଏ କହିବ ? ତେଲଗୀ ଧରା ପଡ଼ିଲା ପରେ ସମ୍ବାଦପତ୍ରକୁ କହିଛି ଯେ 'ତାକୁ ଓ ତାର ପରିବାରକୁ ଯଦି ସୁରକ୍ଷା ଦିଆଯାଏ ତେବେ ସେ ଏହି ମାମଲାରେ କୋଉ ବଡ଼ ବଡ଼ ଅଫିସର ଓ ନେତା ଜଡ଼ିତ ଅଛନ୍ତି ତାହା ପ୍ରକାଶ କରିବ ।' ବମ୍ବେରେ ଜଣେ ଆଇ.ଜି. ଏଥିରେ ଜଡ଼ିତ ଥିବାର ଜଣାପଡ଼ିବା ପରେ ତାଙ୍କୁ ଏବେ ଛୁଟିରେ ଯିବାକୁ ବାଧ୍ୟ କରାଯାଇଛି । ସର୍ବଶେଷ ଖବରରୁ ଜଣାଯାଉଛି ଯେ ଏହି ମାମଲାରେ କୁଆଡ଼େ ପୂର୍ବତନ ଉପ ପ୍ରଧାନମନ୍ତ୍ରୀଙ୍କର ମଧ୍ୟ ସଂଯୋଗ ରହିଛି । ଓଡ଼ିଶାରେ ଏବେ ଅନୁସନ୍ଧାନ ଆରମ୍ଭ ହୋଇଛି । ଖୁବ୍ ଶୀଘ୍ର ଅନେକ କଥା ଜଣାପଡ଼ିବ । ଆନ୍ଧ୍ରରେ ଜଣେ ମନ୍ତ୍ରୀଙ୍କ ନାମ ମଧ୍ୟ

ପ୍ରକାଶ ପାଇଛି । ଦୁର୍ନୀତି ନିବାରଣ ସପ୍ତାହ ପାଳନ ସମୟରେ ଆଉ ଏକ ଉଲ୍ଲେଖଯୋଗ୍ୟ ଘଟଣା ପ୍ରକାଶ ପାଇଲା ଯେ କେନ୍ଦ୍ରର ବିଜେପି ମନ୍ତ୍ରୀ ଜୁଦେଓଙ୍କ ସମ୍ପର୍କରେ । ତାକୁ ଆଉ ଏକ ତେହେଲକା ଘଟଣା ବୋଲି କୁହା ଯାଉଛି । ହୋଟେଲକୁ ଯାଇ ମାନ୍ୟବର ମନ୍ତ୍ରୀ ଅର୍ଥ ଗ୍ରହଣ କରୁଥିବାର ଫଟୋ ଓ ଅର୍ଥ ସମ୍ପର୍କରେ ତାଙ୍କର ମତାମତକୁ ଟେପ କରାଯାଇଛି । ଏଥିରେ ଅନ୍ୟାନ୍ୟ ଅନେକ ନେତା ଓ ମନ୍ତ୍ରୀ ଥିବାର ସନ୍ଦେହ କରାଯାଉଛି । ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ନାମ ମଧ ପ୍ରକାଶ ପାଇଛି । ଅବଶ୍ୟ ସେ ଅଷ୍ଟ୍ରେଲିଆର ପ୍ରତିନିଧିଙ୍କୁ ଭେଟିଛନ୍ତି କି ନା ତାଙ୍କର ମନେ ନାହିଁ ବୋଲି କହିଛନ୍ତି । ଜୁଦେଓଙ୍କ ଘଟଣାକୁ ପ୍ରତିପକ୍ଷର ଷଡ଼ଯନ୍ତ୍ର ବୋଲି ଏବେ କୁହା ଯାଉଛି । ଅପରାଧର ଫଟୋ ଉତ୍ତୋଳନ ନିଶ୍ଚୟ ଷଡ଼ଯନ୍ତ୍ରକାରୀର କାମ । ସେ ଗଣମାଧମର ଲୋକ ହେଇଥାଉ ବା ପୁଲିସର ଲୋକ ହେଇଥାଉ । ପୁଲିସର ଟ୍ରାପ୍ କେଶକୁ ମଧ ଅଭିଯୁକ୍ତମାନେ ଷଡ଼ଯନ୍ତ୍ର ବୋଲି କହି ଥାଆନ୍ତି । ଜୁଦେଓ ଘଟଣା ଆମ ବାୟୁମଣ୍ଡଳକୁ ଉତ୍ତେଜିତ କରି ରଖିଥିଲା ବେଳେ ପ୍ରକାଶ ପାଇଲା ଯେ ପ୍ରଧାନମନ୍ତ୍ରୀ ବାଜପେୟୀଙ୍କ ମନ୍ତ୍ରିମଣ୍ଡଳର ଏକାଥରେ ଛଅଜଣ ମନ୍ତ୍ରୀ ପବ୍ଲିକ୍ ସେକ୍ଟର ମୁଖ୍ୟମାନଙ୍କ ଠାରୁ ଅର୍ଥ ଆଦାୟ ପାଇଁ ଚାପ ସୃଷ୍ଟି କରୁଛନ୍ତି । ମନ୍ତ୍ରୀମାନଙ୍କ ନାମ ମଧ ପ୍ରକାଶ ପାଇଲା । ଏ କଥା ଭାରତର ମୁଖ୍ୟ ଦୁର୍ନୀତି ନିବାରଣ କମିଶନର ନିଜେ ପ୍ରଧାନମନ୍ତ୍ରୀଙ୍କୁ ଜଣାଇଥିବା କଥା ମଧ ପ୍ରକାଶ ପାଇଲା । ଅବଶ୍ୟ ସେ ପରେ କହିଲେ ଯେ ସେ କାହାରି ନାଁ କହି ନାହାନ୍ତି । ଏବେ ବିରୋଧୀ ଦଳ ଧରି ବସିଛନ୍ତି ତେବେ 'ସେ କଅଣ କହିଲେ ପ୍ରକାଶ କରନ୍ତୁ ।' ଏ ଯୁକ୍ତି କେତେଦୂର ତିଷ୍ଠିବ ଆମେ ଜାଣୁନାଁ । ତେବେ ପ୍ରଧାନମନ୍ତ୍ରୀ ଓ ମୁଖ୍ୟ ଦୁର୍ନୀତି ନିବାରଣ କମିଶନର ଏପରି ଏକ ଗୁରୁତର ସମସ୍ୟା ଉପରେ ନିର୍ଦ୍ଦିଷ୍ଟ ତଥ୍ୟ ନ ଦେଇ ଆଲୋଚନା କରନ୍ତି ବା ସାଧାରଣ ଭାବେ ମନ୍ତ୍ରୀମାନେ ଦୁର୍ନୀତି କରନ୍ତି ବୋଲି କହିଥିବେ କି ?

ମନ୍ତ୍ରୀମାନେ ଦୁର୍ନୀତି କରନ୍ତି ଏବଂ ଦୁର୍ନୀତିରେ ପାରଙ୍ଗମମାନଙ୍କୁ ମନ୍ତ୍ରୀ କରାଯାଏ । ଏ କଥା 'ସୂର୍ଯ୍ୟ ପୂର୍ବରେ ଉଦୟ ହୁଏ' ପରି ସତ୍ୟ । ଏହା ଆଗରୁ ଯେମିତି ଥିଲା ବାଜପେୟୀଙ୍କ ଅମଳରେ ମଧ ସେମିତି ଅଛି । ବାଜପେୟୀ ଦୁର୍ନୀତି ବିରୋଧରେ ଯେମିତି ପାଟିକରି ଭାଷଣ ଦିଅନ୍ତି ସେମିତି ମଧ ଦୁର୍ନୀତିରେ ଅଭିଯୁକ୍ତମାନଙ୍କୁ ମନ୍ତ୍ରୀମଣ୍ଡଳରେ ସ୍ଥାନ ଦିଅନ୍ତି । ଅଭିଯୋଗ ହେଲେ ବାହାର କରି ଦିଅନ୍ତି, ପୁଣି କିଛିଦିନ ପରେ ନିମନ୍ତ୍ରଣ କରି ନେଇ ଆସନ୍ତି । ଆଗରୁ ଅବଶ୍ୟ ଏମିତି ହେଉ ନ ଥିଲା । ଏସବୁ କଥା ଆଜିକାଲି ଏତେ ସାଧାରଣ ହୋଇଗଲାଣି ଯେ ଜନସାଧାରଣ ଏଥିରେ ଆଉ ଗୁରୁତ୍ୱ ଦେଉ ନାହାନ୍ତି । ଆମେ ଏବେ କହିଲୁଣି, 'ଆଃ ରାଜନୀତି କରୁଚି ଯେତେବେଳେ ପଇସା ଖାଆନ୍ତା ନାହିଁ କି ? ପଇସା ନ ଖାଇ କଅଣ 'ଘାସ' ଖାଆନ୍ତେ ?'

ଦୁର୍ନୀତିର ଜୟଯାତ୍ରା କ୍ରିକେଟ୍‌କୁ ପଶି ସାରିଥିବା କଥା ଆମେ ଆଗରୁ ଜାଣିଥିଲୁଁ । ଏବେ ତାର ଆଉ ଗୋଟାଏ ନୂଆ ରୂପ ଦେଖିଲୁଁ । ଆଗରୁ ଆମେ ଜାଣିଥିଲୁଁ ଯେ କ୍ରିକେଟ ତାରକାମାନେ ଜିତିବା ଅପେକ୍ଷା ହାରିବା ପାଇଁ ବେଶୀ ପଇସା ନିଅନ୍ତି । ହାରିଲେ ଦେଶର ବଦନାମ । ତା' ସତ୍ତ୍ୱେ ସେମାନେ ଆମ ନେତାଙ୍କ ସୁନାପୁଅ । ଏବେ ଜଣାପଡ଼ିଲା ଯେ ଯେଉଁମାନେ ଖେଳ ପାଇଁ ନିର୍ବାଚନ କରନ୍ତି ସେମାନେ ମଧ ଲକ୍ଷ ଲକ୍ଷ ଟଙ୍କା ନିଅନ୍ତି । ତା'ର ଅର୍ଥ ଦେଶର ଇଜ୍ଜତକୁ ତଳେ ପକେଇବାକୁ ଗୋଟାଏ ଗୋଷ୍ଠୀ ସଂକଳ୍ପବଦ୍ଧ । ଏଥିରେ ମନ୍ତ୍ରୀମାନେ ମଧ ଜଡ଼ିତ । ତା' ନ ହୋଇଥିଲେ ସେମାନେ କ୍ରିକେଟ ଖେଳକୁ କୋଟି କୋଟି ଟଙ୍କା ସାହାଯ୍ୟ ଦେଉ ନ ଥାଆନ୍ତେ ।

ଖେଳରେ ଆମେ ଏତେ ଦିନ ଯାଏ ଜାଣିଥିଲୁଁ ଯେ କେବଳ ଦକ୍ଷତା ବା ପ୍ରତିଭା ହିଁ କାମ ଦେଇଥାଏ ଏବଂ ସେହି ପ୍ରତିଭା ତାକୁ ଶୀର୍ଷତମ ସ୍ଥାନକୁ ନେଇଯାଏ । ଏବେ ଆମର ସନ୍ଦେହ ହେଲାଣି ଆମେ ଯାହାକୁ ସମ୍ମାନଜନକ ଜାତୀୟ ପୁରସ୍କାର ଦେଇଛୁଁ ସେମାନଙ୍କ ଭିତରେ କେହି ଭେଜାଲ ନାହିଁ ତ ?

ଦୁର୍ନୀତି ତାର ଅଭିଯାନ ଜନ ଜୀବନର ପ୍ରତ୍ୟେକ କ୍ଷେତ୍ରକୁ ଅବ୍ୟାହତ ରଖିଛି । ଦୁର୍ନୀତି ନିବାରଣ ବିଭାଗ ଯେତେ ବାହାସ୍ଫୋଟ ମାରୁନା କାହିଁକି ଆମର ବିଶ୍ୱାସ ଯେ ଦୁର୍ନୀତିକୁ ଏବେ ସରକାର ଜାତୀୟକରଣ କରି ଦେଇ ସାରିଲେଣି । ଅରୁଣାଚଳ ଓ ୟୁପିରେ ଯେମିତି ଭାବରେ ମନ୍ତ୍ରୀମଣ୍ଡଳ ଗଠନ କରା ଯାଇଛି ସେଥିରେ ଶହ ଶହ କୋଟି ଟଙ୍କାର କାରବାର କରା ଯାଇଛି । ଏହା ତ ଆଉ ଅଛପା ହୋଇ ରହିନାହିଁ । ଦୁର୍ନୀତି ବିରୋଧରେ ଲମ୍ବା ଭାଷଣ ଦେଉଥିବା ପ୍ରଧାନମନ୍ତ୍ରୀ ତା' ବିରୋଧରେ ପଦେ କିଛି କହି ନାହାନ୍ତି । ଭିଜିଲାନ୍ସ କମିଶନ ମଧ କିଛି କହି ନାହାନ୍ତି । ଯିଏ ଯାହା ଭାବୁଥାଉ ନା କାହିଁକି ଦୁର୍ନୀତିର ମହାସ୍ରୋତକୁ ତଳୁ ବନ୍ଧ ବାନ୍ଧିଲେ ରୋକି ହେବ ନାହିଁ । ତାର ଉପର ମୁଣ୍ଡରେ ବନ୍ଧ ହେବା ଦରକାର । ଯେତେଦିନଯାଏଁ ଦୁର୍ନୀତିଗ୍ରସ୍ତ ମନ୍ତ୍ରୀମାନଙ୍କୁ ଜେଲରେ ରଖା ଯାଇ ନାହିଁ, ସେମାନଙ୍କ ନାଗରିକତ୍ୱ ବାଜ୍ୟାପ୍ତ ହୋଇନାହିଁ ଦୁର୍ନୀତି ବନ୍ଦ ହେବ ନାହିଁ । ଆମେ ଜାତୀୟକରଣ ଶବ୍ଦଟା ଏଇଥି ପାଇଁ ବ୍ୟବହାର କରୁଛୁଁ ଯେ ଏବେ ତ ମନ୍ତ୍ରୀ ବା ନେତାମାନେ ଦଳ ନାଁରେ ଯିଏ ଯେତେ ଲାଞ୍ଚ ନେଲେ ତାକୁ ଆଇନ ଧରୁ ନାହିଁ । ଏବେ ଏଇ ଧାରଣା ସୃଷ୍ଟି ହେଲାଣି ଯେ ସମାଜଟା ଦୁଇଭାଗ ହେଇଛି । ଉପରଭାଗ ଆଇନର ଉର୍ଦ୍ଧ୍ୱରେ ଏବଂ ତଳତଳିଆ କେବଳ ଆଇନ ଜାଲରେ ଛନ୍ଦି ହୁଅନ୍ତି । ଆମ ଗଣତନ୍ତ୍ରର ଏହା ହିଁ ଅସଲ ରୂପ ।

❑

('ସମାଜ'- ୧୯.୧୨.୨୦୦୩)

# ସେମାନେ ହିନ୍ଦୁ ନୁହଁନ୍ତି

ସେମାନେ କେବେବି ହିନ୍ଦୁ ନୁହନ୍ତି । ସେମାନେ କେବେ ହିନ୍ଦୁ ନ ଥିଲେ କି ଆଜି ମଧ୍ୟ ନାହାନ୍ତି । ସେମାନେ ହିନ୍ଦୁଙ୍କର ଆଚାର ଓ ବିଚାରକୁ ଗ୍ରହଣ କରନ୍ତି ନାହିଁ । ହିନ୍ଦୁ ସଂସ୍କୃତି ସହିତ ମଧ୍ୟ ସେମାନଙ୍କର କୌଣସି ସମ୍ପର୍କ ନାହିଁ । ସେମାନେ ମୂଳରୁ କେବେ ସେଆଡ଼େ ମନ ବଳେଇ ନାହାନ୍ତି । ଆମେ ହିନ୍ଦୁମାନେ ମଧ୍ୟ କେବେବି ସେମାନଙ୍କୁ ଆମ ଆଚାର ବିଚାର ସହିତ ବା ଆମ ସଂସ୍କୃତି ଓ ପରମ୍ପରା ସହିତ ସାମିଲ ହେବାକୁ ନିମନ୍ତ୍ରଣ କରିବା ତ ଦୂରର କଥା ସେଆଡ଼େ ମୋଟେ ଚିନ୍ତାକରି ନାହୁଁ । ବରଂ ଏଇଟା କହିବା ଠିକ୍ ହେବ ଯେ ଆମେ ସେମାନଙ୍କୁ ଭିନ୍ନ ବା ଗୋଟାଏ ହୀନ ଚକ୍ଷୁରେ ଦେଖି ଆସିଛୁଁ । 'ସେମାନେ ଆମର ଅନେକ ତଳେ' ତେଣୁ ଘୃଣ୍ୟ ବୋଲି ଭାବି ଆସିଛୁଁ । ଆମର ଏଇ 'ଆଟିଚ୍ୟୁଡ୍' ଆମ ଓ ସେମାନଙ୍କ ଭିତରେ ଗୋଟାଏ ଦୁର୍ଭେଦ୍ୟ ପାଚେରି କୋଉ ପୂରାକାଳରୁ ଠିଆ କରେଇ ଦେଇଛି ।

ମୁଁ ଏଇ ଆଦିବାସୀ, ହରିଜନ ବା ଦଳିତମାନଙ୍କ କଥା ଏଠି ବିଶେଷ କରି କହୁଛି । ଆଜିକାଲି କେହି କେହି ଆଦିବାସୀମାନଙ୍କୁ ହିନ୍ଦୁ ବୋଲି କହିଲେଣି । ଖାଲି କହିଲେଣି ନୁହେଁ ପତ୍ରପତ୍ରିକାରେ ଲେଖାଲେଖି ମଧ୍ୟ ଆରମ୍ଭ କରିଦେଲେଣି । ଏଥିରୁ ସେମାନଙ୍କ 'ଆଟିଚ୍ୟୁଡ୍' ବଦଳି ଗଲାଣି ବୋଲି ଭାବିବା ଠିକ୍ ହେବନାହିଁ । ଯଦିବା ବଦଳିଥିବ କାମ କିନ୍ତୁ ବଦଳି ନାହିଁ । କହିବା ଓ କରିବା ଭିତରେ ଫରକ ଥିଲେ କଥାର କିଛି ମୂଲ୍ୟ ଥାଏନା । ତେଣୁ ମହାତ୍ମାମାନେ ସବୁବେଳେ ଏ ଦୁଇ କଥାକୁ ଗୋଟିଏ କରି ଦେବାକୁ କହି ଥାଆନ୍ତି । ଆମେ ଆଦିବାସୀମାନଙ୍କୁ ହିନ୍ଦୁ ବୋଲି କାହିଁକି କହିବା ? ଆମ ସହିତ ସେମାନଙ୍କର କି ସମ୍ପର୍କ ଅଛି ? ଏ କ୍ଷେତ୍ରରେ ସମାଜଗତ ବା ସଂସ୍କାରଗତ ସମ୍ପର୍କଟା ହିଁ ପ୍ରଥମ ଓ ପ୍ରଧାନ । ଏସବୁ ଦୃଷ୍ଟିରୁ ସେମାନେ ଆମଠୁ ଅଲଗା । ଆଦିବାସୀମାନଙ୍କ ସହିତ ହିନ୍ଦୁମାନଙ୍କର କୌଣସି ସାମାଜିକ ସମ୍ପର୍କ ସ୍ଥାପିତ ହେଇ ପାରେନା । ବୈବାହିକ ସମ୍ପର୍କର ପ୍ରଶ୍ନ ଉଠୁନାହିଁ । ତାର କାରଣ ଅନେକ । ପ୍ରଥମ କଥା ଆମେ ତାଙ୍କୁ ମୂଳରୁ ଆଦିବାସୀ ବୋଲି କହି ଆସୁଛୁଁ । ଆମେ ଆର୍ଯ୍ୟ ବୋଲାଉଥିବା ଲୋକମାନେ ତାଙ୍କୁ ପ୍ରଥମେ ସମତଳ ଅଞ୍ଚଳରୁ ପାହାଡ଼ିଆ ବଣ ଜଙ୍ଗଲକୁ ତଡ଼ି ସେମାନଙ୍କ ସ୍ଥାନ ଅଧିକାର କଲୁଁ । ସେମାନେ ଦେଖିବାକୁ କଳା ଓ ଅସୁନ୍ଦର ଏବଂ ସେମାନଙ୍କ ଆଚାର ବ୍ୟବହାର ସବୁ ଆମଠାରୁ ଭିନ୍ନ ହେଇଥିବାରୁ ଆମେ ସେମାନଙ୍କ ପ୍ରତି ଘୃଣା ଭାବ ପୋଷଣ କରୁଥିଲୁଁ । ଏବେ ମଧ୍ୟ ଅଛି । ସେମାନଙ୍କ ଈଶ୍ୱର ଓ ଆମ ଈଶ୍ୱର

ଅଲଗା । ସେମାନଙ୍କ ପୂଜା କରିବାର ପଦ୍ଧତି ଯାହା ଆମର ତାହା ନୁହେଁ । ଆମ ଭିତରେ ଯୋଉ ଜାତିଭେଦ ଅଛି ତାହା ସେମାନଙ୍କ ଭିତରେ ନାହିଁ । ଆମ ସମାଜରେ ଜାତିକୁ ନେଇ ଆମେ ଗର୍ବ କରୁଁ । ଜାତିପ୍ରଥା ବିଷୟରେ ଅବଶ୍ୟ ଆମ ଦେଶରେ ଅନେକ ବହି ଲେଖାଯାଇଛି । କିନ୍ତୁ ଆମ୍ବେଦକରଙ୍କ ଦ୍ୱାରା ଲିଖିତ 'ଭାରତରେ ଜାତିପ୍ରଥା ଓ ତାହାର ବିଲୋପ' (ଓଡ଼ିଆ ଅନୁବାଦ-ପ୍ରାଧ୍ୟାପକ ଧନେଶ୍ୱର ସାହୁ, ବିକଳ୍ପ ପ୍ରକାଶନ, ବରଗଡ଼) ପୁସ୍ତକରେ ଏସବୁର ବିଶେଷ ବ୍ୟାଖ୍ୟା ଓ ବିଶ୍ଳେଷଣ ଦିଆ ଯାଇଛି । ଆଦିବାସୀମାନେ କିପରି ଓ୍ କାହିଁକି ଅଲଗା ହେଲେ ସେସବୁ କଥା ମଧ୍ୟ ଏଥିରେ ଅଛି । (ପରିଚ୍ଛେଦ ୭/୮) ଆମ୍ବେଦକରଙ୍କ ମତରେ ''କିଛି ଆଦିବାସୀ ବଂଶାନୁକ୍ରମେ ଏପରି କେତେ କାମ କରନ୍ତି ଯାହାଫଳରେ ଆମେ ସେମାନଙ୍କୁ ଅପରାଧୀ ଶ୍ରେଣୀର ବୋଲି ତାଲିକାଭୁକ୍ତ କରିଆସିଛୁଁ । ସଭ୍ୟଜାତିମାନଙ୍କ ଭିତରେ ତେର ନିୟୁତ ଲୋକ ଏପରି ଅସଭ୍ୟ ଓ ବଂଶାନୁକ୍ରମ ଅପରାଧୀ ଭାବରେ କିପରି ରହିଛନ୍ତି ? ହିନ୍ଦୁମାନେ ଏଥିପାଇଁ କୌଣସି ଲଜ୍ଜା ଅନୁଭବ କରନ୍ତି ନାହିଁ । ଏପରି ଘଟଣା ସମ୍ଭବତଃ ଅନ୍ୟ କେଉଁଠାରେ ଦେଖିବାକୁ ମିଳିବ ନାହିଁ । ଏହି ଲଜ୍ଜାକର ଘଟଣାର କାରଣ କ'ଣ ହୋଇପାରେ ? ସେହି ଆଦିମ ଜନଜାତିମାନଙ୍କୁ ସଭ୍ୟ କରାଇ ସମ୍ମାନଜନକ ଭାବରେ କର୍ତ୍ତବ୍ୟ ନିର୍ବାହ କରିବା ପାଇଁ କାହିଁକି ଉତ୍ସାହିତ କରା ଯାଇନାହିଁ ? ହିନ୍ଦୁମାନେ ସମ୍ଭବତଃ ସେମାନଙ୍କର ଏହି ଆଦିମ ଅବସ୍ଥା ପାଇଁ ସେମାନଙ୍କ ବୌଦ୍ଧିକ ଜଡ଼ତାକୁ ଦାୟୀ କରିବେ ।'' ମୋଟାମୋଟି ଏଇସବୁ କାରଣ ଯୋଗୁଁ ଆମେ ତାକୁ ଅଲଗା କରି ଭାବୁଁ । ଏବେ ଆଉ କେତେକ ଯୁକ୍ତି କରନ୍ତି ଯେ ଆଦିବାସୀଙ୍କ ଠାକୁର ଜଗନ୍ନାଥ ଏବଂ ଜଗନ୍ନାଥଙ୍କୁ ଆମେ ପୂଜାକରୁଁ । ତେଣୁ ସେମାନେ ଆମ ସହିତ ସମାନ । ଏସବୁ ଶଠତା ଛଡ଼ା ଆଉ କିଛି ନୁହେଁ । ପ୍ରଥମ କଥା ତାଙ୍କ ଠାକୁରଙ୍କୁ ଆମେ କାହିଁକି ଆଣିଲୁଁ ? ଯଦି ତାଙ୍କ ଠାକୁର, ତେବେ ସେମାନଙ୍କୁ ସେ ମନ୍ଦିରକୁ ପ୍ରବେଶାଧିକାର ଓ ପୂଜାର୍ଚ୍ଚନାର ଅଧିକାର ଦିଆ ଯାଇ ଥାଆନ୍ତା । ସେମାନେ ନିଜେ ପୂଜା କରନ୍ତୁ ବା ଆମ ବ୍ରାହ୍ମଣମାନେ ପୂଜା କରନ୍ତୁ; କିନ୍ତୁ ସେତକ କରାଇ ଦିଆଯାଇ ନାହିଁ । ଆମ ମନ୍ଦିରମାନଙ୍କରେ ସେମାନଙ୍କ ପ୍ରବେଶାଧିକାର ନାହିଁ । ପୂଜାର୍ଚ୍ଚନା ଦୂରର କଥା ଆମ ବ୍ରାହ୍ମଣମାନେ ଆଦିବାସୀମାନଙ୍କର ପୁରୋହିତ କାମ କରନ୍ତି ନାହିଁ । ଜାତି ଓ ଗୋତ୍ର ନ ଥିବା ଲୋକଙ୍କର ପୂଜା ବ୍ରାହ୍ମଣମାନେ କେମିତି କରିବେ ? ବ୍ରାହ୍ମଣମାନେ କୁକୁର ସହିତ ପାଞ୍ଚ ସାତବର୍ଷ ବାଳିକାର ବିବାହ ବେଦମନ୍ତ୍ର ଉଚ୍ଚାରଣ ସହିତ କରାଇ ଦକ୍ଷିଣା ନେଇ ଭୂରି ଭୋଜନ କରି ପାରିବେ, ମଣିଷ ସହିତ ସାହାଡ଼ା ଗଛର ବିବାହ ବୈଦିକ ରୀତିରେ କରାଇ ପାରିବେ କିନ୍ତୁ ଆଦିବାସୀ କିମ୍ବା ହରିଜନ ଘରେ ବିବାହ ବ୍ରତରେ ପୁରୋହିତ କାମ କରିବେ ନାହିଁ । ଏହାଦ୍ୱାରା ଆମର ସେମାନଙ୍କ ପ୍ରତି ମନୋଭାବ ସ୍ପଷ୍ଟ ହୋଇ ଯାଉଛି । ତେଣୁ କଥାରେ ଯେତେ ଦରଦ ଥିଲେ ମଧ୍ୟ କାମରେ ଆମେ ଠିକ୍ ଓଲଟା କରୁଁ । ଏ

ଚିନ୍ତାଧାରା ଆମର କୋଉ ଯୁଗରୁ ଆମ ମନ ଭିତରେ ବସାବାନ୍ଧି ରହି ଆସିଛି । ତାକୁ ତଡ଼ିବା ସହଜ ନୁହେଁ ।

ଆଦିବାସୀମାନେ ଯେ ହିନ୍ଦୁ ନୁହଁନ୍ତି ତା'ର ଅନେକ ପ୍ରମାଣ ଆମ ଆଇନରେ ମଧ ଅଛି । ତେଣୁ ଆମ ଆଇନ୍ ତାକୁ ଲାଗୁ ହୁଏନାହିଁ । ଏହି ଆଇନ୍ ଆଖିରେ ଧୂଳିଦେବା ପାଇଁ ଆମ ସରକାର ଏବେ ଆଦିବାସୀମାନଙ୍କୁ ଶିଳ୍ପ ନାଁରେ ତାକୁ ଜମିରୁ ଉଚ୍ଛେଦ କରେଇ ସେ ଜମିକୁ ଅଣଆଦିବାସୀଙ୍କୁ ଦେଇ ଦଉଚନ୍ତି ।

ଏସବୁ ଗଲା ଆଦିବାସୀମାନଙ୍କ କଥା । ଏବେ ହରିଜନମାନଙ୍କ କଥାକୁ ବିଚାରକୁ ନିଆଯାଉ । ସେମାନେ ମଧ ହିନ୍ଦୁ ନୁହଁନ୍ତି । ତା'ର କାରଣ ସେମାନେ ମଧ ହିନ୍ଦୁ ଦେବତାଙ୍କୁ ପୂଜା କରିବାର ଅଧିକାର ପାଇ ନାହାନ୍ତି । ସେମାନେ ହିନ୍ଦୁମାନଙ୍କୁ ଛୁଇଁଲେ ହିନ୍ଦୁମାନେ ଗାଧୁଅନ୍ତି । ସେମାନଙ୍କୁ ଆମେ ଅଛୁଁଆ ବୋଲି କହୁଁ । ସେମାନେ ଅଛୁଁଆ ବା ଅସ୍ପୃଶ୍ୟ ହେଇ ଥିବାରୁ ଆମେ ସେମାନଙ୍କୁ ଗାଁ ଭିତରେ ପୂରାଇ ଦେଉନୁଁ । ଗାଁ ବାହାରେ ଅନେକ ଦୂରରେ, ଗାଁ ଲୋକ ଚଳପ୍ରଚଳ ହେଉଥିବା ଜାଗା ବାହାରେ ସେମାନଙ୍କୁ ଘର କରିବାକୁ ଅନୁମତି ମିଳେ । ସେମାନଙ୍କୁ ନିମ୍ନ ଜାତି ବୋଲି କୁହାଯାଏ । ନିମ୍ନଜାତିର ହେଇ ଥିବାରୁ ସେମାନଙ୍କ ଘରେ ଆମ ବ୍ରାହ୍ମଣମାନେ ଖଟନ୍ତି ନାହିଁ । ଏପରିକି ଧୋବା-ଭଣ୍ଡାରୀ ମଧ ଦିଆଯାଏ ନାହିଁ । ଧୋବା-ଭଣ୍ଡାରୀ ସାଧାରଣତଃ ଉଚ୍ଚ ଜାତିର ଅଧିକାର । ନିମ୍ନଜାତିର ସେ ଅଧିକାର ନାହିଁ । ତେଣୁ ସେମାନେ ହିନ୍ଦୁ ମନ୍ଦିରକୁ ଆସିପାରନ୍ତି ନାହିଁ । ଆମ ଲକ୍ଷ୍ମୀପୁରାଣରେ ଚଣ୍ଡାଳୁଣୀ ଉପାଖ୍ୟାନଟି ଯେତେବେଳେ ଲେଖା ଯାଇଥିଲା ସେତେବେଳେ ଲେଖକ କୋଉ ଅବସ୍ଥାରେ ଲକ୍ଷ୍ମୀଙ୍କୁ ସେଠାକୁ ନେଇଥିଲେ କେଜାଣି । କିନ୍ତୁ ପରେ ସେଥିପାଇଁ ଲକ୍ଷ୍ମୀଙ୍କୁ କମ୍ ହିନସ୍ତା ହେବାକୁ ପଡ଼ିନାହିଁ । ବୋଧେ ସେଇ କାରଣରୁ ଲକ୍ଷ୍ମୀ ଠାକୁରାଣୀ ଏକବିଂଶ ଶତାବ୍ଦୀଯାଏ ଆଉ ଥରେ ଭୁଲରେ ମଧ କୌଣସି ଚଣ୍ଡାଳ ଘରେ ପାଦ ପକେଇଲେ ନାହିଁ । ଯାହାଫଳରେ ଏବେ ସରକାର ଯେତେ ଯୋଜନା କଲେ ମଧ ଲକ୍ଷ୍ମୀଙ୍କର ବୋଧେ ଭୁଲରେ ପାଦ ପଡ଼ିଥିବା କାରଣରୁ ଅଭିଶାପ ଦେଲେ କି କ'ଣ, ଏଯାଏ ହରିଜନମାନଙ୍କର ସେଇ ଭଙ୍ଗା ଦଦରା କୁଡ଼ିଆ ଅଛି । ଲକ୍ଷ୍ମୀପୁରାଣ ପରେ ଆଜିଯାଏ ଯେତେ ସାହିତ୍ୟ ଆମେ ତିଆରି କରିଛୁଁ ସେଥିରେ ଦଳିତମାନଙ୍କୁ ସେଇ ସ୍ଥାନ ଦେଇଛୁ । ସମାଜରେ ମଧ ସେମାନଙ୍କ ସ୍ଥାନ ନିର୍ଦ୍ଧାରିତ । ଯଦି ରାମ ବଳରାମ ସେତେବେଳେ ଲକ୍ଷ୍ମୀଙ୍କୁ ଦଣ୍ଡ ଦେଇ ନ ଥାଆନ୍ତେ ତେବେ ହୁଏତ ପରବର୍ତ୍ତୀ କାଳରେ ଶ୍ରୀମନ୍ଦିରରୁ ସେ ଛୁଆଁ-ଅଛୁଁଆ ଭାବଟା ଉଠିଯାଇ ଥାଆନ୍ତା । ଆମ ଶ୍ରୀମନ୍ଦିରକୁ ଏବେ ମଧ ଦଳିତମାନେ ଯାଇ ପାରନ୍ତି ନାହିଁ । ହିନ୍ଦୁମାନେ ଶ୍ରୀମନ୍ଦିରକୁ ଗଲେ ତାଙ୍କର ଜାତି ଓ ଗୋତ୍ର ଅନୁସାରେ ନିର୍ଦ୍ଦିଷ୍ଟ ପଣ୍ଡାମାନେ ତାଙ୍କର ପୂଜାକର୍ମ କରାନ୍ତି । ହରିଜନମାନଙ୍କର ସେ ସବୁ ନାହିଁ । ତେଣୁ ଉଚ୍ଚ ଜାତିର ହିନ୍ଦୁ ବ୍ରାହ୍ମଣମାନେ ସେମାନଙ୍କ କାମ

କରାନ୍ତି ନାହିଁ । ଏସବୁ ଦୃଷ୍ଟିରୁ ହରିଜନମାନଙ୍କୁ ହିନ୍ଦୁ କୁହାଯାଇ ପାରିବ ନାହିଁ । ଡକ୍ଟର ଆମ୍ବେଦକର ଏସବୁ କଥା ଅତି ବିସ୍ତାରିତ ଭାବରେ ତାଙ୍କର ''ଦି ଅନଟଚେବଲସ୍'' ଓ ''କଂଗ୍ରେସ ଔର ଗାନ୍ଧିନେ ଅଛୁତୋ କେ ଲିଏ କ୍ୟା କିୟା'' ପୁସ୍ତକରେ ଆଲୋଚନା କରିଛନ୍ତି । ବିଶିଷ୍ଟ ହିନ୍ଦୀ ଲେଖକ ସୁନ୍ଦରଲାଲ ସାଗରଙ୍କ ଦ୍ୱାରା ଲିଖିତ 'ହିନ୍ଦୁ ବିଦେଶୀ ଅଚ୍ଛନ୍ତି' (ଅନୁବାଦ-ଅଭିରାମ ମଲ୍ଲିକ, ପ୍ରକାଶକ-ବାବା ସାହେବ ଆମ୍ବେଦକର ଫାଉଣ୍ଡେସନ) ପୁସ୍ତକରେ ବୈଦିକ ଯୁଗରୁ କେମିତି ଓ କୋଉ କାରଣରୁ ଦଳିତମାନେ ହିନ୍ଦୁ ସମାଜରୁ ଅଲଗା ହେଲେ ତା'ର ଆଲୋଚନା ମଧ୍ୟ ହୋଇଚି । ତେଣୁ ଏଥିରେ ଦ୍ୱିମତ ହେବାର ନାହିଁ ଯେ ହିନ୍ଦୁଧର୍ମର ମୌଳବାଦୀମାନେ ହିଁ ଦଳିତମାନଙ୍କୁ ସମାଜରେ ତାଙ୍କର ଯଥାଯଥ ସ୍ଥାନରୁ ବଞ୍ଚିତ କରିଛନ୍ତି । ଏବେ ମଧ୍ୟ ସେ ମନୋଭାବ ବଦଳି ନାହିଁ । ଭୋଟ ରାଜନୀତିରେ ତାକୁ ଆହୁରି ଜୋରଦାର କରା ଯାଉଛି । ଗାନ୍ଧି ଯଦିଓ ଅନେକ ପରିମାଣରେ ଏହି ଭେଦଭାବକୁ ସଂକୁଚିତ କରିବାକୁ ଚେଷ୍ଟା କରିଥିଲେ ପରବର୍ତ୍ତୀ କାଳରେ ଆମ ରାଜନୀତିର ମୋଡ଼ ବଦଳିବା ଦ୍ୱାରା ଜାତି ଓ ଧର୍ମର ମୌଳବାଦ ପୁଣି ମୁଣ୍ଡଟେକି ଉଠିଲା । ଫଳରେ ଏବେ ଭୋଟ ବ୍ୟାଙ୍କର ସୁରକ୍ଷା ପାଇଁ ଜାତି ଓ ଧର୍ମ ଭିତ୍ତିରେ ଅଙ୍କକଷା ହୁଏ । ଏହାଦ୍ୱାରା ଦେଶରେ ମୌଳବାଦ ବା ଜାତିବାଦ ପୁଣିଥରେ ଦୃଢ଼ ହେବାକୁ ଆରମ୍ଭ କରିଛି । ସୁପ୍ରିମକୋର୍ଟର ନିର୍ଦ୍ଦେଶ ସତ୍ତ୍ୱେ ଆମ ରାଜନୀତି ବ୍ରାହ୍ମଣବାଦକୁ ପୁଣିଥରେ ତା'ର ସିଂହାସନରେ ଥୋଇ ଅନ୍ୟମାନଙ୍କ ଉପରେ ଅତ୍ୟାଚାରର ଚାବୁକଟା ତା' ହାତରେ ଧରାଇ ଦେଉଛି । ଏହା ହିଁ ଏକବିଂଶ ଶତାବ୍ଦୀର ବିଡ଼ମ୍ବନା । ଏଇ କାରଣରୁ ଏବେ ହଜାର ହଜାର ଦଳିତ ବୌଦ୍ଧଧର୍ମ ଗ୍ରହଣ କରୁଛନ୍ତି ।

ତେବେ ସେ ଯା' ହେଉ ଖାଲି ହରିଜନ କିମ୍ବା ଆଦିବାସୀ ନୁହଁନ୍ତି, ଅନେକ ଯୁକ୍ତିଯୁକ୍ତ କାରଣରୁ ବୌଦ୍ଧଧର୍ମୀ, ଜୈନଧର୍ମୀ ଏବଂ ଶିଖ୍‌ମାନଙ୍କୁ ମଧ୍ୟ ହିନ୍ଦୁ ବୋଲି କୁହା ଯାଇପାରିବ ନାହିଁ । ବୌଦ୍ଧମାନେ ଆମଠୁ ଅଲଗା ହେଇ ସାରା ଭାରତରେ ଆଧିପତ୍ୟ ବିସ୍ତାର କରୁଥିବା ବେଳେ ଆମ ଶଙ୍କରାଚାର୍ଯ୍ୟଙ୍କ ଚେଲାମାନେ ସେମାନଙ୍କ ଉପରେ ଯୋଉ ଅତ୍ୟାଚାର କରିଥିଲେ ତାହା ଏବର ନାଜି ଓ ମୋଦି ଅତ୍ୟାଚାର ଠାରୁ ବଳକା । ଏହା ହିଁ କାରଣ ଯୋଉଥି ପାଇଁ ଭାରତରେ ବୌଦ୍ଧଧର୍ମ ଜନ୍ମ ହେଇ ମଧ୍ୟ ତିଷ୍ଟିଲା ନାହିଁ । ଅଥଚ ତାହା ଏବେ ସମଗ୍ର ଏସିଆକୁ ମାଡ଼ିବସିଛି । ବୌଦ୍ଧଧର୍ମର ଗୁରୁ ଦଲାଇଲାମାଙ୍କୁ ଏ ଯାଏ ଆମେ 'ହିନ୍ଦୁ ନୁହଁନ୍ତି' ଓ 'ମୂର୍ତ୍ତିପୂଜାରେ ବିଶ୍ୱାସ କରନ୍ତି ନାହିଁ' ବୋଲି କହି ଆମ ଜଗନ୍ନାଥ ମନ୍ଦିରରେ ପ୍ରବେଶ କରାଇ ଦେଇନାହୁଁ, ଯଦିଓ ବୁଦ୍ଧଙ୍କୁ ଜଗନ୍ନାଥଙ୍କର ଗୋଟିଏ ଅବତାର ଭାବରେ ଗ୍ରହଣ କରା ଯାଇଛି । ଏହାଦ୍ୱାରା ଆମେ ଜଗନ୍ନାଥଙ୍କର ହିଁ ଅବମାନନା କରୁଛୁଁ । ଏହି ସବୁ ଭେଦଭାବ ଦ୍ୱାରା ଆମେ ଜଗନ୍ନାଥଙ୍କୁ ତାଙ୍କର 'ଜଗତର ନାଥ'ର ରତ୍ନବେଦୀରୁ ଓହ୍ଲାଇ ଆଣି କେତେଜଣଙ୍କର ବ୍ୟକ୍ତିଗତ ସମ୍ପଦରେ ପରିଣତ କରି ଦେଇଛୁଁ । ଏହା ଆମ ସଂକୀର୍ଣ୍ଣତାର

ପରିଚୟ ଛଡ଼ା ଆଉ କ'ଣ ହୋଇପାରେ ? ଜଗନ୍ନାଥୀୟ ଧର୍ମ ଧାରଣାରେ ଏ ସଂକୀର୍ଣ୍ଣତା ନ ଥିଲା । ତିରୁପତି ମନ୍ଦିରରେ ସେ କଥା ନାହିଁ । ଏବେ ଏବେ ସେଠାକୁ ମୁସଲମାନ ଅବଦୁଲ କାଲାମ ଯାଇ ଦର୍ଶନ କରି ପୂଜାର୍ଚ୍ଚନା କରି ଦେଶର ମଙ୍ଗଳ ପାଇଁ ପ୍ରାର୍ଥନା କରିଥିବା ବେଳେ ଖ୍ରୀଷ୍ଟିଆନ ସୋନିଆ ଗାନ୍ଧି ମଧ ସେହି ମନ୍ଦିରକୁ ଯାଇ ପୂଜା କରିଥିଲେ । ଏହାଦ୍ୱାରା ସେମାନେ ସେଠି ହିନ୍ଦୁତ୍ୱର ମହତ୍ତ୍ୱକୁ ଉଦ୍‌ଭାସିତ କରାଇ ପାରିଲେ । ଆଉ ଆମେ ? ଓଡ଼ିଶାକୁ ବିଶେଷକରି ପୁରୀକୁ ବିଦେଶୀ ପର୍ଯ୍ୟଟକ ଆସୁ ନ ଥିବାର ଏଇଟା ହିଁ ଏକମାତ୍ର କାରଣ । ମନ୍ଦିର ଯଦି ସମସ୍ତଙ୍କ ପାଇଁ ଖୋଲା ଯାଆନ୍ତା, ତେବେ ସେଠାକୁ ଦିନକୁ ଲକ୍ଷ ଲକ୍ଷ ପର୍ଯ୍ୟଟକ ଆସି ପାରନ୍ତେ । ବିଦେଶୀମାନେ ଯଦି ମନ୍ଦିରରେ କ'ଣ ଅଛି ନ ଜାଣିବେ, ତା' ଉପରେ ନିଜ ଦେଶକୁ ଯାଇ ଲେଖି, କି କହି ନ ପାରିବେ ତେବେ ସେମାନେ କାହିଁକି ଆସିବେ ? ସେମାନେ ନିଶ୍ଚୟ କେବଳ ସମୁଦ୍ରକୂଳ ଦେଖିବାକୁ ଆସିବେ ନାହିଁ । ସାରା ଭାରତରେ ସମୁଦ୍ରକୂଳ ସବୁଠି । ବିଦେଶୀଙ୍କ ପାଇଁ ମନ୍ଦିର ହିଁ ଏକମାତ୍ର ଆକର୍ଷଣ ।

ଏବେ ଭାରତରେ ଧର୍ମ ନାଁରେ ଅତ୍ୟାଚାର ବୃଦ୍ଧି ପାଇଛି । ଜାତି ଓ ଧର୍ମ ନାଁରେ ଆମର ସଂକୀର୍ଣ୍ଣତା ମଧ ବୃଦ୍ଧି ପାଉଛି । ଆମର ଏହି ସଂକୀର୍ଣ୍ଣତା ଯୋଗୁଁ ଦେଶରେ ଦଳିତ ବା ହରିଜନମାନଙ୍କ ଉପରେ ଅତ୍ୟାଚାର ବଢ଼ି ବଢ଼ି ଚାଲିଛି । ଆଦିବାସୀମାନଙ୍କୁ ବିଭିନ୍ନ ଭାବରେ ଶୋଷଣ କରା ଯାଉଛି । ଆମେ କେବେବି ଦୁର୍ବଳ ଓ ସଂଖ୍ୟାଲଘୁମାନଙ୍କ ପ୍ରତି ସମ୍ବେଦନ ହୋଇ ପାରିନୁଁ । ଏସବୁ ସ୍ୱାର୍ଥଗତ କାରଣ ଆମ ଭିତରେ ଥିଲାବେଳେ ଆମେ ଏବେ ହଠାତ୍ ଏକ ଭିନ୍ନ ଉଦ୍ଦେଶ୍ୟରେ ଏହି ଦଳିତ, ଆଦିବାସୀ ଓ ବୁଦ୍ଧଧର୍ମୀମାନଙ୍କୁ ହିନ୍ଦୁ ବୋଲି କହିବାକୁ ଆରମ୍ଭ କରିଛୁଁ । ଏହା ଛଳନା ଛଡ଼ା ଆଉ କିଛି ହୋଇ ନ ପାରେ । ଏକଥା ବୁଝିବାକୁ ଅନ୍ୟମାନଙ୍କୁ ଅସୁବିଧା ହେଉ ନ ଥିବ । ସେ ଅସୁବିଧା ହେଉନାହିଁ ବୋଲି ହରିଆନା, ୟୁ.ପି., ଉତ୍ତରାଞ୍ଚଳ ଓ ଦିଲ୍ଲୀ ପ୍ରଭୃତି କେତେକ ସ୍ଥାନରେ ଦଳିତମାନଙ୍କ ମଧ୍ୟରେ ଏବେ ନୂଆ ସ୍ଲୋଗାନ୍ ଆରମ୍ଭ ହୋଇଛି । ତାହା ହେଲା, ''ହିନ୍ଦୁଧର୍ମ ଛୋଡ଼ ଦୋ, ଜାତିଭେଦ ତୋଡ ଦୋ ।''

ଜାତିଭେଦ ଏକ କୁସଂସ୍କାର । ସେ କୁସଂସ୍କାର ଯେତେଦିନଯାଏ ଥିବ ସେତେଦିନ ଯାଏ ଆମର ନିସ୍ତାର ନାହିଁ । ଭେଦଭାବ ହିଁ ଦେଶକୁ ଦୁର୍ବଳ କରାଇ ଥାଏ । ଧର୍ମ ଓ ଜାତି ଆମକୁ କ୍ଷୁଦ୍ର କ୍ଷୁଦ୍ର କୋଠରିରେ ଆବଦ୍ଧ କରି ରଖି ଦେଉଥିବାରୁ ଆମର ଐକ୍ୟ ନଷ୍ଟ ହେଉଛି । ସୁଖର କଥା ଏବେ ଅନେକ ଲୋକ ଭାରତୀୟ ସାମାଜିକ ବ୍ୟବସ୍ଥାର ଏ ଦୁରାରୋଗ୍ୟ ବ୍ୟାଧିକୁ ଚିହ୍ନି ସାରିଲେଣି । ସେମାନେ ଧର୍ମ ଓ ଜାତିଗତ ବିଭେଦତାର ପାଚେରିକୁ ଭାଙ୍ଗି ବାହାରକୁ ଆସିବାକୁ ଚାହିଁଲେଣି । ଏହା ହିଁ ଆଗାମୀର ଶୁଭ ସଂକେତ ।

❑ ('ସମୟ'- ୧୨.୨.୨୦୦୪)

# ଅବ୍‌ଜେକ୍‌ସନ୍ ମିଃ. ଲର୍ଡ.

ଏସବୁ କଅଣ ହୋଇଗଲା ମହାଭାଗ ! ସମଗ୍ର ଭାରତବର୍ଷର ମର୍ଯ୍ୟାଦାବନ୍ତ ସ୍ୱାଭିମାନକୁ ମାତ୍ର ଚାଳିଶ ହଜାର ଟଙ୍କାରେ ବାନ୍ଧି ଦିଆଗଲା ? ଆଜିର ଯୁଗରେ ଚାଳିଶ ହଜାର ଟଙ୍କାର ବା କି ମୂଲ୍ୟ ଅଛି ? ହାତର ମଳି ସହିତ ମଧ ସମାନ ନୁହେଁ । ସେଇ ସେତକରେ ଗୋଟାଏ ମହାନ ଦେଶର ରାଷ୍ଟ୍ରପତି, ମୁଖ୍ୟ ବିଚାରପତି ଓ ବିଚାରପତିମାନଙ୍କୁ ସେମାନଙ୍କ ବିରୋଧରେ କୌଣସି ବିଧିବଦ୍ଧ ଅଭିଯୋଗ ନ ଥାଇ ଅରେଷ୍ଟ କରିବାର ଆଦେଶରେ ଦସ୍ତଖତ ହୋଇ ପାରିଲା ? ତଥାକଥିତ ଅଭିଯୁକ୍ତମାନେ ଆମର ଚିର ନମସ୍ୟ । ପ୍ରାତଃ ସ୍ମରଣୀୟ । ଯେଉଁମାନଙ୍କୁ ସମଗ୍ର ଦେଶ ପୂଜା କରେ ସେମାନେ ସାରା ପୃଥିବୀର ନମସ୍ୟ ମଧ । ସେମାନେ ସମଗ୍ର ମଣିଷ ଜାତିର ନମସ୍ୟ, କିନ୍ତୁ ଯେଉଁ ଦେଶରେ ଏଇପରି ମହାନ ବ୍ୟକ୍ତିତ୍ୱମାନଙ୍କୁ ମାତ୍ର କେତେ ହଜାରର ଅର୍ଥ ବିନିମୟରେ ଛଳନାପୂର୍ଣ୍ଣ ବିଚାର ଦ୍ୱାରା ଭୂଲୁଣ୍ଠିତ କରାଇ ଦିଆଯାଇପାରେ ସେ ଦେଶରେ ସାଧାରଣ ଜନତାର ସ୍ଥାନ କେଉଁଠି ? ତେବେ କଅଣ ବୁଝିବାକୁ ହେବ ଏ ଦେଶ ଛଳନାର ଦେଶ ? ସ୍ୱାର୍ଥାନ୍ୱେଷୀ ବିଚାର ବିବେକ ଶୂନ୍ୟ ଧର୍ମାନ୍ଧମାନଙ୍କର ଦେଶ ? ତେବେ କଅଣ ଦେବଭୂମିର ଭାରତବର୍ଷ ଏବେ ପାପଭୂମି ବା ରାକ୍ଷସମାନଙ୍କ ଦେଶରେ ପରିଣତ ହୋଇଛି ? ଆମର ଇତିହାସ, ସାହିତ୍ୟ, ସଂସ୍କୃତି, ପରମ୍ପରା, ଗର୍ବ, ଗୌରବ ଏ ସବୁ ମିଥ୍ୟାରେ ପରିଣତ ହୋଇଛି ?

ଏବେ ପ୍ରଶ୍ନ ଉଠୁଛି ତେବେ ଏ ଦେଶରେ ସାଧାରଣ ଜନତାକୁ କିଏ ସୁରକ୍ଷା ଯୋଗାଇ ଦେବ ? କାହାକୁ ସେମାନେ ଗୁହାରି କରି କହିବେ ମୋତେ ନ୍ୟାୟ ଦିଅ ମହାଭାଗ । ମୋତେ ବଞ୍ଚାଅ । ମୋତେ କେବଳ ମୋର ବଞ୍ଚିବାର ଅଧିକାର ଟିକକ ଦିଅ । ସେଥିରେ ବରଂ ନ ଥାଉ ଜିଇବାର ସର୍ବନିମ୍ନ ଆବଶ୍ୟକତା । ମୋତେ କେବଳ ଢୋକେ ପିଇ ଦଣ୍ଡେ ବଞ୍ଚିବାର ଅଧିକାର ଦିଅ । ଟିକିଏ ଶାନ୍ତିରେ ରହିବାର ଏବଂ ନିର୍ଭୟରେ ଚଳପ୍ରଚଳ ହେବାର ଅଧିକାର ଦଅ । 'ଧନ ମାଗୁନାହିଁ, ଜନ ମାଗୁନାହିଁ, ମାଗୁଛି ଶରଧା ବାଲିରୁ ହାତେ ।' ମୋତେ ଖାଲି ସ୍ନେହ ଶ୍ରଦ୍ଧା ଓ ନିରଳ ପ୍ରେମରୁ

ଚିମୁଟାଏ ଦିଅ । କାରଣ ମୁଁ ଏ ମାଟିକୁ ଭଲପାଏଁ । ଏ ପାଣି ଏ ପବନ । ଏ ସୁନୀଳ ଆକାଶ । ସେ ଆକାଶର ଲାଲ ସୂର୍ଯ୍ୟ, ଶୀତଳ ଚନ୍ଦ୍ର, ଫୁଲ ପାଖୁଡ଼ାର ତାରକା ସବୁକୁ ମୁଁ ପ୍ରାଣଭରି ଭଲପାଏଁ । ଆହୁରି ବି ଭଲପାଏ ଏ ମାଟିର ଐତିହ୍ୟ ଓ ଇତିହାସକୁ । ତାର ଦୃଶ୍ୟ ଓ ଦର୍ଶନକୁ - ସର୍ବୋପରି ଏ ମାଟିର ମଣିଷଙ୍କୁ ମୁଁ ଭଲପାଏଁ । କିନ୍ତୁ ସାମାନ୍ୟ ଅର୍ଥର ବିନିମୟରେ ମୋତେ ସେ ଭଲ ପାଇବାରୁ ବଞ୍ଚିତ କରନାହିଁ । ପ୍ରେମକୁ ଅର୍ଥର ମାପକାଠିରେ ତଉଲି ହୁଏନାହିଁ ।

ମିଃ ଲର୍ଡ଼ ! କେତେ ବେପରୁଆ ଓ ବିବେକହୀନ ଏ ମଣିଷଟି ସତେ ? ମାତ୍ର ଚାଳିଶ ହଜାର ଟଙ୍କାରେ ଗୋଟାଏ ଦେଶର ସର୍ବୋଚ୍ଚ ନାଗରିକଙ୍କ ସମ୍ମାନକୁ ଯେମିତି ଭାବରେ ମାଟିରେ ମିଶେଇ ଦେବାକୁ ଚେଷ୍ଟା କରା ଗଲା ସେଥିରେ ଦେଶ ଆଉ କୋଉଠି ଅଛି ? ପ୍ରଶାସନ ସମ୍ପୂର୍ଣ୍ଣ ବିଫଳ ହେଇଛି ଦେଶକୁ ସୁରକ୍ଷା ଯୋଗାଇ ଦେବାରେ । ବିଫଳ ହେଇଛି ସାଧାରଣ ନାଗରିକଙ୍କୁ ନ୍ୟାୟ ପ୍ରଦାନ କରିବାରେ । ନ୍ୟାୟ ବୋଲି ଏ ଦେଶରେ ଆଉ କିଛି ରହିଲା ନାହିଁ । ଆମ ସମ୍ବିଧାନରେ ଯେଉଁ ପ୍ରତିଶ୍ରୁତି ମିଳିଥିଲା ଯେ ଦେଶରେ ସମସ୍ତେ, ଉଚ୍ଚ ନୀଚ ନିର୍ବିଶେଷରେ, ସମାନ ଭାବରେ ନ୍ୟାୟ ପାଇବେ, କିନ୍ତୁ ଏବେ ଏ ଘଟଣା ପରେ ଆମ ମନରେ ଏଇ ଆଶଙ୍କା ମୁଣ୍ଡ ଟେକିଲାଣି ଯେ ଏ ଦେଶ ଏବେ ନ୍ୟାୟ ଶବ୍ଦଟାକୁ ଅଭିଧାନ ବିହର୍ଭୂତ କରି ସାରିଲାଣି । ସ୍ୱାର୍ଥଟାକୁ ସର୍ବସ୍ୱ କରି ସାରିଲାଣି ।

ମହାଭାଗ ! ମୋର ଏଇଟା ଅଭିଯୋଗ ନୁହେଁ । ଏକ ଅନୁନୟ ମାତ୍ର । ଏକ ବିନମ୍ର ପ୍ରତିବେଦନ ମାତ୍ର । ଆମ ସମ୍ବିଧାନରେ ଗଣମାଧ୍ୟମକୁ ମିଶେଇ ଚାରୋଟି ସ୍ତମ୍ଭର ପରିକଳ୍ପନା କରା ଯାଇଛି । ଅର୍ଥାତ୍ ପ୍ରଥମେ ତିନୋଟି ଥିଲା । ଏବେ ଗଣମାଧ୍ୟମକୁ ସେଥିରେ ଯୋଡ଼ା ଯାଇଛି । ପ୍ରଥମ ତିନୋଟିରୁ ଦୁଇଟିକୁ ଆମ ରାଜନୀତି କେବେଠୁ ଭାଙ୍ଗି ଅଲଗା କରି ଦେଇଛି । ସେ ଦୁଇ ସ୍ତମ୍ଭର ଅସ୍ତିତ୍ୱ ଆଉ ଲୋକେ ଅନୁଭବ କରୁ ନାହାନ୍ତି । ତୃତୀୟଟି ଉପରେ ଆକ୍ରମଣ ଆରମ୍ଭ ହୋଇ ଯାଇଛି । ଅନବରତ ତା ଉପରେ ପ୍ରହାର ଚାଲିଛି । ସେମାନେ ଚାହାନ୍ତି ତାକୁ ଭାଙ୍ଗି ଖଣ୍ଡ ଖଣ୍ଡ କରି ନିଜ ଅକ୍ତିଆରରେ ରଖିବେ । ନଚେତ ସେଠି ଗୋଟାଏ କାଠର ଗୋଡ଼ ଖଞ୍ଜି ଦେବେ । ଫଳରେ ସେ ଅନ୍ୟର ସାହାଯ୍ୟରେ କେବଳ ଚାଲି ପାରିବେ । ଏସବୁ ସତ୍ତ୍ୱେ ଏ ଦେଶ କେବଳ ସେଇ ସ୍ତମ୍ଭ ବା ଜୁଡ଼ିସିଆରୀ ଉପରେ ଭରସା ରଖିଛି ମିଃ ଲର୍ଡ଼ ! ଆପଣ ଯେଉଁ

'ଈଶ୍ୱର' କଥା କହୁଛନ୍ତି, ସେ ଈଶ୍ୱର ମଧ୍ୟ କେଉଁଠି ଅଛନ୍ତି ? ଆମ ଦେଶର ପାପାଚାରୀମାନେ ତାଙ୍କୁ କେବେଠୁ ହତ୍ୟାକରି ତାଙ୍କ ସ୍ଥାନରେ ନିଜକୁ ଅଧିଷ୍ଠିତ କରେଇ ନିଜକୁ ନିଜେ ମଣିଷର ପ୍ରଭୁ ବୋଲି ଘୋଷଣା କରି ସାରିଲେଣି । ଈଶ୍ୱର ଥିଲେ, ଚାଳିଶ ହଜାର ନେଇ ୱାରଣ୍ଟରେ ଦସ୍ତଖତ କରୁଥିବା ବେଳେ ତାର ବିବେକ ତାକୁ ଦଂଶନ କରି ନଥାନ୍ତା ? ତେଣୁ ଆଜି ଦୁର୍ନୀତିଗ୍ରସ୍ତମାନେ ହିଁ ଆମର ଈଶ୍ୱର ।

ମହାଶୟ ! ଏବେ ବୁଝିବାକୁ ବାକି ନାହିଁ ଯେ ଦୁର୍ନୀତିର ଈଶ୍ୱର ନ୍ୟାୟପାଳିକାକୁ ମଧ୍ୟ କବଳିତ କରି ସାରିଲାଣି । ସେ ସେଠି ମଧ୍ୟ ତାର କାୟା ବିସ୍ତାର କରି ସାରିଛି; କିନ୍ତୁ ଏସବୁ ସତ୍ତ୍ୱେ ଭାରତର ଜନଗଣ କେବଳ ନ୍ୟାୟପାଳିକା ଉପରେ ହିଁ ଆସ୍ଥା ସ୍ଥାପନ କରିଛନ୍ତି । ସେମାନେ କେବଳ ନ୍ୟାୟପାଳିକାକୁ ତାଙ୍କର ଈଶ୍ୱର ଭାବରେ ଗ୍ରହଣ କରନ୍ତି । ସେ ହିଁ ଏକମାତ୍ର ତ୍ରାଣକର୍ତ୍ତା । ତା ନ ହୋଇଥିଲେ ଯେଉଁ ଗୁଜରାଟରେ ଅତ୍ୟାଚାରୀ ସରକାରର ଛତ୍ରଛାୟା ତଳେ ହିଟଲରଙ୍କ ନରସଂହାର ଚାଲିଥିଲା ଏବଂ ଯେମିତି ଭାବରେ ସେଠାରେ ଲୋକମାନେ ନ୍ୟାୟ ପାଇବାରୁ ବଞ୍ଚିତ ହୋଇଥିଲେ ସେମାନଙ୍କ ମୁହଁରେ କେମିତି ରାହା ଫିଟି ଥାଆନ୍ତା ?

ଗୁଜରାଟର ଚାଳିଶ ହଜାରର ଲାଞ୍ଚ ନେଇ ରାଷ୍ଟ୍ରପତି ଓ ମୁଖ୍ୟ ବିଚାରପତିଙ୍କ ନାମରେ ମିଛ ୱାରେଣ୍ଟରେ ଦସ୍ତଖତ କରିବା ଘଟଣା ସମଗ୍ର ଦେଶର ମୁହଁରେ କଳା ବୋଳି ଦେଇଛି । ଦୁର୍ନୀତିରେ ଏ ଦେଶ ଏବେ ପୃଥିବୀର ତାଲିକାରେ ସର୍ବୋଚ୍ଚ ସ୍ଥାନ ଦଖଲ କରିବ । ନୂଆ ଇତିହାସ ଲେଖା ହେବ । ପୃଥିବୀର କୌଣସି ଦେଶର ନ୍ୟାୟପାଳିକାର କେହି ଏ ଯାଏ ଏପରି ଜଘନ୍ୟ ପାପ କାମରେ ଜଡ଼ିତ ଥିବାର ନଜିର ମିଳିନାହିଁ । ମୁଁ ଏବେ ବି ଚିନ୍ତା କରି ପାରୁନାହିଁ ଯେଉଁ ଦେଶରେ ଦୁର୍ନୀତି ଉପାୟରେ ରାଷ୍ଟ୍ରପତି ଓ ମୁଖ୍ୟ ବିଚାରପତିଙ୍କୁ ଆରେଷ୍ଟ କରିବାର ଆଦେଶ ମିଳି ପାରୁଛି ସେ ଦେଶର ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀମାନେ କେମିତି ବାହାରେ ମୁହଁ ଦେଖାନ୍ତି ? କଅଣ କହି ନିଜକୁ ଗୋଟାଏ ବିଶାଳ ଗଣତନ୍ତ୍ରର ସୁଯୋଗ୍ୟ ପ୍ରତିନିଧି ବୋଲି ପରିଚିତ କରାନ୍ତି ? ମୁଁ ଏ କଥା ମଧ୍ୟ ଚିନ୍ତା କରିପାରେ ନାହିଁ, ଏହି ଘଟଣାଟି ଗୁଜରାଟରେ ନଘଟି ଯଦି ବିହାରରେ ଘଟି ଥାଆନ୍ତା ? ଯଦି ପଶ୍ଚିମବଙ୍ଗ କି ଆସାମରେ ଘଟି ଥାଆନ୍ତା ? ସମଗ୍ର ଭାରତବର୍ଷ ଏବେ କମ୍ପୁ ଥାଆନ୍ତା । ଅନ୍ତତଃ ଦେଶର ନେତାମାନେ ଏବେ କମଣ୍ଡଳୁ ଓ ତ୍ରିଶୂଳ ଧରି ତାଣ୍ଡବ ନୃତ୍ୟ କରୁ ଥାଆନ୍ତେ । ରାଷ୍ଟ୍ରପତି ଶାସନ ଜାରି ନହେଲେ ଗଣତନ୍ତ୍ର

ଭୁଶୁଡ଼ି ପଡ଼ିବ ବୋଲି କହୁଥାଆନ୍ତେ; କିନ୍ତୁ ଗୁଜରାଟରେ ଗଣତନ୍ତ୍ରକୁ ସମାଧି ଦିଆଯାଇଥିଲେ ମଧ୍ୟ କାହାରି ପାଟି ଫିଟେନାହିଁ । ଅନ୍ତତଃ ଏଯାଏ କେହି ସେ ବିଷୟରେ କିଛି କହିନାହାନ୍ତି ।

ଗଣମାଧ୍ୟମକୁ ଚତୁର୍ଥ ସ୍ତମ୍ଭ ଭାବରେ ବିଚାର କରା ଯାଉଥିଲାବେଳେ ଦୁର୍ଭାଗ୍ୟବଶତଃ ଏହି ସ୍ତମ୍ଭଟି ସବୁବେଳେ ଥାଏ ବ୍ୟକ୍ତିଗତ ମାଲିକାନାରେ । ସେ ଅବସ୍ଥାରେ ତା'ଠୁ ସବୁବେଳେ ଜନବାଦୀ ବିଚାରଧାରା ଆଶା କରି ହେଉ ନ ଥିଲେ ମଧ୍ୟ ଏବେ ଗତ କେତେବର୍ଷ ହେଲା ଦେଖା ଯାଉଛି ବୈଦ୍ୟୁତିକ ଗଣମାଧ୍ୟମ ଅତି ଆଶ୍ଚର୍ଯ୍ୟଜନକ ଭାବରେ ତା'ର ସାମାଜିକ ଦାୟିତ୍ୱ ତୁଲେଇ ଆସୁଛି । ଏଥିପାଇଁ ଅବଶ୍ୟ ତାକୁ ବହୁ ମୂଲ୍ୟ ଦେବାକୁ ପଡୁଛି । ରାଜନୀତି ସେ ସ୍ତମ୍ଭଟିକୁ ମଧ୍ୟ ଖତମ କରିଦେବାକୁ ଚାହୁଁଛି । ତାର ସ୍ୱାର୍ଥ ବିରୋଧରେ କିଛି ସେ ଶୁଣିବାକୁ ଚାହେଁନା । କିନ୍ତୁ ଯେପରି ଭାବରେ ବିପଦସଂକୁଳ ଅବସ୍ଥାରେ ସେ ଗଣତନ୍ତ୍ରର ରକ୍ଷା କବଚ ହୋଇ ଛିଡ଼ା ହେଉଛି, ସେଥିରେ ସେ ସମସ୍ତଙ୍କର ପ୍ରଶଂସାର ପାତ୍ର ହୋଇ ପଡ଼ିଛି । ସମଗ୍ର ପୃଥିବୀରେ ଏବେ ଭାରତୀୟ ଗଣମାଧ୍ୟମ ଏକ ବିଶେଷ ସ୍ଥାନର ଅଧିକାରୀ । ଏହା କମ କଥା ନୁହେଁ । ଏ ଅବସ୍ଥାରେ ଗଣମାଧ୍ୟମ ଓ ନ୍ୟାୟପାଳିକା ପାଖାପାଖି ହୋଇ ସାରିଲେଣି । ଏହା ଏକ ଆଶ୍ୱସନାର କଥା । ଏସବୁ ସତ୍ତ୍ୱେ ଆମେ ଗୁଜରାଟ ଘଟଣାକୁ ବ୍ୟକ୍ତି ବିଶେଷଙ୍କ କାମ ବୋଲି କହି ପାରିବା ନାହିଁ । ଦୁର୍ନୀତିର କ୍ୟାନସର ସମଗ୍ର ଶରୀରକୁ ଆକ୍ରାନ୍ତ କରି ଥିବାବେଳେ ତାକୁ ଆଉ ଆଇନର ସାଧାରଣ ଅପରେସନ ଦ୍ୱାରା ଭଲ କରି ହେବନାହିଁ । ଏକ ବିଶେଷ ଧରଣର 'ଟ୍ରାନ୍ସଫ୍ୟୁଜନ' ଆବଶ୍ୟକ ଯାହା କେବଳ ଉଭୟ ଉଚ୍ଚତମ ନ୍ୟାୟାଳୟ ଏବଂ ଗଣମାଧ୍ୟମ ଦ୍ୱାରା ସମ୍ଭବ ହୋଇ ପାରିବ । ଏହାହିଁ ସମୟର ଜରୁରୀ ଆବଶ୍ୟକତା ।

❑

('ସମାଜ'- ୧୫.୨.୨୦୦୪)

# ତାଳଚେର-ବିମଳାଗଡ଼ ରେଳରାସ୍ତା : ସ୍ୱପ୍ନ ଦେଖୁଛ ?

କେନ୍ଦ୍ର ସରକାର ଏବେ ତାଳଚେର ବିମଳାଗଡ଼ ରେଳରାସ୍ତାକୁ ଠିକ ନିର୍ବାଚନ ପୂର୍ବରୁ ମଞ୍ଜୁର କରିଛନ୍ତି ବୋଲି ଏକ ଖବର ପ୍ରକାଶ ପାଇଛି । ତାକୁ କୁଆଡ଼େ ଯୋଜନା ବୋର୍ଡ ମଞ୍ଜୁରୀ ଦେଇଛନ୍ତି ବୋଲି କୁହା ଯାଉଛି । ଏହି ଶୁଭ ସମ୍ବାଦଟା ପ୍ରଥମେ ରେଳ ବିଭାଗ କିମ୍ବା ଯୋଜନା ବୋର୍ଡ ତରଫରୁ ଘୋଷଣା କରା ନ ଯାଇ ଆମକୁ ଜୁଏଲ ଓରାମଙ୍କ ଆଦିବାସୀ ମଙ୍ଗଳ ବିଭାଗ ତରଫରୁ ଜଣାଇ ଦିଆଗଲା । ତାର କାରଣଟା ବୁଝି ହେଲା ନାହିଁ । ଏ ଦୁଇ ମନ୍ତ୍ରଣାଳୟ ମଧ୍ୟରେ ଅଧିକ ସମନ୍ୱୟ ଅଛି ବା ଗୁପ୍ତ ବୁଝାମଣା ଅଛି ସେ ବିଷୟରେ ଏକ ପ୍ରଶ୍ନ ଉଠିବା ସ୍ୱାଭାବିକ । ତାଳଚେର ବିମଳାଗଡ଼ ରେଳ ରାସ୍ତା ଦାବି ଷାଠିଏ ଦଶକର ଶେଷ ଭାଗର କଥା । ବହୁ ଆନ୍ଦୋଳନ ସେତେବେଳେ ହେଇଥିଲା । ଆଜିକୁ ଦୀର୍ଘ ୩୦ ବର୍ଷରୁ ଉର୍ଦ୍ଧ୍ୱ ସମୟ ହେବ ସେ ଦାବି କେନ୍ଦ୍ର ସରକାରଙ୍କ ଶୀତଳ ଭଣ୍ଡାରରେ ପଡ଼ିଥିଲା । କଂଗ୍ରେସ ସରକାର ଯେମିତି ତାକୁ ପଛକୁ ଫୋପାଡ଼ି ଦେଇଥିଲେ, ଆଜିକୁ ପାଞ୍ଚବର୍ଷ ହେଲା ବିଜେପି ସରକାର ମଧ୍ୟ ତା କଥା ମନେ ପକେଇ ନ ଥିଲେ । ହଠାତ ସରକାରଙ୍କ ଘୋଷଣା ରାଜନୈତିକ ଉଦ୍ଦେଶ୍ୟ ପ୍ରଣୋଦିତ ହୋଇଥିଲେ ମଧ୍ୟ ଓଡ଼ିଆକୁ ଆମୋଦିତ କରିଛି । ଓଡ଼ିଆତ ଯେ କୌଣସି ଘୋଷଣା ଶୁଣିଲେ ଆମୋଦିତ ହୁଅନ୍ତି । ସେଇ ସେତକ ତାଙ୍କ ପାଇଁ ଯଥେଷ୍ଟ । କାମରୁ କଅଣ ମିଳିବ ? ପ୍ରତିଶ୍ରୁତିଟାଏ ମିଳିଗଲା ପରେ ଏଣିକି ନିଶ୍ଚିନ୍ତରେ ଶୋଇ ପଡ଼ି ହେବ । ସମ୍ବାଦପତ୍ରରେ ଧନ୍ୟବାଦଟା ପ୍ରକାଶ ପାଇଲା ପରେ ଆଉ କଅଣ ଥାଏ ? ଏ ସବୁ ବିଷୟରେ ଆମ ଓଡ଼ିଆଙ୍କ କମସେ କମ ଶହେ ବର୍ଷର ରେକର୍ଡ ଅଛି । ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ଖୋର୍ଦ୍ଧା-ବଲାଙ୍ଗିର ରେଳ ରାସ୍ତା ଦାବି ହୋଇଥିଲା । ଏବେ ଉତ୍କଳ ସମ୍ମିଳନୀ ମଧ୍ୟ ତାକୁ ଭୁଲି ଯାଇଥିବ । ଆମେ ଏମିତି ଭୁଲି ଯାଇଥିବା ଅଥଚ ପ୍ରତିଶ୍ରୁତି ବହନ କରିଥିବା ପ୍ରକଳ୍ପର ଲମ୍ବା ତାଲିକା ଦେଖି ବରାବର ଖୁସି ହେଉଁ ।

ତେବେ ସେ ଯାହା ହେଉ ଏବେ ସେଇ ତାଳଚେର-ବିମଳାଗଡ ରେଳ ରାସ୍ତାର ଘୋଷଣା ଆମକୁ ବିସ୍ମିତ କରିଛି ଏଇଥିପାଇଁ ଯେ, ତିରିଶ ବର୍ଷ ତଳର ସେ ଆନ୍ଦୋଳନର ଘା' ଏ ଯାଏ ଶୁଖି ନ ଥିଲା ବେଳେ ଘୋଷଣା ପ୍ରକାଶ ପାଇଲା ଠିକ୍ ନିର୍ବାଚନ ପୂର୍ବରୁ ଏବଂ ଜୁଏଲ ଓରାମଙ୍କ ଅଫିସରୁ । ପ୍ରାକ୍ ନିର୍ବାଚନୀ ଘୋଷଣାକୁ ଆମ ଭାରତୀୟମାନେ

କେବେ ବି ବିଶ୍ୱାସ କରନ୍ତି ନାହିଁ । ବୋଧେ ଏଇ କାରଣରୁ କି ଆଉ କିଛି କାରଣ ମଧ୍ୟ ଥାଇପାରେ, ଏ ଘୋଷଣା ପ୍ରକାଶ ପାଇଲା ପରେ ଓଡ଼ିଶା ସରକାରଙ୍କ ତରଫରୁ ପ୍ରତିକ୍ରିୟା ପ୍ରକାଶ ପାଇନାହିଁ । ଏପରିକି ରାଉରକେଲାର ବିଧାୟକ ଅଜିତ ଦାସ ଯେ କି ଏହି ସୁପ୍ତ ଆନ୍ଦୋଳନକୁ ପୁନର୍ଜୀବିତ କରିବାରେ ଏକ ବିଶେଷ ଭୂମିକା ଗ୍ରହଣ କରିଥିଲେ ତାଙ୍କ ପ୍ରତିକ୍ରିୟା ମଧ୍ୟ ଜଣା ପଡ଼ି ନାହିଁ । ହୁଏତ ଏହି ଘୋଷଣାରୁ କିଏ ବେଶୀ ରାଜନୈତିକ ଲାଭ ଉଠାଇ ପାରିବ ସେ ବିଷୟରେ ଚର୍ଚ୍ଚା ଚାଲିଥିବା ଘୋଷଣାଟା ଅନେକଗୁଡ଼ିଏ ଅସମାହିତ ପ୍ରଶ୍ନବାଚୀ ଭିତରେ ରହି ଯାଉଛି । ଏସବୁ ସତ୍ତ୍ୱେ ଏହି ରେଳ ପ୍ରକଳ୍ପ ବିଷୟରେ ରେଳମନ୍ତ୍ରୀ ନୀତିଶ କୁମାର ରେଳ ବଜେଟ ଉପସ୍ଥାପିତ କରି ଯାହା ସବୁ କହିଛନ୍ତି, ସେ ସବୁ ଆମ କହିବା ଅପେକ୍ଷା ମଧ୍ୟ ବେଶୀ ହେଇ ଯାଇଛି । ସତେ ଯେମିତି ସେ ଏ ପ୍ରକଳ୍ପ ପାଇଁ ବହୁ ଦିନୁ ଚେଷ୍ଟା କରି ଆସୁଥିଲେ । ତାଙ୍କ ଚେଷ୍ଟାର ଫଳ ହେଲା କାମଚଳା ବଜେଟରେ ୭୨୬ କୋଟି ୯୬ ଲକ୍ଷ ବ୍ୟୟ ଅଟକଳ କରାଯାଇଥିବା ବେଳେ ୨୦୦୩-୦୪ ବର୍ଷ ପାଇଁ ୧ ଲକ୍ଷ ଅନୁଦାନ ଘୋଷଣା କରାଯାଇଛି ଏବଂ ତୁରନ୍ତ କାମ ଆରମ୍ଭ ପାଇଁ ୧ ହଜାର ଟଙ୍କା ମଞ୍ଜୁର ହେଇଛି । ଏହା କମ୍ କଥା ନୁହେଁ । ୭୨୬ କୋଟି ଖର୍ଚ୍ଚ ପାଇଁ ୧ ହଜାର ତୁରନ୍ତ ଖର୍ଚ୍ଚକୁ (କେବଳ ଗୋଟାଏ କ୍ଷୁଦ୍ରତମ ବିଜ୍ଞାପନ ପାଇଁ ?) ଗୋଟିଏ ବିରାଟ ସଫଳତା ହିସାବରେ ଓଡ଼ିଆମାନେ ଗ୍ରହଣ କରିବାକୁ ବାଧ୍ୟ ହେବେ । ନିର୍ବାଚନ ପାଇଁ ଏହା ଯଥେଷ୍ଟ । ସମଗ୍ର ବଜେଟଟା ନିର୍ବାଚନ ପାଇଁ ବୋଲି ଅନ୍ୟମାନେ କହୁ ଥିବାରୁ ଆମକୁ ଯାହା ମିଳିଲା ସେଥିରେ ସନ୍ତୁଷ୍ଟ ରହିବାକୁ ପଡ଼ିବ । ଆମେ ଏକ ହଜାର ଟଙ୍କା ଖର୍ଚ୍ଚ କରି ସାରିଲା ବେଳକୁ ତେଣେ ନିର୍ବାଚନ ମଧ୍ୟ ଶେଷ । ନିର୍ବାଚନ ପରେ ଆଉ ଗୋଟାଏ ବଜେଟ ଆସିବ । ସେତେବେଳେ ନୀତିଶ ଥିବେ କି ଆଉ କିଏ ଥିବେ ସେ କଥା କିଏ କହିବ ? ଥିଲେ ମଧ୍ୟ ସେମିତି ଆଉ ଏକ ଲକ୍ଷ ବା ଏକ ହଜାର ଟଙ୍କା ମଞ୍ଜୁର ହେବ । ଯାହା ଓ ଯେମିତି ଓଡ଼ିଆଙ୍କ ଭାଗ୍ୟରେ ବରାବର ହେବାର ଥାଏ, ହୁଏ । ଏ ସବୁ ତ ନୂଆ ନୁହେଁ, ଦେଖି ଦେଖି ସ୍ୱାଧୀନତାର ୬୦ ବର୍ଷ କଟେଇ ସାରିଲୁଣି । ଆମେ ସବୁ ରେଳ ମନ୍ତ୍ରୀଙ୍କୁ ଦେଖିଛୁଁ । ପ୍ରଧାନମନ୍ତ୍ରୀଙ୍କୁ ବି ଦେଖିଛୁଁ । ଆମେ ଓଡ଼ିଆମାନେ ନିଜକୁ ମଧ୍ୟ ଦେଖି ଆସୁଛୁଁ ।

ନୀତିଶ କୁମାରଙ୍କୁ ବିହାରରେ 'ନୀତିନ' କୁମାର ବୋଲି କୁହାଯାଏ । ନୀତି ନ ଥିବା ଲୋକ । ତାଙ୍କର ଗୋଟାଏ ନୀତି ଥିଲେ ସେ କେବେ କହି ନ ଥାଆନ୍ତେ, ୪ର୍ଥ ଶ୍ରେଣୀ କର୍ମଚାରୀ ସବୁ ସର୍ବଭାରତୀୟ ସ୍ତରରେ ବଛାଯିବେ । ଅବସ୍ଥା ଅସମ୍ଭାଳ ହେବାରୁ ଏବେ ସେସବୁ ବନ୍ଦ ଅଛି । ତାଙ୍କର ଇଚ୍ଛା ସବୁ ଚାକିରିରେ କେବଳ ବିହାରୀମାନେ ଥାଆନ୍ତୁ । ଅନ୍ୟମାନେ ନର୍କକୁ ଯାଆନ୍ତୁ । ଏଥର ସେଇ କାମଚଳା ବଜେଟରେ ନୀତିଶ କୁମାର କୁଆଡ଼େ ୩ ଲକ୍ଷ ଚାକିରି ଦେବେ । ଓଡ଼ିଶା ଭାଗ୍ୟରେ ମୋଟେ ପଡ଼ିବ ନାହିଁ । କାରଣ ଏହି ସମୟ

ଭିତରେ ଓଡ଼ିଶାରେ କନଷ୍ଟ୍ରକସନ୍ କାମ ନାହିଁ । ହଜାରେ ଟଙ୍କାରେ କି କନଷ୍ଟ୍ରକସନ୍ କାମ ହେବ ? ନୀତିଶଙ୍କର ଏହି ନୀତିରୁ ବୁଝି ହେଇଯିବ, ତାଙ୍କର ଓଡ଼ିଶା ପାଇଁ କେତେ ଦରଦ । ଓଡ଼ିଶାର ରେଳ ପ୍ରକଳ୍ପ ମଞ୍ଜୁରୀ ପାଇଲା ପରେ ମଧ୍ୟ ଉପଯୁକ୍ତ ବ୍ୟୟ ବରାଦ ଅଭାବରୁ ଏ ଯାଏ ପ୍ରାୟ ୨୦ଟି ପ୍ରକଳ୍ପ କାର୍ଯ୍ୟକାରୀ ହେଇ ପାରୁନାହିଁ । ତା ଭିତରୁ କୋରାପୁଟ-ରାୟଗଡ଼ା, ଦଇତାରୀ-ବଂଶପାଣି, ଲାଞ୍ଜିଗଡରୋଡ଼-ଜୁନାଗଡ, ଖୋର୍ଦ୍ଧାରୋଡ-ବଲାଙ୍ଗିର, ହରିଦାସପୁର-ପାରାଦ୍ୱୀପ, ଅନୁଗୁଳ-ସୁକିନ୍ଦାରୋଡ ଏବଂ ଗେଜ ପରିବର୍ତ୍ତନରେ ରୁପ୍‌ସା-ବାଙ୍ଗିରିପୋଷ, ନୂଆପଡା-ଗୁଣୁପୁର ଇତ୍ୟାଦି ଇତ୍ୟାଦି । ରୁପ୍‌ସା-ବାଙ୍ଗିରିପୋଷି ଦୁଇଥର ଶୁଭ ଦିଆ ସରିଲାଣି । ଆଜିକୁ ୧୪/୧୫ ବର୍ଷ ହେଲା ପ୍ରତିବର୍ଷ କୋଟିଏ ଦୁଇ କୋଟି ଲେଖାଁଏ ମଞ୍ଜୁର ହେଲେ ଏହା ଶେଷ ହେଲା ବେଳକୁ (ଯଦି ଶେଷ ହୁଏ) କେତେ ଶହ ବର୍ଷ ଲାଗିବ ତାହା ଅନୁମାନ କରି ହେବ । ଭୁବନେଶ୍ୱର ଇଷ୍ଟକୋଷ୍ଟ ଜୋନର ମୁଖ୍ୟ ଦପ୍ତର ୧୯୯୬-୯୭ରେ ମଞ୍ଜୁରୀ ପାଇଥିଲେ ମଧ୍ୟ ଏ ଯାଏ କଅଣ କାମ ହେଇଛି ସେ କଥା ସମସ୍ତେ ଜାଣନ୍ତି । ଏ ଯାଏ ତାର ସୀମା ନିର୍ଦ୍ଧାରଣ ମଧ୍ୟ ସରି ନାହିଁ । ଏବେ ଶୁଣାଯାଉଛି ତାକୁ ଏଠୁ ଉଠେଇ ନିଆଯିବ । ଆମେ ଏ କଥା ଜାଣୁ, ସରକାରଙ୍କର କାମ କରିବାର ଇଚ୍ଛା ନଥିଲେ ଲୋକଙ୍କୁ କେବଳ ଭୁଆଁ ଭୁଲେଇବା ପାଇଁ (ବିଶେଷ କରି ଭୋଟ ବେଳେ) ଦୁଇ ଚାରି ହଜାର ଟଙ୍କା ମଞ୍ଜୁର କରି ଦିଅନ୍ତି । ତାପରେ ଆଉ ସେ ବିଷୟରେ କାହାରି ଚିନ୍ତା ନ ଥାଏ । ନା ଓଡ଼ିଆଙ୍କର ଥାଏ ନା ଓଡ଼ିଶାର ନେତାମାନଙ୍କର । ସମସ୍ତେ ଯଦି ଏକାଥରେ ଶୋଇ ପଡ଼ନ୍ତି ତେବେ ଦିଲ୍ଲୀ ବାଦଶାଙ୍କର ନିଦ କାହିଁକି ଭାଙ୍ଗିବ ? ତେଣୁ ରେଳମନ୍ତ୍ରୀଙ୍କୁ ଧନ୍ୟବାଦ ଜ୍ଞାପନ କରି ସାରିଲା ପରେ ଆଉ କି କାମ ଅଛି ? ନବୀନ ମୋଟେ ଜାଣି ନ ଥିବେ ଏ ବିମଳାଗଡ଼ କେଉଁଠି, ଅଧିକାଂଶ ମନ୍ତ୍ରୀ ମଧ୍ୟ ଜାଣି ନଥିବେ । ସେମାନେ କେବଳ ସେ ସ୍ଥାନଟା ତାଙ୍କ ନିର୍ବାଚନ ମଣ୍ଡଳୀରେ ନୁହେଁ ବୋଲି ଜାଣିଲା ପରେ ହୁଏତ ଚୁପ୍ ହେଇ ଯାଇଥିବେ । ଅନ୍ୟଠି ଥିଲେ ତାଙ୍କର ମୁଣ୍ଡ ଖେଳେଇବାର କଅଣ ଅଛି ? ନୀତିଶ ଠିକ୍ ଜାଣିଛନ୍ତି ଓଡ଼ିଆଙ୍କୁ କେମିତି ସନ୍ତୁଷ୍ଟ କରିବାକୁ ହୁଏ । କିଛି ନ କରି କେମିତି ଭୋଟ ନେବାକୁ ହୁଏ ସେ କଥା ଆମ ନେତାଙ୍କୁ ଭଲ ଜଣା । ଚକେ ଗଲେ ବାର ହାତ । ଓଡ଼ିଆଙ୍କ ଲଢୁଆ ଚରିତ୍ର ନ ଥିବାରୁ ସେମାନଙ୍କ ସବୁ ପ୍ରୋଜେକ୍ଟ ବର୍ଷ ବର୍ଷ ଧରି ପଡି ରହିଛି । ସବୁବେଳେ ମନ୍ତ୍ରୀଙ୍କୁ ତ ଦୋଷ ଦେଇ ଲାଭ ନାହିଁ । ଚେଇଁ ଶୋଇବ ଯିଏ ତାକୁ ଉଠେଇବ କିଏ । ଯୁଗ ଯୁଗ ଧରି ଆମର ଏ ଦୁର୍ବଳ ଚରିତ୍ର ଆମକୁ ଆକ୍ରାନ୍ତ କରି ରଖିଛି । ଆମେ ସେଥିରୁ ମୁକ୍ତ ନ ହେବା ଯାଏ ଆମ 'ହାତ ଅଳସେ ନିଶ ବଙ୍କା' ହେଇ ରହିଥିବ । ଆମକୁ କୌଣସି ପ୍ରକଳ୍ପ ମିଳିବ ନାହିଁ । ❑

('ଅନୁପମ ଭାରତ'- ୧୭.୨.୨୦୦୪)

# ଆମ ଗଣତନ୍ତ୍ରର ଭବିଷ୍ୟତ

ଏବେ ଏବେ ଓଡ଼ିଶାରେ ସାଧାରଣ ନିର୍ବାଚନ ଶେଷ ହୋଇଛି । ଭାରତର ଆଉ ଯେଉଁ କେତେକ ସ୍ଥାନରେ ନିର୍ବାଚନ ବାକି ଅଛି ସେ ସବୁ ସ୍ଥାନରେ ମଧ୍ୟ ଆଉ ଅଳ୍ପ କେତେଦିନ ମଧ୍ୟରେ ସରିଯିବ । ଏ ସବୁ ସରିଗଲା ପରେ ଆମ ଗଣମାଧ୍ୟମ ନେତାମାନଙ୍କ ଉକ୍ତିକୁ ଉଦ୍ଧାର କରି ହୁଏତ କହିବେ ଯେ 'ପୃଥିବୀର ବୃହତ୍ତମ ଗଣତନ୍ତ୍ରରେ ନିର୍ବାଚନ ଶାନ୍ତିପୂର୍ଣ୍ଣ ଭାବରେ ଶେଷ ହୋଇଛି ।' ଏ ବାକ୍ୟଟିକୁ ଆମେ ପରମ୍ପରାଗତ ଭାବେ ବରାବର ବ୍ୟବହାର କରି ଆସୁଛୁଁ । କାରଣ ତା' ଭିତରେ ଆମେ ସୃଷ୍ଟି କରିଥିବା ସମସ୍ତ ଅଳିଆ ଓ ଆବର୍ଜନା ଢାଙ୍କି ଦେବାକୁ ଚାହୁଁ । ଏକଥା ସତ ଭାରତର ସାଧାରଣ ନିର୍ବାଚନ ଉପରେ ସାରା ପୃଥିବୀର ନଜର ଥାଏ । ସେମାନେ ବିଭିନ୍ନ ଦୃଷ୍ଟିକୋଣରୁ ତାକୁ ବିଚାର କରନ୍ତି । ସେ ବିଚାର ସହିତ ସେମାନଙ୍କର ସ୍ୱାର୍ଥ ଜଡ଼ିତ ଥାଏ ।

ତେବେ ସେ ଯା ହେଉ, ଓଡ଼ିଶାରେ ଏବେ ଯେଉଁ ନିର୍ବାଚନ ହେଲା ତାହା ସମଗ୍ର ଦେଶର ନିର୍ବାଚନର ବିଧି ବ୍ୟବସ୍ଥା ଠାରୁ ଅଲଗା ନୁହେଁ । ତେଣୁ ତାକୁ ଗୋଟିଏ ବୋଲି ଧରାଯିବ । ସେଇ ଦୃଷ୍ଟିରୁ ଏଥର ଯୋଉ ନିର୍ବାଚନ ହେଲା ତାକୁ ପ୍ରଧାନତଃ ତିନୋଟି ଦୃଷ୍ଟିରୁ ବିଚାର ଆଲୋଚନା କରା ଯାଇପାରେ । ୧- ଦଳବଦଳ, ୨- କଳା ଅର୍ଥର ବିନିଯୋଗ ଏବଂ ୩- ଅବ୍ୟବସ୍ଥା । ଓଡ଼ିଶାରେ ବିଧାନସଭା ନିର୍ବାଚନଟାକୁ ବର୍ଷେ ଆଗୁଆ କରିଦେବା ଦ୍ୱାରା କୁଆଡ଼େ ଶହେ କୋଟି ଟଙ୍କା ବଞ୍ଚେଇ ଦିଆଗଲା ବୋଲି ନିର୍ବାଚନୀ ପ୍ରଚାର ଖୁବ୍ ହେଲା । ଲୋକଙ୍କୁ ଭୁଆଁ ବୁଲେଇବା ପାଇଁ ଚମତ୍କାର ଧୂଆଁବାଣ ସୃଷ୍ଟି କରିହୁଏ । ଗତ ପାଞ୍ଚବର୍ଷ ଭିତରେ ତିନିଟା ସାଧାରଣ ନିର୍ବାଚନ କରି ଦେଶର ଖଜଣାଖାନାକୁ ଶେଷ କରି ମଧ୍ୟ ଆମ ନେତାମାନେ କହି ପାରନ୍ତି ଯେ ଆମେ ଶହେ କୋଟି ବଞ୍ଚେଇ ଦେଲୁଁ । ସତେ ଯେମିତି ଏହାଦ୍ୱାରା ଶହେ କୋଟି ଆମେ ଏବେ ବେଙ୍କରେ ଡିପୋଜିଟ କରି ଦେଲୁଁ । ତେବେ ଆମର ଏଠି କହିବାର କଥା ଯେ ଏଥର ଆମର ଯୋଉ ନିର୍ବାଚନ ହେଲା ସେଥିରେ ଦଳ ବଦଳଟାକୁ ଅତି ଗୁରୁତ୍ୱର ସହିତ ବିଚାର କରିବାକୁ ହେବ । ଯେମିତି ଭାବରେ ଦଳ ବଦଳ ହେଲା ତାହା ସ୍ୱାଧୀନ ଭାରତରେ କେବେବି ହୋଇ ନ ଥିଲା । ସେଇ ଦୃଷ୍ଟିରୁ ଯଦି କୁହାଯାଏ 'ଯାହା ଗତ ୫୦ ବର୍ଷ

ଭିତରେ ହୋଇ ପାରି ନ ଥିଲା ଆମେ ତାକୁ ପାଞ୍ଚ ବର୍ଷରେ କରିଦେଲୁଁ' ଆମେ ତାକୁ ଗ୍ରହଣ କରିବାକୁ ବାଧ୍ୟ । ଓଡ଼ିଶାରେ ଏ ଦଳ ବଦଳଟା ବୋଧେ ଏଥର ଶୀର୍ଷସ୍ଥାନରେ ପହଞ୍ଚିଛି । କିଏ, କେତେ ଓ କେତେବେଳେ, କୋଉ ବାଡ ଡେଉଁଚି ବା ଭାଙ୍ଗୁଚି ତାର ହିସାବ କମ୍ପ୍ୟୁଟର ମଧ୍ୟ ରଖି ପାରୁ ନ ଥିବ । ପତିତାର ଶାଢ଼ି ବଦଳ କରିବାକୁ ଯେତେ ସମୟ ଲାଗେ ତା ଅପେକ୍ଷା ମଧ୍ୟ କମ୍ ସମୟ ଲାଗେ ଦଳ ବଦଳ କରିବାକୁ । ଏ ଦଳ ବଦଳ ମୂଳରେ ଗୋଟିଏ ମାତ୍ର କାରଣ ହେଲା 'ମୋତେ ସେ ପାଖରେ ଟିକଟ ମିଳିଲା ନାହିଁ ।' ଅର୍ଥାତ୍ ମୋ ସ୍ୱାର୍ଥ ସେଠି ସୁରକ୍ଷିତ ନୁହେଁ । ସ୍ୱାର୍ଥ ନ ଥିଲେ ଜଣେ ରାଜନୀତି କରିବ କାହିଁକି ? ନିଃସ୍ୱାର୍ଥପର ଦେଶସେବା ଏକବିଂଶ ଶତାବ୍ଦୀରେ ସମ୍ଭବ ନୁହେଁ । ପ୍ରଥମେ 'ମୁଁ' ତାପରେ ଅନ୍ୟମାନେ । ତା'ର କାରଣ ହେଉଛି ଏବେ ରାଜନୀତିରେ ସବୁଠାରୁ ବେଶି ଲାଭ ବୋଲି ସମସ୍ତେ ଜାଣିଲେଣି । ମଣିଷର ଲୋଭ ଅପରିସୀମ । ପ୍ରଚୁର ପାଇବାର ଲୋଭକୁ କିଏ ବା ଏଡ଼ି ପାରିବ ? ସହଜ ଓ ସୁବିଧାରେ ସ୍ୱର୍ଗର ଇନ୍ଦ୍ରତ୍ୱ ଆସି ପାଦ ତଳେ କୁଢେଇ ହୋଇଯାଏ । ତେଣୁ ଯାହାର ପ୍ରଚୁର ଅଛି ସେ ଯେମିତି ଟିକଟ ଖଣ୍ଡିକ ପାଇଁ ହାଇଁପାଇଁ ହୋଇ ଦଉଡୁ ଥାଏ, ଯେଉଁମାନେ 'କିଛି ନାହିଁ'ର ଘୋଷଣାପତ୍ର ଦେଇଛନ୍ତି ସେମାନେ ମଧ୍ୟ ଅଣନିଃଶ୍ୱାସୀ ହୋଇ ଦଉଡୁ ଥାଆନ୍ତି । ପ୍ରକୃତ କଥାଟା ହେଲା ରାଜନୀତିଟା ଏବେ ଏତେ ମାତ୍ରାରେ ଲୋଭନୀୟ ହୋଇଚି ଯେ ସେ ଲୋଭକୁ ହାଇକୋର୍ଟ କି ସୁପ୍ରିମକୋର୍ଟ ଜଜ ଠାରୁ ଆରମ୍ଭ କରି ଆଇଜି ଓ ଡିଜି ପର୍ଯ୍ୟନ୍ତ ଯେଉଁମାନେ ମାସକୁ ଅତି କମରେ ଅର୍ଦ୍ଧଲକ୍ଷ ରୋଜଗାର କରନ୍ତି, ସେମାନେ ମଧ୍ୟ ଦେଶସେବା ପାଇଁ ୧୦/୧୫ ହଜାର ଦରମାକୁ ଓହ୍ଲେଇ ଆସନ୍ତି । କାରଣ ସେମାନେ ଜାଣନ୍ତି ଏଠି ଉଭାକୁ ପୋତା ବେଶି । ସେ ଲୋଭକୁ ବାଚସ୍ପତି କି ଗଭର୍ଣ୍ଣର ମଧ୍ୟ ଛାଡ଼ି ପାରନ୍ତି ନାହିଁ । ଏ ସମସ୍ତେ ଚାହାନ୍ତି ପାଇବାର ପାହାଚ ଗଢ଼ିବାକୁ । ପ୍ରଚୁର କ୍ଷମତା ଓ ପ୍ରଚୁର ଲାଭ । ବିଚାରପତିମାନେ ଆମ ଦେଶର ଏକମାତ୍ର ରକ୍ଷାକର୍ତ୍ତା । ଏ ଶାସନ କେବେଠାରୁ ଭୁଶୁଡ଼ି ପଡ଼ନ୍ତାଣି ଯଦି ଆମ ନ୍ୟାୟାଳୟ ନ ଥାଆନ୍ତା । ଆମ ଗଣତନ୍ତ୍ରର ଏକମାତ୍ର ଭରସା ନ୍ୟାୟାଳୟଠାରେ; କିନ୍ତୁ ଏବେ ଦେଖାଗଲାଣି ଯେ ସେ ପବିତ୍ର ଅନୁଷ୍ଠାନଟି ମଧ୍ୟ ଦୋହଲିବାକୁ ଆରମ୍ଭ କଲାଣି ।

ଅର୍ଥ ଓ କ୍ଷମତାର ଲୋଭ ସେଠି ମଧ୍ୟ ତା'ର ପ୍ରଭାବ ବିସ୍ତାର କରି ସାରିଲାରି । ସମ୍ପୂର୍ଣ୍ଣ ନିରପେକ୍ଷ ଓ ପବିତ୍ରତମ ଆସନକୁ ଛାଡ଼ି ଏବେ ଲୋକେ ରାଜନୀତିକୁ ଆସି ଗଲେଣି । ଏବେ ଜଣେ ରାଜ୍ୟପାଳ ଯେତେବେଳେ ନିର୍ବାଚନରେ ଦଳୀୟ ରାଜନୀତିକୁ ସାହାଯ୍ୟ କରିବାକୁ ଆହ୍ୱାନ ଦେଲେ ସେତେବେଳେ ଦେଶ ସ୍ତବ୍ଧ ହୋଇଗଲା । ସ୍ୱାଧୀନ

ଭାରତରେ ଏକଥା କୁତ୍ରାପି ଦେଖା ଦେଇ ନ ଥିଲା । ସେମାନେ ତାଙ୍କ ଆସନର ସମ୍ମାନ ଓ ପବିତ୍ରତା ରକ୍ଷା କରୁଥିଲେ । ଏହାଦ୍ୱାରା ଶାସନରେ ନିରପେକ୍ଷତା ବଜାୟ ରହୁଥିଲା ଏବଂ ଜନତାର ଭରସା ମଧ ବଢୁଥିଲା । ଏବେ ସେ ସବୁ ଧୂଳିସାତ୍ ହୋଇଚି । ଜଣେ ବାଚସ୍ପତି ତାଙ୍କ ପଦରୁ ଇସ୍ତଫା ନ ଦେଇ ନିର୍ବାଚନ ଲଢ଼ିବାକୁ ଯଦି ଆଇନ ବାଧା ଦେଇ ନ ପାରେ ତେବେ ଜଣେ ହାଇକୋର୍ଟ ଜଜ କାହିଁକି ଇସ୍ତଫା ଦେବେ ? ଜଣେ ରାଜ୍ୟପାଳ ଯଦି ଦଳୀୟ ରାଜନୀତିକୁ ସମର୍ଥନ କରିବାକୁ ଆହ୍ୱାନ ଦେଇ ପାରନ୍ତି ତେବେ ଭବିଷ୍ୟତରେ ରାଷ୍ଟ୍ରପତି ନିଜେ ତାଙ୍କ ବାସଭବନରୁ ମନୋନୟନ ପତ୍ର ଦାଖଲ କଲେ, କି ନିଜର ନିର୍ବାଚନ ପ୍ରଚାର କଲେ, ଆଉ ଆଶ୍ଚର୍ଯ୍ୟ ହେବାର ନାହିଁ । କିମ୍ବା ସୁପ୍ରିମକୋର୍ଟର ଚିଫ ଜଷ୍ଟିସ ବା ସେନାବାହିନୀର ଜେନେରାଲମାନେ ଯଦି ନିର୍ବାଚନ ନ ଲଢ଼ି ସିଧାସଳଖ ମନ୍ତ୍ରୀମଣ୍ଡଳରେ ଯୋଗ ଦିଅନ୍ତି ଏଥିରେ ମଧ ଆଶ୍ଚର୍ଯ୍ୟ ହେବାର ନାହିଁ । ରାଜନୀତିରେ ଏବେ ନୂତନ ମୂଲ୍ୟବୋଧଟିଏ ସୃଷ୍ଟି ହୋଇଛି । ସେଥିରେ ନୀତି ନିୟମ ଆଇନ କାନୁନ୍ ସବୁ ନିଶ୍ଚିହ୍ନ ହୋଇ ଯାଉଛି । ଗୋଟିଏ କଥା ବୁଝି ହେଉନାହିଁ । ମୁଖ୍ୟମନ୍ତ୍ରୀ ଓ ବାଚସ୍ପତି ଉଭୟେ ନିର୍ବାଚିତ ପ୍ରତିନିଧି । ଏମାନେ ବିଧାନସଭା ପାଖରେ ଉତ୍ତରଦାୟୀ । ବିଧାନସଭା ନଥିଲେ ମଧ ଏମାନେ ଥାଆନ୍ତି । ତେବେ ନିର୍ବାଚନବେଳେ ମୁଖ୍ୟମନ୍ତ୍ରୀ ଯେଉଁ ସୁବିଧା ପାଆନ୍ତି ଜଣେ ବାଚସ୍ପତି ସେତକ ପାଆନ୍ତି ନାହିଁ କାହିଁକି ? ଏବେ ସବୁଠି ଆଲୋଚିତ ହେଉଛି ଏ ନିର୍ବାଚନରେ କେତେ ପଇସା ଖର୍ଚ୍ଚ ହେଇଛି ? କେତେ ହଜାର କୋଟି ନା ତା'ଠାରୁ ଆହୁରି ବେଶି ? ସରକାରଙ୍କର କେତେ ? ଦଳମାନଙ୍କର କେତେ ? ବନ୍ଧୁବାନ୍ଧବଙ୍କର କେତେ ? କୁହାଯାଉଛି ଏ ନିର୍ବାଚନରେ ଯେତେ ଟଙ୍କା ଖର୍ଚ୍ଚ ହୋଇଛି ବା ମନ୍ତ୍ରୀମଣ୍ଡଳ ଗଠନ ବେଳେ ଯେତେ ଦରକାର ହେବ ସେ ସବୁ ମିଶି କେତେ ହଜାର କୋଟି ହେବ । ଏହି ଅର୍ଥରେ କେତୋଟି ବାର୍ଷିକ ଯୋଜନା ହୋଇ ପାରନ୍ତା ? କେତେ ବିଦେଶୀ ଋଣ ଶୁଝା ଯାଇ ପାରନ୍ତା ? ତା'ର ହିସାବ ହୁଏତ ଏ ଯାଏ କେହି କରିନାହିଁ । କରିବା ସମ୍ଭବ ମଧ ନୁହେଁ । କାରଣ ଦେଶର ଓ ବିଦେଶର ପ୍ରଚୁର କଳାଧନ ଏଥିରେ ବିନିଯୋଗ ହୋଇଥାଏ । ତା'ର ହିସାବ ପାଇବା ମୋଟେ ସମ୍ଭବ ନୁହେଁ । ସବୁ କଳାଧନ ହିଁ ଆମର ନିର୍ବାଚନର ମୂଳଧନ ।

ଏଥର ନିର୍ବାଚନରେ ଯେତେ ଚିତ୍ରତାରକା ଯୋଗ ଦେଇଥିଲେ, ଗତ ୫୦ ବର୍ଷ ଭିତରେ ସେତେ ସାମିଲ ହୋଇ ନ ଥିଲେ । ଚିତ୍ରତାରକାମାନଙ୍କ ଠାରେ ପ୍ରଚୁର କଳାଧନ । ଏଥର କ୍ରିକେଟ ତାରକାମାନେ ମଧ ସେମାନଙ୍କ ସାଥିରେ ଯୋଗ ଦେଇଛନ୍ତି । ଏମାନେ ସବୁବେଳେ ଆୟକର ଫାଙ୍କି ମାରନ୍ତି । କୋଟି କୋଟି ଟଙ୍କାର ଆୟକର ବାକି ପଡ଼ିଛି ।

ଏମାନେ ଯଦି ନିର୍ବାଚନବେଳେ ଟିକିଏ ସାହାଯ୍ୟ କରି ଦିଅନ୍ତି, ଆସନ୍ତା ବର୍ଷମାନଙ୍କରେ ସେମାନେ ଶାନ୍ତିରେ ଶୋଇ ପାରିବେ । ତେବେ ଏମାନଙ୍କ ଦେଶସେବାର ଦକ୍ଷତା ଅଛପା ନାହିଁ । ପାର୍ଲାମେଣ୍ଟର ଉପସ୍ଥାନ ବହିରୁ ସେ କଥା ଜଣାପଡ଼ିବ । ମନୋନୀତ ସଦସ୍ୟମାନଙ୍କ କଥା ନ କହିବା ଭଲ । ସେମାନେ ଏବେ ଦଳୀୟ କର୍ମୀ ହେବା ଏକାନ୍ତ ଜରୁରୀ ।

ଏବେ ସାଧାରଣରେ କଥା ଉଠୁଚି ଯେ ଏଥର ନିର୍ବାଚନ ପରିଚାଳନା ଯେଉଁ ଅବ୍ୟବସ୍ଥା ଭିତରେ ହେଲା ତାହା ଆଗରୁ କେବେ ହୋଇ ନ ଥିଲା । ଲକ୍ଷ ଲକ୍ଷ ଲୋକ ଭୋଟର ପରିଚୟ ପତ୍ର ଥାଇ ମଧ୍ୟ ଭୋଟ ଦେଇପାରି ନ ଥିଲେ । ଆମର ମନେ ହେଉଚି ଏଥର ପ୍ରଥମ କରି ଭୋଟର ପରିଚୟ ପତ୍ରକୁ ଏକ ପ୍ରକାର ଅକାମୀ କରି ଦିଆଗଲା । ବିନା ଭୋଟର ପରିଚୟ ପତ୍ରରେ ଭୋଟଦାନ ପ୍ରଥାକୁ ଏତେ ସରଳ ଓ ସହଜ କରି ଦିଆଗଲା ଯେ ସେଥିରେ ତା'ର ମୂଲ୍ୟ ତ ରହିଲା ନାହିଁ, ଅଧିକନ୍ତୁ ହଜାର ହଜାର ଲୋକ ଅନ୍ୟ ନାମରେ ଭୋଟ ଦେବାର ସୁଯୋଗ ପାଇଲେ । ଶେଷାନ୍ ଏଇଥିପାଇଁ ଭୋଟର ପରିଚୟ ପତ୍ର ଉପରେ ବେଶି ଜୋର ଦେଉଥିଲେ । ସେ କଥା ଏବେ ନ ଥିବାରୁ ଭୋଟର ଶତକଡ଼ା ହାର ବଢ଼ିଚି ବୋଲି କୁହାଯାଉଚି । ଏ ଅବ୍ୟବସ୍ଥା ରାଜନୀତି ଓ ସରକାରଙ୍କ ସଲାସୁତରାରେ ହେବା ସମ୍ଭବ ।

ଅଭିଯୋଗ ମଧ୍ୟ ହେଲାଣି ଯେ ଏବେ ଭୋଟର ଲିଷ୍ଟ କେବଳ ଦଳୀୟ କର୍ମୀଙ୍କ ସାହାଯ୍ୟରେ ତିଆରି ହେଉଚି । ତା ଯଦି ହେଉ ନ ଥାଆନ୍ତା ତେବେ ବାରମ୍ବାର ସଂଶୋଧନ ତାଲିକା ପ୍ରସ୍ତୁତ ହେଉଥିଲେ ମଧ୍ୟ କେମିତି ଏତେ ସଂଖ୍ୟାରେ ଲୋକେ ବାଦ ପଡୁ ଥାଆନ୍ତେ ? ଗୋଟାଏ କଥା ବୁଝି ହୁଏନାହିଁ ଯେ ସରକାର କାହିଁକି ଭୋଟର ପରିଚୟ ପତ୍ର ଉପରେ ଜୋର ଦେଉ ନାହାନ୍ତି ? ଗୋଳିଆ ପାଣି କେବଳ କଙ୍କଡ଼ାକୁ ସୁହାଏ । ଏ ଅବ୍ୟବସ୍ଥା ଯଦି ଲାଗି ରହେ ଆଗାମୀ ନିର୍ବାଚନ ସବୁ ପ୍ରହସନରେ ପରିଣତ ହେବାରେ ସମ୍ଭାବନା ଦେଖା ଗଲାଣି ।

❑

('ସମାଜ'- ୯.୫.୨୦୦୪)

# ଆଉ କ'ଣ ଶୁଣିବାକୁ ବାକି ରହିଲା ?

ରାଜ୍ୟସଭାର ପିଟିସନ କମିଟିର ଅଧ୍ୟକ୍ଷ ଜନେଶ୍ୱର ମିଶ୍ର ଏବେ ଓଡ଼ିଶାକୁ ଆସି ଗୋଟାଏ ସାମ୍ବାଦିକ ସମ୍ମିଳନୀରେ ଢୋଲ ପିଟି କହିଦେଇ ଗଲେ ଯେ 'ଓଡ଼ିଶାର ଲୋକମାନେ ପ୍ରଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ପାରନ୍ତି ନାହିଁ । ସେମାନେ ପ୍ରତିବାଦର ଭାଷା ଜାଣନ୍ତି ନାହିଁ । ସେମାନେ ମଧ୍ୟ ଅଧିକାର ସାବ୍ୟସ୍ତ କରି ପାରନ୍ତି ନାହିଁ । ତେଣୁ ତାଙ୍କର ଏ ଦୂରବସ୍ଥା । ସେଥିରୁ ତାଙ୍କୁ କିଏ ବା ମୁକ୍ତି ଦେଇ ପାରିବ ? ସେଥିପାଇଁ ଓଡ଼ିଶାରେ ଯଦି ଅନାହାର ମୃତ୍ୟୁ ସର୍ବାଧିକ ହୁଏ ତାକୁ କିଏ ବା କଅଣ କରି ପାରିବ ?' ଜନେଶ୍ୱର ମିଶ୍ର ଜଣେ ପ୍ରବୀଣ ରାଜନୀତିଜ୍ଞ । ଦକ୍ଷ ପ୍ରଶାସକ ମଧ୍ୟ । ଜଣେ ସୁପରିଚିତ ନେତା । ତେଣୁ ସେ ଭାଷା ସଂଯମତାରେ ବିଶ୍ୱାସ କରୁଥିବେ । 'ମାଇଚିଆ' ଶବ୍ଦ ତାଙ୍କ ପାଟିକୁ ଅନ୍ତତଃ ସମ୍ବାଦିକ ସମ୍ମିଳନୀରେ ନ ଆସିବା ସ୍ୱାଭାବିକ । ମନ ଭିତରେ ସେ ଶବ୍ଦ ତାଙ୍କୁ ବାରମ୍ବାର ଧକ୍କା ଦେଇ ହୁଏତ କହିଥିବ ଯେ, ଉପଯୁକ୍ତ ଶବ୍ଦଟିଏ ଯାହା ସମସ୍ତଙ୍କ ବୁଝିପାରିଲା ଭଳି, ତାକୁ ବ୍ୟବହାର ନ କରି ତୁ ଏ ସାଧୁ ଶବ୍ଦ କାହିଁକି ବ୍ୟବହାର କରୁଛୁ ?' କିନ୍ତୁ ଜନେଶ୍ୱର ମିଶ୍ର ଯେତିକି ରାଜନୈତିକ କ୍ଷେତ୍ରରେ ସଂଗ୍ରାମୀ ସେତିକି ସାଧାରଣ ଲୋକଙ୍କ ଠାରେ ଭଦ୍ର ଓ ନମ୍ର । ସେ ଲୋକଙ୍କୁ ନୁହେଁ, ନେତୃତ୍ୱକୁ ବା ବ୍ୟକ୍ତି ବିଶେଷଙ୍କୁ ବା ପ୍ରଶାସନର ଉଚ୍ଚ ମହଲକୁ ବାଧିଲା ଭଳିଆ କିମ୍ବା ଅପମାନ ସୂଚକ ଶବ୍ଦ ବ୍ୟବହାର କରିବାକୁ ଉଚିତ ମନେ କରି ନ ଥିବେ ।

ଜନେଶ୍ୱର ମିଶ୍ରଙ୍କ ମନ୍ତବ୍ୟର ପ୍ରତିବାଦ କେହି କରି ନାହାନ୍ତି । ଯୋଉମାନେ ଓଡ଼ିଶା ଗୋଟାଏ ବୀର ଜାତି ବୋଲି କହି ବାହାସ୍ଫୋଟ ମାରନ୍ତି, ସେମାନେ ମଧ୍ୟ ନିରବ । ଭାବୁଥିବେ - କଅଣ ଆଉ ପ୍ରତିବାଦ କରିବା ? ଅନାହାରରେ ଲୋକ ତ ମରୁଛନ୍ତି ! ତାଙ୍କ ଭାଗ୍ୟରେ ଥିଲା ସେମାନେ ମଲେ । ଭାଗ୍ୟରେ ଅନାହାରରେ ମରିବାର ଥିଲେ ତାଙ୍କୁ କିଏ କଅଣ କରି ପାରିବ ? ତା ପାଖରେ ରନ୍ଧାଭାତ ପହଞ୍ଚାଇ ଦେଲେ ମଧ୍ୟ ସେ ମରିବ । ତା ଭାଗ୍ୟରେ ମୃତ୍ୟୁଟା ସେହିପରି ହେବ ବୋଲି ଲେଖା ଥିଲା ।

ପ୍ରଶାସନ ତରଫରୁ ମଧ୍ୟ ଏ ଯାଏ ପ୍ରତିବାଦ ପ୍ରକାଶ ପାଇନାହିଁ । ସେମାନେ ଭାବୁଥିବେ, ଅନାହାର ମୃତ୍ୟୁ ପାଇଁ ଜିଲ୍ଲାପାଳମାନେ ଦାୟୀ ହେବେ ବୋଲି ସୁପ୍ରିମକୋର୍ଟ

କହିଛି । ସରକାରଙ୍କ ତରଫରୁ ମଧ୍ୟ ସର୍କୁଲାର ଇସୁ କରି ସତର୍କ କରି ଦିଆ ଯାଇଛି । ତା ସତ୍ତ୍ୱେ ଯଦି ମରୁଛନ୍ତି - ମରନ୍ତୁ । ଆମେ କଅଣ କରିବୁଁ, କମିଟି ରିପୋର୍ଟ ପ୍ରକାଶ ପାଉ । ତାପରେ ଜିଲ୍ଲାପାଳମାନଙ୍କୁ କୈଫିୟତ ମାଗିଲେ ହେବ । ମୁଖ୍ୟମନ୍ତ୍ରୀ ଭାବୁଥିବେ, 'ସିଏତ ବିରୋଧିଦଳର ଲୋକ । ତାଙ୍କ ମନକୁ ଯାହା ଆସିବ କହିବେ । ତାର କଅଣ ମୂଲ୍ୟ ଅଛି ? ଆମେ ରାଜନୈତିକ ଭାବରେ ତାର ପ୍ରତିବାଦ କରିବା ଉଚିତ ହେବ । ବିଜେପି ବାଲାଏ ଭାବୁଥିବେ, 'ସେ କଅଣ ଆମକୁ କହିଲେ କି ? ସିଏ କହନ୍ତୁ । ସେଥିରେ ଆମର କଅଣ ଯାଏ ? ତେବେ ଏଇ ଅନାହାର କଥାଟା ଅତିରଞ୍ଜିତ । ଏତେ ଲୋକ କେବେ ମଲେ ? କାହିଁ ଆମେ ଜାଣିନୁଁ ତ ? ରିପୋର୍ଟ ସବୁବେଳେ ଆସୁଛି । ମୃତ୍ୟୁ-ଅନାହାର ଜନିତ ନୁହେଁ; ରୋଗ ଜନିତ । ଡାକ୍ତରୀ ରିପୋର୍ଟରେ ତା ପେଟରେ ହଜମ ହୋଇ ନ ଥିବା ଭାତ ଆବିଷ୍କୃତ ହୋଇଛି ବୋଲି ଲେଖା ଯାଇଛି ।' ଆମେ କିନ୍ତୁ କହୁଚୁଁ ଓଡ଼ିଶାରେ ଅନାହାର ମୃତ୍ୟୁ ଓ ଶିଶୁ ବିକ୍ରି ଏକ ନିଷ୍ଠୁର ବାସ୍ତବତା । ପ୍ରଶାସନିକ ରିପୋର୍ଟ ଯାହା ହେଉନା କାହିଁକି ଏହାହିଁ ସତ୍ୟ । ଏହା ଆକାଶର ଚନ୍ଦ୍ର, ସୂର୍ଯ୍ୟ ପରି ଉଜ୍ଜ୍ୱଳ ଓ ବାସ୍ତବ ସତ୍ୟ । ଏହାକୁ ଢାଙ୍କି ରଖା ଯାଇ ପାରିବ ନାହିଁ । ଆମେ ଏ କଥା ମଧ୍ୟ ଜାଣୁଁ - ପିଟିସନ କମିଟି ଯେତିକି ଅନାହାର ମୃତ୍ୟୁକଥା ଜାଣିଛି; ସଂଖ୍ୟା ତା ଅପେକ୍ଷା ଅନେକ ବେଶୀ । ସବୁ କଅଣ ଲୋକ ଲୋଚନକୁ ଆସୁଛି ନା ସେମାନେ ସମ୍ବାଦପତ୍ର ଅଫିସ ଦେଖିଛନ୍ତି । ସେମାନେ ତ ସମ୍ବାଦପତ୍ର କଅଣ ସେ କଥା ମଧ୍ୟ ଜାଣି ନାହାନ୍ତି । ଓଡ଼ିଶାର ଚାରିଭାଗରୁ ତିନିଭାଗ ଲୋକଙ୍କ ଅବସ୍ଥା ଏମିତି । ତେଣୁ ତାଙ୍କ ଅବସ୍ଥା କଥା କିଏ ବୁଝୁଛି ?

ଆମ ଓଡ଼ିଶାର ବିରୋଧି ଦଳମାନେ କିନ୍ତୁ ଖୁବ୍ ପାରିବାର । ସେମାନେ ସଂଗ୍ରାମ କରି ଜାଣନ୍ତି । ସେମାନେ ମଧ୍ୟ ପ୍ରତିବାଦ କରି ଜାଣନ୍ତି । ଆମେ ଦେଖିଲୁଁ; ହୃଷିକେଶ ପଣ୍ଡା ମାମଲାରେ ଜଣେ ମନ୍ତ୍ରୀଙ୍କୁ ତଥାକଥିତ ଅସମ୍ମାନ କରାଯିବା କଥାରେ ସମସ୍ତେ ମିଶି କେମିତି ଯୁଦ୍ଧର ଆହ୍ୱାନ ଦେଲେ । ସେମାନଙ୍କର ଏକତାକୁ ସେ କ୍ଷେତ୍ରରେ ଧନ୍ୟ କହିବା । ଅଭୂତପୂର୍ବ ଏକତା । ନିଜପାଇଁ ଏତେବଡ ଏକତା ଓ ଯୁଦ୍ଧ ଆଉ କୋଉଠି ଦେଖା ଯାଇନାହିଁ । ହୁଏତ ଆଉ ଟିକିଏ ବେଶୀ ହୋଇଥିଲେ ମନ୍ତ୍ରୀମଣ୍ଡଳ ଭାଙ୍ଗି ଯାଇ ଥାଆନ୍ତା । ହୁଏତ ସେମିତି ଏକ ଇଚ୍ଛା କେତେକଙ୍କର ଥିଲା । ଭାଙ୍ଗିଥିଲେ କିଛି ଫାଇଦା ଅବଶ୍ୟ ମିଳି ଥାଆନ୍ତା । ତେବେ ସେ ଯା' ହେଉ, ସେଥିରୁ କିନ୍ତୁ ଜଣାପଡ଼ିଲା ଯେ ଥରେ ନିର୍ବାଚିତ ପ୍ରତିନିଧି ହୋଇଗଲେ ସେମାନଙ୍କ ସ୍ୱାଭିମାନ କେତେ ବଢ଼ିଯାଏ ।

କିନ୍ତୁ ଓଡ଼ିଶାର ସ୍ୱାଭିମାନ ? ଗୋଟାଏ ବୀର ଜାତିର ସ୍ୱାଭିମାନ ? ଗୋଟାଏ ରାଜ୍ୟର ସ୍ୱାଭିମାନ ? ତାକୁ କିଏ ଦେଖିବ ? କିଏ ତାକୁ ସୁରକ୍ଷା ଯୋଗାଇ ଦେବ ?

ଗୋଟାଏ ଜାତି, ଯାହାକୁ ନେଇ ଆମେ ଗର୍ବ କରୁଛେ, ଯାହାକୁ ନେଇ ଆମେ ସଭା ସମିତିରେ ଅନର୍ଗଳ ଭାଷଣ ଦେଉଛେ, ଗୋଟାଏ ମହାନ ଓ ବୀର ଜାତି କହି ଗର୍ବରେ ଫାଟି ପଡୁଛେ, ବିଦେଶକୁ ଯାଇ ବାଣିଜ୍ୟ କରିଛୁଁ ଓ ଆମେ ବିଶ୍ୱବନ୍ଦିତ କହି ଅସଂଖ୍ୟ କରତାଳି ଗହଳରେ ଭାଷଣ ଶେଷ କରୁଛେ; ସେ ଅବସ୍ଥାରେ ଜନେଶ୍ୱର ମିଶ୍ର ଆମକୁ ଯାହା କହିଗଲେ ତାକୁ କେହି ବିରୋଧ କରି ପାରିଲେ ନାହିଁ । କେହି ଜଣେ ଶବ୍ଦଟିଏ ମଧ୍ୟ ଉଚ୍ଚାରଣ କରି ପାରିଲେ ନାହିଁ । ଏମିତି ଜଣେ କେହି ଦିଲ୍ଲୀରୁ ଆସି ଯଦି ହାଇଦ୍ରାବାଦରେ ତେଲେଗୁ ଭାଷାଭାଷୀଙ୍କ ସମ୍ପର୍କରେ ଏ ରକମର ମନ୍ତବ୍ୟ ଦିଅନ୍ତେ ତେବେ ଅବସ୍ଥା ଯେ କ'ଣ ହୁଅନ୍ତା ତାହା ବୁଝାଇ କହିବା ଆବଶ୍ୟକ ନାହିଁ । କିନ୍ତୁ ଆମେ ସମସ୍ତେ ନୀରବ ହୋଇଗଲୁଁ । ନୀରବ ରହିବା ଛଡା ଆମର ଆଉ ବାଟ ନଥିଲା । କାରଣ ସତ୍ୟ ବିରୁଦ୍ଧରେ ପାଟି ଖୋଲିବାର କାହାର ସାହସ ଅଛି ? କାହାର ପୁରୁଷତ୍ୱ ଅଛି ଯେ ସେ ସମସ୍ତଙ୍କ ସାମନାରେ ଆସି କହିବ ? ଆମେ ଅତୀତରେ ଅନେକ ଦେଖିଛୁଁ ଏବଂ ଏଇ ଏବେ ମଧ୍ୟ ଦେଖିଲୁଁ ବିଶୋଧନାଗାର କ୍ଷେତ୍ରରେ ଜନେଶ୍ୱର ସିନା ଖାଲି ମାଇଚିଆ କହିଲେ, ବାଜପେୟୀ ତ ସମସ୍ତଙ୍କ ସାମନାରେ ଦେଖେଇ ଦେଇଗଲେ ମାଇଚିଆମାନଙ୍କୁ । କାହାରି ପାଟି ଫିଟିଲା ? କେହି ଜଣେ ପଚାରିଲେ ''କ୍ୟୁଁ ଜରୁର ହୋଗା ? ଅଭିତକ ହୁଆ କ୍ୟୁଁ ନେହିଁ ?'' 'ଜରୁର ହୋଗା' ରେ ସମସ୍ତେ ତରଳି ଗଲେ । ନିଜକୁ ତାଙ୍କ ପାଦତଳେ ସମର୍ପି ଦେଲେ । କହିଥିବେ - 'ସେଇ ସେତକ କହି ଆମକୁ ବଞ୍ଚେଇଦେଲ ।' ସେଦିନ ସେ ଏଇ ମାତ୍ର ଦୁଇଟି ଶବ୍ଦ କହି ଗୋଟାଏ ମହାନ ଜାତିକୁ ମନ୍ତ୍ର ବଳରେ ମାଇଚିଆ କରି ଛାଡ଼ି ଦେଲେ । ଆଉ ଅଧିକ କଅଣ କରିଥାଆନ୍ତେ ?

ଜନେଶ୍ୱର ମିଶ୍ର ଏକଥା ମଧ୍ୟ କହିଲେ, 'ବିହାରରେ ଅଧିକାର ସାବ୍ୟସ୍ତ ପାଇଁ ଜଣେ ଅନ୍ୟକୁ ହତ୍ୟା କଲା । ଅଥଚ ଏଠି ଅଧିକାର ସାବ୍ୟସ୍ତ କରି ନ ପାରି ମଣିଷ ଭୋକିଲା ରହୁଚି ।'' ବିହାର ସହିତ ଆମକୁ କୋଉ ଭାବରେ ତୁଳନା କରାଯାଉଛି ? ଲାଲୁ ମୁଖ୍ୟମନ୍ତ୍ରୀ ନୁହଁନ୍ତି, କିନ୍ତୁ ତାଙ୍କ ହୁଙ୍କାରରେ ସମଗ୍ର ଭାରତବର୍ଷ କମ୍ପୁଛି । ପାକିସ୍ତାନରେ ଅସମ୍ଭବ ଲୋକପ୍ରିୟତା ଅର୍ଜିଲେ । ସେ ବି ଦେଖେଇ ଦେଲେ ଶାନ୍ତି ଶୃଙ୍ଖଳା କେମିତି ରକ୍ଷା କରିବାକୁ ହୁଏ । ଖାଲି ତୋଗାଡ଼ିଆ ନୁହେଁ, ତାଙ୍କ ଗୁରୁ ଆଧ୍ୱାନୀଙ୍କୁ ମଧ୍ୟ ଆରେଷ୍ଟ କରି ରାଜ୍ୟରେ ସାମ୍ପ୍ରଦାୟିକ ସଦ୍‌ଭାବ ରକ୍ଷା କରିଦେଲେ । ତୋଗାଡ଼ିଆଙ୍କୁ ଓହ୍ଲେଇବାକୁ ମଧ୍ୟ ଦେଲେନି । ସେ ଦକ୍ଷତା ଓ ସାହସ ଆମର କାହିଁ ? ଆମେ ତାର ଢ଼େର ପଛରେ । କିଏ ଆମକୁ ପଚାରିବ ? କିଏ ଆମକୁ ଖାତିର କରିବ ?

❑

('ଅନୁପମ ଭାରତ'- ୯.୯.୨୦୦୩)

# ବାସ୍ତୁ ଓ ବିଜ୍ଞାନ

ଏବେ ଓଡ଼ିଶାରେ କେବଳ ନୁହେଁ ଭାରତର କେତେକାଂଶରେ ବାସ୍ତୁଶାସ୍ତ୍ରର ଚାହିଦା ବେଶ ବଢ଼ିଛି । ବହି ଦୋକାନମାନଙ୍କରେ ବାସ୍ତୁଶାସ୍ତ୍ର ଉପରେ ପ୍ରଚୁର ବହି ଏବେ ମିଳୁଛି । ବୋଧେ ଚାହିଦା ଅନୁସାରେ ଯୋଗାଣ ହୋଇ ପାରୁ ନାହିଁ । ଚାହିଦା ଦେଖି ପ୍ରକାଶକମାନେ ମଧ ତତ୍ପର ହୋଇ ଉଠିଛନ୍ତି । ଲେଖକଙ୍କ ନାଁ ଦେଖିବା ଦରକାର ନାହିଁ । ଦାମ ମଧ କମ ନୁହେଁ । ଛୋଟ ଶହେ ପୃଷ୍ଠା ବହିର ଦାମ ଶହେ ଟଙ୍କା । ଅବଶ୍ୟ ଏ ସବୁ ବହି ଇଂରାଜୀରେ । ଓଡ଼ିଆରେ କାଁ ଭାଁ କେତେବେଳେ ମିଳୁଛି । ତେବେ ବହି ଅପେକ୍ଷା ବାସ୍ତୁ ଶାସ୍ତ୍ରର ପରାମର୍ଶଦାତା ଅନେକ ବେଶୀ । କିନ୍ତୁ କାହିଁକି କେଜାଣି ଏହି ସବୁ ବହି ଓ ପରାମର୍ଶ ଗାଁ ଅପେକ୍ଷା ସହରରେ ବେଶୀ ଆବଶ୍ୟକ ହେଉଛି । ଗାଁରେ ଯୋଉ ଚିରାଚରିତ ପ୍ରଥା ଯୁଗ ଯୁଗରୁ ଚଳି ଆସୁଛି ତାକୁ କେହି ଭାଙ୍ଗିବାକୁ ଚାହୁଁ ନାହାନ୍ତି । ସେ ସବୁ ପ୍ରଥା ପଛରେ ଯେତିକି ବିଶ୍ୱାସ ଅଛି ତା ଅପେକ୍ଷା ବେଶୀ ଯୁକ୍ତି ମଧ ଅଛି । ମଣିଷ ପ୍ରଥମେ ଯେତେବେଳେ ଗୁହାରେ ବାସ କରୁଥିଲା ସେତେବେଳେ ବିଶ୍ୱାସ ଓ ଯୁକ୍ତି ଅପେକ୍ଷା 'ଆବଶ୍ୟକତା' ଉପରେ ବେଶୀ ଜୋର ଦେଉଥିଲା । ପରବର୍ତ୍ତୀ କାଳରେ ସେ ଯେତେବେଳେ ଘର ତିଆରି କରିବାକୁ ଶିଖିଲା ସେତେବେଳେ ସେ ତିନୋଟି କଥାକୁ ଆଖି ଆଗରେ ରଖିଲା । ଜଳ, ଖୋଲା ପବନ ଓ ପରିବେଶ । ହାତ ପାଆନ୍ତାରେ ଜଳ, ମୁକ୍ତ ପବନ ଓ ଚାଷ ଏବଂ ପଶୁପାଳନ ପାଇଁ ଆନୁସଂଗିକ ପରିବେଶ । ତାକୁ ଆମେ ନଦୀକୂଳ ସଭ୍ୟତା କହୁଁ । ସାରା ପୃଥିବୀରେ ଏଇ ନିୟମ ।

**ବାସ୍ତୁଶାସ୍ତ୍ରର ସୃଷ୍ଟି** : ବାସ୍ତୁ ଶାସ୍ତ୍ର ଆମ ଦେଶରେ ନୂଆ ନୁହେଁ । ତାର ମୂଳ ଉତ୍ପତ୍ତି ଅଥର୍ବ ବେଦରେ ଅଛି ବୋଲି ବିଶ୍ୱାସ କରାଯାଏ । କାରଣ ଅଥର୍ବ ବେଦରେ ହିଁ ମନ୍ତ୍ର ତନ୍ତ୍ର ମାଧମରେ ମଣିଷର କୃଷି, ବ୍ୟବସାୟରୁ ଲାଭ, ଦାମ୍ପତ୍ୟ ସୁଖ, ଯଶ ଓ ଖ୍ୟାତି, ଶତ୍ରୁକ୍ଷୟ ଏପରିକି ମଣିଷର ସମସ୍ତ ଅଭିଳାଷ ପୂରଣ ହେବାର ରାସ୍ତା କଥା କୁହା ଯାଇଛି । ପରବର୍ତ୍ତୀ କାଳରେ ରଚିତ 'ଅଗ୍ନିପୁରାଣ'ରେ 'ବାସ୍ତୁପୁରୁଷ' କଥା କୁହାଯାଇଛି ।

କିନ୍ତୁ ପରେ ମଣିଷର ଯେତେବେଳେ ଜ୍ଞାନର ପରିସ୍ଫୁରଣ ଘଟିଲା, ସେ ଅନେକଗୁଡ଼ିଏ 'କାହିଁକି', 'କଅଣ' ଓ 'କିପରି'ର ଉତ୍ତର ଖୋଜି ପାଇଲା । ପ୍ରତ୍ୟେକ ତଥ୍ୟ ଓ ସତ୍ୟକୁ ପରୀକ୍ଷାଗାରରେ ବାରମ୍ବାର ପରୀକ୍ଷା କଲା । ସେତେବେଳେ ସେ ବିଜ୍ଞାନର ନୂତନ ପୃଥିବୀରେ ନିଜକୁ ଦେଖିଲା । 'ବାସ୍ତୁଶାସ୍ତ୍ର' ସେତେବେଳେ ନୂତନ ରୂପ ନେଇ ତା ଆଗରେ ଛିଡା ହେଲା । ଗୃହ ନିର୍ମାଣର ନୂତନ କଳା ଓ କୌଶଳ ସେ ଆବିଷ୍କାର କଲା । ଗୃହ ନିର୍ମାଣର ନୂତନ ସାମଗ୍ରୀ ତାର ହସ୍ତଗତ ହେବାରୁ ଗୋଟାଏ ସ୍ଥାୟୀ ଓ ସୁନ୍ଦର ବାସୋପଯୋଗୀ ଘର ନିର୍ମାଣ ପାଇଁ ସେ ପ୍ରଥମେ ଜଳ, ଜଳବାୟୁ, ଆଲୋକ ଓ ପରିବେଶକୁ ପ୍ରାଥମିକତା ଦେବାକୁ ଆରମ୍ଭ କଲା । ସେଇଠୁ ଜନ୍ମ ହେଲା ଆଧୁନିକ ଯୁଗର ସ୍ଥାପତ୍ୟ ।

ଏସବୁ ସତ୍ତ୍ୱେ ପ୍ରଶ୍ନ ଉଠିପାରେ ବିଜ୍ଞାନ ଯଦି ଏବେ ମଣିଷର ଜୀବନଯାପନ ପ୍ରଣାଳୀରେ ଏକ ମୁଖ୍ୟ ଅଂଶ ଗ୍ରହଣ କରିଛି ତେବେ ସେ ପୁଣି ସେହି ଶହ ଶହ ବର୍ଷ ତଳର 'ବିଶ୍ୱାସ'କୁ କାହିଁକି କୋଳେଇ ନେଉଛି ? ବିଜ୍ଞାନର ପ୍ରତ୍ୟେକଟି ନିୟମକୁ ଅନୁସରଣ କରି ଘର ତୋଳିବାକୁ ଯାଉଥିଲାବେଳେ, ଯାହାକୁ ସେ ଅନ୍ଧବିଶ୍ୱାସ କହି ତଳକୁ ଦିନେ ଫୋପାଡି ଦେଇଥିଲା ତାକୁ କାହିଁକି ପୁଣି ସ୍ୱାଗତ କରୁଛି ? ତାର ଉତ୍ତରକୁ ତିନି ଭାଗରେ ବିଭକ୍ତ କରା ଯାଇପାରେ ।

(୧) ମୁଁ ଆଗରୁ କହିଛି ଭାରତୀୟମାନେ ସାଧାରଣତଃ ଧର୍ମଭୀରୁ । ହଜାର ହଜାର ବର୍ଷ ହେଲା ମଣିଷ ମନରେ ଯୋଉ ଭୟ ରହି ଆସିଛି ତାକୁ ଆଜିର ସର୍ବଶକ୍ତିମାନ ବିଜ୍ଞାନ ସମ୍ପୂର୍ଣ୍ଣ ଦୂର କରିପାରି ନାହିଁ । ଆଜିର ମଣିଷ ମନ ଭିତରେ ବିଜ୍ଞାନ ଓ ଅବିଜ୍ଞାନ ଭିତରେ ଅହରହ ସଂଗ୍ରାମ ଚାଲୁଥାଏ । ତେଣୁ ଜଣେ ଇଞ୍ଜିନିୟର ଘର ବା କାରଖାନା ତିଆରିର ଖୁଣ୍ଟ ଦେଉଥିଲା ବେଳେ ଭୂମିପୂଜା କରେ ଓ ନଡିଆ ଭାଙ୍ଗେ ।

(୨) ରାଜାନୁଗତ ଧର୍ମ । ମହାଜନମାନେ ଯୋଉ ରାସ୍ତାରେ ଯାଆନ୍ତି ଆମ ଭାରତୀୟ ମାନସିକତାରେ ଆମେ ତାକୁ ହିଁ ପ୍ରଥମେ ଅନୁସରଣ କରୁ । ଏବେ ବହୁ ବଡ଼ ବଡ଼ ଲୋକ, ନେତା, ରାଜନେତା, ମନ୍ତ୍ରୀ ଓ ପଦସ୍ଥ ଅଫିସରମାନେ କେବଳ ଯେ ଧର୍ମାନ୍ଧତା ଓ ଅନ୍ଧବିଶ୍ୱାସରେ ଦୃଢ଼ ବିଶ୍ୱାସ ରଖନ୍ତି ତା ନୁହେଁ ସେମାନେ ସେ ସବୁକୁ 'ଚରମ ସତ୍ୟ' ବୋଲି କହି ବୁଲନ୍ତି । ଅନେକ କ୍ଷେତ୍ରରେ ତାର ପୁନରୁଦ୍ଧାର ପାଇଁ ଉପଦେଶ ଓ ସହାୟତା ମଧ୍ୟ ଯୋଗାଇ ଦିଅନ୍ତି ।

ତୃତୀୟ କାରଣଟି ହେଲା ଆମେ ଏବେ ଗୋଟାଏ ନୂଆ ପ୍ରକାର ମାନସିକତାର ବଶବର୍ତ୍ତୀ । ଅତି ସହଜରେ, ବିନା କିମ୍ବା ସ୍ୱଳ୍ପ ପରିଶ୍ରମରେ ଖୁବ କମ ସମୟ ଭିତରେ ଆମେ ସବୁଯାକ ସୁଖ, ଶାନ୍ତି ପାଇବାକୁ ଚାହୁଁ । ବାହାରେ କାରଣ ଯାହା ହେଉନା କାହିଁକି, ଏପରିକି ବାହାରେ ଆମେ ଯେତେ କରିଥିବା ଅନ୍ୟାୟ ବା ପାପଜନିତ ମାନସିକ ସନ୍ତୁଳନ ଭିତରେ ଥାଉଁନା କାହିଁକି ଘର ଭିତରକୁ ପଶି ଆସିଲା ମାତ୍ରେ ବାହାରର ସବୁ ଭୂତ (ସ୍ପିରିଟ) ହଟିଯାଇ ଘରଟି ବୈକୁଣ୍ଠରେ ପରିଣତ ହୋଇଥାଉ ବୋଲି ଭାବୁଁ । ସେଠୁ ସବୁ ସୁଖ ଓ ଶାନ୍ତ ଆମ ଉପରେ ଅଜାଡ଼ି ହେଉ ବୋଲି ଆଶାକରୁ । ସବୁ ଦୁଃଶ୍ଚିନ୍ତା ଓ ଅଶାନ୍ତି ସେଇ ଗେଟ୍ ବାହାରେ ଅଟକି ଯାଉ । ଆମ ମନରେ ଏଇ ସବୁ ଦୁଶ୍ଚିନ୍ତା ବସା ବାନ୍ଧିଥିଲାବେଳେ ଆମ ଇଂଜିନିୟରିଂ ବିଜ୍ଞାନ ସହିତ ପୂରା କାଳର ମତବାଦକୁ ଏକାଠି ଧରି ରଖୁଁ । ଆମ ମନର ଏଇ ଦୁର୍ବଳତାର ସୁଯୋଗ ନିଅନ୍ତି କିଛି ସୁବିଧାବାଦୀ ଲୋକ । ସେମାନେ ଆମ ମନର ଏଇ ଦୁର୍ବଳତାଟିକୁ ଅଧିକ ଉତ୍ତେଜିତ କରାନ୍ତି ଏବଂ କହନ୍ତି, ''ବିଜ୍ଞାନରେ ବିଶ୍ୱାସ ରଖୁଛ ରଖ, ସେଥିରେ ମନା ନାହିଁ; କିନ୍ତୁ ଆମ ପୁରୁଣା ମତକୁ ମଧ୍ୟ ସାଥିରେ ରଖ ।

ଆମେ ସମସ୍ତେ ଜାଣୁଁ ଓଡ଼ିଶା ଓ ବଙ୍ଗଳାର ଉପକୂଳବର୍ତ୍ତୀ ଅଞ୍ଚଳର ଘରର ଦୁଆରମୁହଁ ସବୁ ଦକ୍ଷିଣକୁ । ତାର କାରଣ ଦକ୍ଷିଣ ଓ ଦକ୍ଷିଣ ପୂର୍ବରୁ ସୁନ୍ଦର ଶୀତଳ ପବନ ବର୍ଷଯାକ ବହୁଥାଏ । ଉତ୍ତରକୁ ପଛ କରିଥିବାରୁ ଶୀତଦିନେ ଉତ୍ତରାପବନ ଘରକୁ ପଶିପାରେ ନାହିଁ । କିନ୍ତୁ ବାସ୍ତୁଶାସ୍ତ୍ରୀମାନେ କହନ୍ତି ଘର ଆଗରେ ଖୁଣ୍ଟ, ଗଛ କିମ୍ବା ଜଳସ୍ରୋତ ରହିବା ଉଚିତ ନୁହେଁ । ଆମର ନଦୀକୂଳ ସଭ୍ୟତା । ସବୁ ଘର ନଦୀ ବା କେନାଲ କୂଳରେ । ନଦୀକୂଳ ଘରର ବୁନିୟାଦୀ ଅଲଗା । କବିମାନେ ସେଠି ପାଗଳ ହୋଇ ଯାଆନ୍ତି । ଗଙ୍ଗା, ଯମୁନା କିମ୍ବା କୃଷ୍ଣା, କାବେରୀ କୂଳର ଲୋକଙ୍କ ଗର୍ବ କାହିଁରେ କେତେ । ପୃଥିବୀର ବହୁ କାବ୍ୟ କବିତାର ଉତ୍ସ ନଦୀରୁ । ସେ ନଦୀକୁ କେମିତି ପଛ କରିହେବ ? ଆଉ ଜଣେ ବାସ୍ତୁଶାସ୍ତ୍ରୀ କହନ୍ତି ଘର ଆଗରେ ଖୁଣ୍ଟ ରହିଲେ ବଦଖର୍ଚ୍ଚ ବଢ଼ିବ ଏବଂ ସ୍ତ୍ରୀର ଚରିତ୍ର ଖରାପ ହେବ । ତେବେ ଆମ ଘର ଆଗରେ ଥିବା ବିଜୁଳି ବା ଟେଲିଫୋନ ଖୁଣ୍ଟକୁ କଅଣ କରିବା ? ସେଇଟା ରହିଲେ ସ୍ତ୍ରୀକୁ ସବୁବେଳେ ସନ୍ଦେହ ଆଖିରେ ଦେଖିବା କି ? ତା'ଛଡ଼ା ଏଇଟା ସାଧାରଣ ଜ୍ଞାନ ଯେ ଘରର ଚାରିପଟେ ଗଛ ଥିଲେ ଘରଟି ଥଣ୍ଡା ରହିବ । ସରକାର କହୁଛନ୍ତି ଗଛ ଲଗାଅ । ଏବେ ଆଉ ଜଣେ ବାସ୍ତୁଶାସ୍ତ୍ରୀ ଲେଖିଛନ୍ତି ଘର ଆଗରେ 'ଟି' ଜଙ୍କସନ ଥିଲେ ଗୃହସ୍ୱାମୀ ଦ୍ୱିତୀୟ ବିବାହ

କରିବେ । ଏ ନିୟମଟି ତାଙ୍କ ସ୍ତ୍ରୀ ଜାଣିଲେ ଅବସ୍ଥା କଅଣ ହେବ ଅନୁମାନ କରିହୁଏ । ଏବେ ଓଡ଼ିଶାର ଜଣେ ବାସ୍ତୁଶାସ୍ତ୍ରୀ ଲେଖିଛନ୍ତି "ଯେଉଁମାନଙ୍କ ଗୃହ ଓ ବ୍ୟବସାୟ ପ୍ରତିଷ୍ଠାନ ଉପରେ ଅନ୍ୟାୟ ଭାବରେ ଇନକମଟାକ୍ସ ଓ ଭିଜିଲାନସ୍ ଚଢାଉ ହୋଇଅଛି ବା ଇଲେକ୍‌ଟ୍ରିସିଟି ବ୍ୟବହାର ଖର୍ଚ୍ଚ ମାପିବା ପାଇଁ 'ଚାଇନା ମିଟର' ଲାଗିଥିବ ସେମାନେ ସମ୍ଭବତଃ 'ଶରଣପଞ୍ଚକ' ସମୟରେ ଗୃହ ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥାଇ ପାରନ୍ତି ।" ପୁଣି ସମ୍ଭବତଃ କାହିଁକି ? ଏବେ ତ ସମସ୍ତଙ୍କ ଘରେ ଚାଇନା ମିଟର ଲାଗୁଛି । ତା'ଛଡା ଇନକମ ଟାକ୍ସ ଓ ଭିଜିଲାନସ୍ ଚଢ଼ାଉ ଅନ୍ୟାୟରେ ହୁଏ ମାନେ କଅଣ ? ଏମାନେ ସମସ୍ତେ 'ଶରଣ ପଞ୍ଚକ' ସମୟରେ ଘର ତୋଳିଛନ୍ତି ?

ସେ ଆହୁରି ମଧ୍ୟ ଲେଖିଛନ୍ତି ଯେ "ନିଜର ଜନ୍ମ ରାଶିଠାରୁ ଶୁକ୍ର ମହାଗ୍ରହଙ୍କ ଗୋଚରରେ (ଆକାଶରେ ଘୂର୍ଣ୍ଣାୟମାନ ଅବସ୍ଥାରେ) ଦଶମ ସ୍ଥାନରେ ଅବସ୍ଥାନ ସମୟରେ ଗୃହନିର୍ମାଣ କାର୍ଯ୍ୟ ଆରମ୍ଭ କଲେ ଗୃହଟି ସୁନ୍ଦର ହୋଇଥାଏ ।" ଗୋଚର ଶବ୍ଦର ଅର୍ଥକୁ ଦେଖନ୍ତୁ । ତା' ଛଡ଼ା ଗୃହଟି ଯଦି ମୋ ବାପା ଜେଜେବାପାଙ୍କ ଦ୍ୱାରା ତିଆରି ହୋଇଥାଏ ଏବଂ ତାହା ଯଦି ସୁନ୍ଦର ହେଇ ନ ଥାଏ ତାକୁ ଛାଡ଼ିଦେବା କି ? ଆମ ବାସ୍ତୁଶାସ୍ତ୍ରୀଙ୍କର ଅବାସ୍ତବ ଯୁକ୍ତିର ସୀମା ନାହିଁ । ଦୁଇବର୍ଷ ତଳେ ଆମ ପାର୍ଲାମେଣ୍ଟ ଭବନ ଉପରେ ଯେତେବେଳେ ଆକ୍ରମଣ ହେଲା ସେତେବେଳେ ବାସ୍ତୁଶାସ୍ତ୍ରୀ ଜଣକ କହିଲେ ଭବନର ସମ୍ମୁଖ ଭାଗଟିକୁ ଭାଙ୍ଗି ବାସ୍ତୁଶାସ୍ତ୍ର ଅନୁସାରେ ତିଆରି ହେଉ । ସେ ଏଥିପାଇଁ ୧୨କୋଟି ଟଙ୍କାର ଗୋଟିଏ ଯୋଜନା ସରକାରଙ୍କୁ ଦେଇଛନ୍ତି । ପୁଲିସ ଏ କଥା ଶୁଣି ଭାରି ଖୁସି ହୋଇଥବ । ସେମାନଙ୍କ ପଚାଶ ଭାଗ ମୁଣ୍ଡବ୍ୟଥା କମିଯିବ । ଦେଶର ହଜାର ହଜାର କୋଟି ଟଙ୍କା ମଧ୍ୟ ବଞ୍ଚିଯିବ । ଇନ୍ଦିରାଗାନ୍ଧୀଙ୍କ ହତ୍ୟା ସମୟରେ ଏ ପ୍ରସ୍ତାବ କାହିଁକି ଆସିଲାନି କେଜାଣି ।

❑

('ସମାଜ'- ୧୮.୬.୨୦୦୩)

# ଦୁର୍ନୀତିର ଦ୍ୱିତୀୟ ପାଦ

ଦୁର୍ନୀତିରେ ପ୍ରଥମ ପାଦଟିକୁ ଆମେ ବହୁ ଦିନୁ ଚିହ୍ନି ଆସିଛୁଁ । ସେଇଟି ହେଲା ରାଜନୀତି । ସ୍ୱାଧୀନତା ହାସଲ କଲା ବେଳକୁ ଆମ ମନରେ ଯେଉଁ ସ୍ୱପ୍ନ ଥିଲା ସେ ସ୍ୱପ୍ନ ମାତ୍ର କେଇଟା ଦିନ ଭିତରେ ଭସ୍ମ ହୋଇଗଲା । ଯୋଉ ରାଜନୀତିକୁ ଆମେ ଅତି ପବିତ୍ର ମନେ କରିଥିଲୁଁ ସ୍ୱାଧୀନତା ପରେ ଦେଖିଲୁଁ ସେ ଠାକୁରକୁ ଖାଇ ଖଟୁଲିକୁ ମଧ ଗ୍ରାସ କରି ଗଲାଣି । କ୍ଷମତାର ଲୋଭ ସେ ରାଜନେତାମାନଙ୍କୁ ଏତେ ଘାରିଲା ଯେ ସେମାନେ ହିତାହିତ ଜ୍ଞାନ ମଧ ଭୁଲି ଗଲେ । ଜନତାର ସମସ୍ତ ଧନକୁ ସେମାନେ ଚକୁ କରି ଦେବାକୁ ବସିଲେ । ଫଳ ଏଇଆ ହେଲା ଯେ ଯୋଜନାର ସୁଫଳ ଗୁଡ଼ିକରୁ ଶତକଡ଼ା ୧୮ ଭାଗ ମଧ ଜନତାଙ୍କ ଠାକୁ ଗଲା ନାହିଁ । ଜନତା ଦରିଦ୍ରରୁ ଦରିଦ୍ରତର ହେଲା ଏବଂ ଯେଉଁମାନେ ଧନୀ ଥିଲେ ସେମାନେ ଅଧିକ ଧନୀ ହେବାକୁ ଲାଗିଲେ । ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀ ଅତିକ୍ରାନ୍ତ ହେଲା ପରେ ମଧ ଦେଶ ଯେଉଁଠି ଥିଲା ସେଇଠି ରହିଲା । ଆମରି ସହିତ ଚୀନ ସ୍ୱାଧୀନତା ହାସଲ କରି ଏବେ ପ୍ରଗତିର ଅନେକ ଉପରକୁ ଉଠି ଗଲାଣି । ଆମେ ନିଜକୁ ଏବେ ତା' ସହିତ ତୁଳନା ମଧ କରି ପାରିବୁଁ ନାହିଁ । ଅଥଚ ସେମାନଙ୍କ ଲୋକ ସଂଖ୍ୟା ଆମ ଅପେକ୍ଷା ଅନେକ ବେଶୀ ।

ସ୍ୱାଧୀନତା ପରେ ଆମ ଦେଶରେ ରାଜନେତାମାନଙ୍କର ଗୋଟିଏ ସ୍ୱତନ୍ତ୍ର ଶ୍ରେଣୀ ସୃଷ୍ଟି ହୋଇଛି । ଏହି ଶ୍ରେଣୀକୁ ଗୋଟିଏ ଉଚ୍ଚ ଜାତି ବୋଲି କହିହେବ । ସମାଜର ସବୁ ବର୍ଗକୁ ଏହି ଉଚ୍ଚଜାତି ତାର ଅଧସ୍ତନ ହିସାବରେ ରଖି ଦେଲାଣି । ତେଣୁ ଆମ ସମ୍ବିଧାନ ବର୍ଣ୍ଣିତ ତିନୋଟି ସ୍ତମ୍ଭ ଏବେ ଜଖମ ହୋଇ ବଡ଼ ଦୟନୀୟ ଅବସ୍ଥାକୁ ଆସି ଗଲାଣି । କ୍ଷମତା ଗୋଟିଏ ଜାଗାରେ କେନ୍ଦ୍ରୀଭୂତ ହେବା ଫଳରେ ସମ୍ବିଧାନର ସବୁ ସ୍ତମ୍ଭ ଆଉ ଠିକ୍ ଭାବେ କାମ କରି ପାରୁ ନାହିଁ । କ୍ଷମତାର କେନ୍ଦ୍ରୀକରଣରୁ ହିଁ ଦୁର୍ନୀତିର ସୃଷ୍ଟି । ତେଣୁ ସେଇ କ୍ଷମତାକୁ ଆସିବାକୁ ସମସ୍ତେ ତତ୍ପର । ଯେ କୌଣସି ପ୍ରକାରେ କ୍ଷମତାକୁ ଆସିବାକୁ ଚେଷ୍ଟା କଲେ ନୀତି ଓ ଆଦର୍ଶକୁ ଜଳାଞ୍ଜଳି ଦେବାକୁ ହୁଏ । ନୀତି ବା ଆଇନଗତ ପନ୍ଥାକୁ ଛାଡ଼ି ଅନ୍ୟାୟ ଓ ଅପରାଧକୁ ଆପଣେଇ ନେବାକୁ ହୁଏ । ତେଣୁ

ପୃଥିବୀରେ ଯୋଉ ଅପରାଧକୁ ଲୋକେ ବରାବର ଅପକର୍ମ କହି ଘୃଣା କରି ଆସିଛନ୍ତି ଭାରତୀୟ ସମାଜରେ ତାକୁ ଏବେ ଭୋଟ ରାଜନୀତିରେ 'ଏକାନ୍ତ ଆବଶ୍ୟକତା' କହି ପୂଜା କରା ଯାଉଛି । ଗୋଟାଏ ଓଲଟାସ୍ରୁଅ ସୃଷ୍ଟି ହେଉଛି ।

ଅବସ୍ଥା ଅସହ୍ୟ ହେବାରୁ ଏଇ କିଛି ଦିନ ତଳେ ଦେଶର ଉଚ୍ଚତମ ନ୍ୟାୟାଳୟ ନିର୍ବାଚନକୁ ସ୍ୱଚ୍ଛ ଓ ଆଦର୍ଶ ସ୍ଥାନୀୟ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । ରାଜନୀତି ବା ନିର୍ବାଚନକୁ ଯେପରି ଅପରାଧୀ ଓ ଦୁର୍ନୀତିଗ୍ରସ୍ତମାନେ ଆସି ନ ପାରିବେ ସେଥିପାଇଁ କିଛି ନୀତି ନିର୍ଦ୍ଦେଶ ଖଞ୍ଜିଛନ୍ତି । ଆସନ୍ତା ନିର୍ବାଚନରେ ସେ ସବୁର ପରୀକ୍ଷା ଅବଶ୍ୟ ହେବ; କିନ୍ତୁ ଅବସ୍ଥା ଯାହା ହୋଇଛି ସେଥିରେ ଏବର ରାଜନେତାମାନେ ସେ ନୀତି ନିୟମକୁ କାର୍ଯ୍ୟକାରୀ କରାଇ ଦେବେ ବୋଲି ବିଶ୍ୱାସ ହେଉନାହିଁ । ଦରକାର ହେଲେ ସେମାନେ ଯେ ନ୍ୟାୟାଳୟର ଗୋଡକୁ ପୂରାପୂରି ଭାଙ୍ଗି ନିଜେ ତିଆରି କରି କାଠର ଗୋଡ଼ଟିଏ ଲଗାଇ ନ ଦେବେ ସେ କଥା କିଏ କହିବ ? ସେମିତିକା ଅବସ୍ଥାଟିଏ ଏବେଠୁ ଦେଖାଯାଉଛି ।

ଦୁର୍ନୀତି ତାର ପ୍ରଥମ ପାଦକୁ ରାଜନୀତି ବା ଲେଜିସଲେଚର ଉପରେ ରଖିଦେଲା ପରେ ଦ୍ୱିତୀୟ ପାଦକୁ ସେ କାର୍ଯ୍ୟକାରିଣୀ ବା ଏକ୍‌ଜିକ୍ୟୁଟିଭ ଉପରେ ରଖି ଦେଲା । ଏଥର ତାର ଆଉ ଆଗକୁ ବଢ଼ିବାକୁ କୌଣସି ଅସୁବିଧା ହେଲା ନାହିଁ । ସମଗ୍ର ପୃଥିବୀ ତା' ପାଦ ତଳକୁ ଆସିଗଲା । ଏକଜିକ୍ୟୁଟିଭ ଏବଂ ଲେଜିସ୍‌ଲେଚର ଏମାନେ ମଧ୍ୟ ଦୁହେଁ ଦୁଇ ଭାଇ ପରି ହାତ ଧରାଧରି ହୋଇ ଆଗେଇ ଚାଲିଲେ । ଦୁର୍ନୀତି ଏ ଦୁଇଜଣଙ୍କ ସାହାଯ୍ୟ ପାଇଲା ପରେ ଆଉ କାହାକୁ ଅପେକ୍ଷା କଲା ନାହିଁ । ତାର ରାସ୍ତା ପରିଷ୍କାର ହୋଇଗଲା ।

ଏବେ ଓଡ଼ିଶାରେ ଏକଜିକ୍ୟୁଟିଭ ବା ବ୍ୟୁରୋକ୍ରାସି ଭିତରେ ଦୁର୍ନୀତି ଅତି ଦ୍ରୁତ ଗତିରେ ବଢୁ ଥିବାର ଦେଖା ଯାଉଛି । ଆଗରୁ ଯେ ହେଉ ନ ଥିଲା ସେ କଥା ନୁହେଁ । ବିଜୁବାବୁ ଯେତେବେଳେ ମୁଖ୍ୟମନ୍ତ୍ରୀ ଥିଲେ ସେତେବେଳେ ଏକା ଥରକେ ଅନେକ ପଦସ୍ଥ ଅଫିସରଙ୍କ ବିରୋଧରେ ଅଭିଯୋଗ ଅଣା ଯାଇଥିଲା । ସେତେବେଳେ କୁହାଗଲା 'ଆଇନର ହାତ' ଅନେକ ଲମ୍ବା । ତେଣୁ ସମସ୍ତେ ଧରା ପଡ଼ିଗଲେ କିନ୍ତୁ ପରେ ଜଣାପଡ଼ିଲା 'ବେଆଇନର ହାତ' ହିଁ ସବୁଠାରୁ ଲମ୍ବା । ସେ ସମସ୍ତଙ୍କୁ ମୁକୁଳାଇ ଦେଲା । ଦୁର୍ନୀତି ପ୍ରମାଣ କରିଦେଲା ଯେ ସେ କେବେ ପରାଜୟ ସ୍ୱୀକାର କରେ ନାହିଁ । ଆଇନ ପାଖରେ ମୁଣ୍ଡ ନୁଆଏଁ ନାହିଁ । ତେଣୁ ବ୍ୟୁରୋକ୍ରାସି ବା ଅମଲାତନ୍ତ୍ର ଭିତରେ ଆଜି

ଦୁର୍ନୀତି ତାର ଭୟଙ୍କର ରୂପ ନେଇ ଠିଆ ହେଲାଣି । ସରକାରଙ୍କର ଏପରି କୌଣସି ବିଭାଗ ନାହିଁ ଯେଉଁଠି ଦୁର୍ନୀତି ଖୋଲା ଖୋଲି ଭାବେ ଠିଆ ନ ହେଉଛି । ଏବେ ବଦଳି ସମୟ । ଦୁର୍ନୀତିର ମୌସୁମୀ ଏବେ ଓଡ଼ିଶାରେ । ଜଳ ବର୍ଷୁ ନାହିଁ । ଟଙ୍କା ବର୍ଷୁଛି । ରାଜଧାନୀର ରାସ୍ତାଘାଟ ଏବେ ଜଳାର୍ଣ୍ଣବ । ଶିକ୍ଷକ ଜାତିଟାକୁ ସବୁଠୁ ପଛୁଆ ଓ ନିରୀହ ବୋଲି କୁହା ଯାଉଥିଲା । ଏକଦା ସେମାନେ ସାଧୁତାର ଚରମ ସୀମାରେ ପହଞ୍ଚି ଥିଲେ ବୋଲି ସେମାନଙ୍କୁ ଜାତିର ମେରୁଦଣ୍ଡ ବୋଲି କୁହା ଯାଉଥିଲା । ସମାଜକୁ ସେମାନଙ୍କ ଦାନକୁ ତୁଳନା କରା ଯାଉଥିଲା । ଏବେ ଆଉ ସେ କଥା ନାହିଁ । ସେମାନେ ପୁଲିସ, ପଦସ୍ଥ ଅଫିସର, ଇଞ୍ଜିନିୟର ଓ ଅବକାରୀ ପଦାଧିକାରୀ ସହିତ ସମାନ ହୋଇ ଗଲେଣି । ସେମାନେ ମଧ୍ୟ ଏମାନଙ୍କ ସହିତ ରାଜରାସ୍ତାରେ ବ୍ରିଫକେଶ ଧରି ବୁଲିଲେଣି । ସେ କ୍ଷମତା ତାଙ୍କର ଅଛି ବୋଲି ପ୍ରମାଣ କରିଦେଲେ । ସେମାନେ ବି ଏକାଥରକେ ଲକ୍ଷ ଲକ୍ଷ ମୂର୍ଚ୍ଛି ପାରୁଛନ୍ତି ।

ଆଶ୍ଚର୍ଯ୍ୟ ହେବାକୁ ହୁଏ —ଏତେ ଟଙ୍କା ଆସୁଛି କୋଉଠୁ ଓ ଯାଉଛି କୁଆଡ଼େ ? ପ୍ରତ୍ୟେକର ଗୋଟାଏ ଉତ୍ପତ୍ତି ଓ ପରିଣତି ସ୍ଥଳ ଅଛି । ଜଳସ୍ରୋତ ପାହାଡ଼ରୁ ଆସି ସମୁଦ୍ରରେ ପହଞ୍ଚେ; କିନ୍ତୁ ଅର୍ଥର ଜଳସ୍ରୋତ ? ବିଜ୍ଞାନ କୁହେ - ଜଳ ଜଳରୁ ସୃଷ୍ଟି ହୋଇ ଜଳରେ ବିଲୀନ ହୁଏ । ସେଇ ହିସାବରେ ଦେଖିବାକୁ ଗଲେ ଅର୍ଥର ସ୍ରୋତ ନିର୍ବାଚନରୁ ସୃଷ୍ଟି ହୋଇ ନିର୍ବାଚନରେ ବିଲୀନ ହୁଏ । ଏବେ କୁହା ଯାଉଛି ଆସନ୍ତା ନିର୍ବାଚନ ପାଇଁ ଆମକୁ ଯେଉଁ ଦାୟିତ୍ୱ ଦିଆ ଯାଇଛି ତାକୁ ତ ପୂରଣ କରିବାକୁ ହେବ । ରାଜଧାନୀରେ ଏବେ ପୋଷ୍ଟିଂ ସବୁ ନିଲାମ ହେଉଛି । ପ୍ରତିଯୋଗୀର ସଂଖ୍ୟା ବଢ଼ିଲେ ଅମଲାତନ୍ତ୍ର ନିଲାମ ନ କରି ସିଦ୍ଧାନ୍ତ ନେଇ ପାରେନା । ଏହା ହିଁ ବାସ୍ତବତା । ତେଣୁ ଏବେ ସବୁ ଘରର ଦ୍ୱାର ଖୋଲା ଅଛି । କୁହାଯାଉଛି, ଯିଏ ଆସୁଛ ଆସ । ପ୍ରତିଯୋଗିତାରେ ଯୋଗ ଦିଅ । ନିଜର ଯୋଗ୍ୟତା ପ୍ରମାଣ କର । ଦୁର୍ନୀତି ଆଜି ସମସ୍ତଙ୍କୁ ସମାନ କରି ଦେଇଛି । ସେଠି ବ୍ରାହ୍ମଣ ଓ ହରିଜନ ସମସ୍ତେ ସମାନ । କାରଣ - ତାର ଗୋଟିଏ ଗୋଡ଼ ରାଜନୀତି ଉପରେ ଓ ଅନ୍ୟଟି ଅମଲାତନ୍ତ୍ର ଉପରେ ।

❑

('ସମାଜ'- ୧୦.୭.୨୦୦୩)

# ବ୍ୟାଙ୍କ ଡକାୟତି

ଏଇ ଶିରୋନାମାଟା ନିଶ୍ଚୟ ଅନେକଙ୍କୁ ଚମକେଇ ଦେବ । ବିଶେଷକରି ଜଣେ ଭାବିବ ନୂଆ ବ୍ୟାଙ୍କ ଡକାୟତିଟିଏ କୋଉଠି ହୋଇଗଲା ବୋଧେ । ଅନ୍ୟମାନଙ୍କ ଭିତରୁ ବ୍ୟାଙ୍କ କର୍ମଚାରୀମାନେ ମଧ୍ୟ ଏମିତି ଭାବି ପାରନ୍ତି । ସେମାନେ ଭାବିବେ ସେମାନଙ୍କ ବ୍ୟାଙ୍କରେ ଡକାୟତି ହେଲା କି ? ସାଧାରଣ ଜନତା ଆଉ ଆଜିକାଲି ବ୍ୟାଙ୍କ ଡକାୟତିକୁ ଗୋଟାଏ ଖବର ହିସାବରେ ଗ୍ରହଣ କରୁ ନାହାନ୍ତି । ସେମାନେ କହନ୍ତି ଏଇଟା ତ ଗୋଟାଏ ନିତିଦିନିଆ କଥା । ପ୍ରତିଦିନ ଦେଶର କୌଣସି ନା କୌଣସି ଜାଗାରେ ବ୍ୟାଙ୍କ ଡକାୟତିଟାଏ ନିଶ୍ଚୟ ହେଉଛି ଏବଂ ଦୁର୍ବୃତ୍ତମାନେ ଅତି କମ୍‌ରେ ଆଠ ଦଶ ଲକ୍ଷ ନିଶ୍ଚୟ ନେଇ ପଳାଉଛନ୍ତି । ଆଜିକାଲି ପୋଲିସ ବି ବ୍ୟାଙ୍କ ଡକାୟତିକୁ ବେଶୀ ଗୁରୁତ୍ୱ ଦେଉନାହିଁ । ଗୁରୁତ୍ୱ ଦେଉ ନ ଥିବାରୁ ସେ ଡକାୟତମାନଙ୍କୁ ଧରିବାକୁ ମଧ୍ୟ ଚେଷ୍ଟା କରୁନାହିଁ । ଏଇଟା ମଧ୍ୟ ସ୍ୱାଭାବିକ କଥା । ଯାହା ପ୍ରତିଦିନ ହେବ ତା' ପ୍ରତି ପୋଲିସ ଏତେ ଗୁରୁତ୍ୱ କାହିଁକ ଦେବ ? ବ୍ୟାଙ୍କ ଡକାୟତି ଏକ ସାଧାରଣ ଅପରାଧ ହେଇ ନ ଥିବାରୁ ତା'ର ଅପରାଧୀମାନଙ୍କୁ ଧରିବା ଏତେ ସହଜ ହୋଇ ନ ଥାଏ ।

ମୁଁ କିନ୍ତୁ ଆଜି ସେଇ ବ୍ୟାଙ୍କ ଡକାୟତି ବା ସେଇ ଡକାୟତମାନଙ୍କ କଥା ଏଠି ଲେଖୁନାହିଁ । ମୁଁ ଏଠି ଲେଖିବି ଯୋଉ ବ୍ୟାଙ୍କ ଡକାୟତମାନେ ଦିନରେ ସମସ୍ତଙ୍କ ସାମନାରେ ବୁଲୁ ଥାଆନ୍ତି ଏବଂ ସମସ୍ତେ ଜାଣନ୍ତି ଯେ ଏଇମାନେ ହିଁ ଡକାୟତ, ସେମାନଙ୍କୁ କାହିଁକି ପୋଲିସ୍ ଧରୁନାହିଁ ? ପୋଲିସ୍ ଠାରୁ ସରକାର ଯାଏ ସମସ୍ତେ ଯେତେବେଳେ ଜାଣୁଛନ୍ତି ଯେ ଏଇ ମହାଶୟ ବ୍ୟାଙ୍କ ଲୁଟିଛନ୍ତି ସେତେବେଳେ ତାଙ୍କୁ ଧରିବାରେ ଅସୁବିଧା କେଉଁଠି ?

ଆମ ଦେଶର ଶିଳ୍ପପତି, ପୁଞ୍ଜିପତି ଓ ବୃହତ୍ ବ୍ୟବସାୟ ଗୋଷ୍ଠୀମାନେ ଦେଶର ରାଷ୍ଟ୍ରାୟତ୍ତ ବ୍ୟାଙ୍କମାନଙ୍କରୁ ବିଗତ ବର୍ଷମାନଙ୍କରେ ହଜାର ହଜାର କୋଟି ଟଙ୍କାର ଋଣ ନେଇ ଇଚ୍ଛାକୃତ ଭାବରେ ପରିଶୋଧ କରୁ ନାହାନ୍ତି । ଫଳରେ ବ୍ୟାଙ୍କଗୁଡ଼ିକ ଏବେ ଏକପ୍ରକାର ଅଚଳାବସ୍ଥାକୁ ଆସିଲେଣି ଏବଂ ତା'ର ପ୍ରଭାବ ଅନ୍ୟାନ୍ୟ ଶିଳ୍ପ,

ବାଣିଜ୍ୟ ବ୍ୟବସାୟ ସର୍ବୋପରି ଦେଶର ସମଗ୍ର ଅର୍ଥନୀତି ଉପରେ ପଡ଼ିଲାଣି । ଗୋଟିଏ ହିସାବରେ କୁହାଯାଇଛି ଯେ ଇଚ୍ଛାକୃତ ଭାବେ ଯେତିକି ଅନାଦେୟ ଋଣ (ଏନ୍.ପି.ଏ.) ପଡ଼ି ରହିଛି ତାହା ସୁଧ ସହ ମୋଟ ୧ଲକ୍ଷ ୫୦ହଜାର କୋଟି ଟଙ୍କାରୁ କମ୍ ହେବ ନାହିଁ । ଏହା ଏବେ ଆମର ସମଗ୍ର ଅର୍ଥନୀତିକୁ କାବୁ କରି ଦେବାକୁ ବସିଲାଣି । ଏହା ନିଃସନ୍ଦେହରେ ଶିଳ୍ପପତିମାନଙ୍କର ଏକ ଷଡ଼ଯନ୍ତ୍ର । ସେମାନେ ହୁଏତ ଚାହାନ୍ତି ସରକାରୀ ମାଲିକାନାରେ କୌଣସି ଶିଳ୍ପ ନଚାଲୁ, ଏପରିକି ବ୍ୟାଙ୍କ ମଧ୍ୟ । ରାଷ୍ଟ୍ରାୟତ୍ତ କାରବାର ପୂରା ଲୋପ ପାଇଲେ ପୁଞ୍ଜିପତିଙ୍କ ବ୍ୟବସାୟ ବାଣିଜ୍ୟ ସେଇମାନଙ୍କ ବ୍ୟାଙ୍କ ଦ୍ୱାରା ବେଶ୍ ଭଲ ଚାଲିବ । ଦେଶର ସମଗ୍ର ଅର୍ଥନୀତି ସେମାନଙ୍କ ହାତରେ ରହିଲେ ଶାସନ ବଳେ ବଳେ ତାଙ୍କ ଅଧୀନକୁ ଚାଲିଯିବ । ଶେଷରେ ସେଇମାନେ ହେବେ ଜନଗଣଙ୍କ ମାଲିକ । ପାର୍ଲାମେଣ୍ଟ ଠାରୁ ଆସେମ୍ବ୍ଲିଯାଏ ସମସ୍ତଙ୍କୁ ହାତମୁଠାକୁ ଆଣିବାକୁ ଏହା ଏକ ଉଦ୍ୟମ । ଏବେ ତ ଦେଖିବାକୁ ଗଲେ ଆମର ସବୁ ଗଣତାନ୍ତ୍ରିକ ଅନୁଷ୍ଠାନକୁ ସେମାନେ ଅର୍ଦ୍ଧାଧିକ ନିଜ ଦ୍ୱାରା ଓ ନିଜର ବଶମ୍ବଦମାନଙ୍କ ଦ୍ୱାରା ଦଖଲ କରି ସାରିଲେଣି । ଆମର ମନ୍ତ୍ରୀମଣ୍ଡଳଗୁଡ଼ିକ କୌଣସି ପ୍ରକାରେ ଗଣତନ୍ତ୍ରର ପ୍ରତିନିଧିତ୍ୱ କରୁଛନ୍ତି ବୋଲି କହିହେବ ନାହିଁ । ସେମାନେ ମୁଖ୍ୟତଃ ପୁଞ୍ଜିପତିଙ୍କ ପ୍ରତିନିଧି । ଯୋଉ ବଜେଟ୍ ଦେଶର ଶିଳ୍ପପତି, ପୁଞ୍ଜିପତି ଓ ମୁନାଫାଖୋରମାନଙ୍କ ବିନା ପରାମର୍ଶରେ ତିଆରି ହୋଇ ପାରେନା ସେ ଦେଶରେ ଗଣତନ୍ତ୍ର ଚାଲିଛି ବୋଲି କେମିତି କହିହେବ ? ସେଇଥିପାଇଁତ ଆମ ଦେଶରେ କିରାସିନିର ଦାମ ବଢ଼େ, ଟିଭି ଓ ଫ୍ରିଜ୍‌ର ଦାମ୍ କମେ । ଚାଉଳ ଓ ଅଟାର ଦାମ୍ ବଢ଼େ ଏବଂ କମ୍ପ୍ୟୁଟର ଦାମ କମେ । କାର୍‌ର ଦାମ୍ କମେ ସାଇକେଲର ଦାମ ବଢ଼େ । ବ୍ୟାଙ୍କର ମଧ୍ୟ ସେଇ ନୀତି । ସେମାନେ ଟିଭି, ଫ୍ରିଜ୍ ଓ ଘର କିଣିବାକୁ ଲୋନ ଦିଅନ୍ତି କିନ୍ତୁ ବନ୍ୟାବାତ୍ୟାରେ ଘର ନଷ୍ଟ ହେଲେ ନୂଆ ଘର ତିଆରି ପାଇଁ ଲୋନ୍ ଦିଅନ୍ତି ନାହିଁ ।

ଆମ ସରକାର ଏସବୁକୁ ସମର୍ଥନ କରନ୍ତି - କରିବାକୁ ବାଧ୍ୟ । ଇନ୍ଦିରାଗାନ୍ଧି ଯେତେବେଳେ ବ୍ୟାଙ୍କଗୁଡ଼ିକୁ ଜାତୀୟକରଣ କରିଦେଲେ ସେତେବେଳେ ସାଧାରଣ ଲୋକଙ୍କ ଧାରଣା ହେଲା ଏଥର ବୋଧେ ସିଧା ସିଧା ସମାଜବାଦ ପ୍ରତିଷ୍ଠିତ ହୋଇଗଲା । ଇନ୍ଦିରା ସରକାର କିଛିଟା ଆଖିଦୃଶିଆ କାମ ଅବଶ୍ୟ କଲେ । କିନ୍ତୁ ନୀତି ନଥାଇ ଯୋଉ କାମ ହୁଏ ତାହା କେବଳ ଭୋଟ ସଂଗ୍ରହ ପାଇଁ । ଭୋଟ ପରେ ସେ ସବୁ ହଜିଯାଏ । ଲୋକେ ପୁଣି ସେଇ ଦୂରବସ୍ଥାରେ ଘାଣ୍ଟି ହୁଅନ୍ତି । ତେଣୁ ଜାତୀୟକରଣ ହେଲା ପରେ ମଧ୍ୟ ବଡ଼ ବଡ଼ ମିଲ ମାଲିକମାନେ ଯେମିତି ବ୍ୟାଙ୍କର ସୁବିଧା ଆଗରୁ ପାଉଥିଲେ

ସେମିତି ପାଇଲେ । ଆଗରୁ ଯାହା ଅଳ୍ପ ଅଂକୁଶ ଥିଲା ଏବେ ତାହା ସଂପୂର୍ଣ୍ଣ ଉଠିଗଲା । ବସ୍ତୁତଃ ଏକଲକ୍ଷ ପଚାଶହଜାର କୋଟି ଟଙ୍କା ନେଇ ସାରିଲା ପରେ ବ୍ୟାଙ୍କର ମାଲିକ ସେଇମାନେ ହେଇଗଲେ ।

ଭାରତର ଅର୍ଥମନ୍ତ୍ରୀ ଏହି ଲୋନ୍‌କୁ 'ଲୁଟ୍' କରା ଯାଇଛି ବୋଲି କହିଛନ୍ତି । ଏ କଥା କହିବା ଦ୍ୱାରା ସାଧାରଣ ଭାବେ କିଛିଟା ସହାନୁଭୂତି ଅବଶ୍ୟ ସେ ପାଇବେ । ସାଧାରଣ ଲୋକେ ରାଜନୈତିକ ଭାଷାକୁ ବୁଝିପାରନ୍ତି ନାହିଁ । ଅର୍ଥମନ୍ତ୍ରୀ ମହାନ୍ ଋଣ ଖିଲାପକାରୀମାନଙ୍କୁ ଲୁଟ୍ କରିଛନ୍ତି ବୋଲି କହିଲେ ସେମାନେ ହୁଏତ ବୁଝିବେ "ମନ୍ତ୍ରୀ ରାଗିଲେଣି । ଏଥର ଏମାନେ ଋଣ ପରିଶୋଧ ନକରି ଯିବେ କୁଆଡ଼େ ?" କିନ୍ତୁ ପ୍ରକୃତରେ ମନ୍ତ୍ରୀଙ୍କ କଥାଟା ହାତୀର ଦାନ୍ତ ପରି । ଯୋଉ ଦାନ୍ତ ଆଗକୁ ଦେଖାଯାଏ ସେଥିରେ ସେ ଖାଏ ନାହିଁ । ଯୋଉ ଦାନ୍ତ ଦେଖାଯାଏ ନାହିଁ ସେଥିରେ ସେ ଖାଏ । ଋଣ ଆଦାୟ ପାଇଁ 'ଡେଟ୍ ରିକୋଭରି ଟ୍ରିବ୍ୟୁନାଲ'ଟିଏ ଗଠନ ହୋଇଥିଲେ ମଧ ତା'ର 'ଦାନ୍ତ' ମୋଟେ ନାହିଁ । ସେ ନା ଚୋବାଇପାରେ ନା ଖାଇପାରେ । ଟ୍ରିବ୍ୟୁନାଲ ଯଦି ପ୍ରକୃତରେ ଜୋର କରି ଋଣ ଆଦାୟ କରିପାରୁ ଥାଆନ୍ତା ତେବେ ଖିଲାପକାରୀମାନେ ଋଣ କରି ଆରାମରେ ଶୋଇପାରୁ ଥାଆନ୍ତେ କି ? ଅଧିକନ୍ତୁ ତାଙ୍କୁ ଉପଯୁକ୍ତ ସରକାରୀ ସୁରକ୍ଷା ଯୋଗାଇ ଦିଆଯାଉଛି । ମନ୍ତ୍ରୀ ଓ ସରକାର ଲୁଚାୟିତ ଭାବରେ ଆଗରୁ ଋଣ ଖିଲାପକାରୀଙ୍କ ପଛରେ ଥିଲେ । ଏବେ କିନ୍ତୁ ସେମାନେ ସମସ୍ତଙ୍କ ଆଗରେ ଅଛନ୍ତି । ଏଠି ଗୋଟିଏ ଉଦାହରଣ ଦେଉଛି ।

ଓଡ଼ିଶା ଗୋଟିଏ ପଛୁଆ ବା ଗରିବ ରାଜ୍ୟ । ଓଡ଼ିଶାର ସବୁଠାରୁ ବଡ଼ ଶିଳ୍ପପତି ହେଲେ 'ଇମ୍ପା ଗ୍ରୁପ୍' ଯାହାର ମାଲିକ ଡକ୍ଟର ବଂଶୀଧର ପଣ୍ଡା । ତାଙ୍କ ସ୍ତ୍ରୀ ଶ୍ରୀମତୀ ଇଲା ପଣ୍ଡା । ଏମାନଙ୍କ ପୁତ୍ର ଶ୍ରୀ ବୈଜୟନ୍ତ ପଣ୍ଡା । ଏହି ପରିବାର ବା ଇମ୍ପା ଗ୍ରୁପ୍ ଦେଶରେ ସବୁଠାରୁ ବଡ଼ ଋଣ ଖିଲାପକାରୀ । ଏହି କମ୍ପାନୀ ନାଁରେ ଏବେ ମାତ୍ର ୯୧୮ କୋଟି ଟଙ୍କାର ଋଣ ଝୁଲୁଚି । ପରିଶୋଧ କରୁ ନାହାନ୍ତି । ପୃଥିବୀର ସବୁ ଶିଳ୍ପପତି ଓ ବ୍ୟବସାୟୀ ରାଜନେତାଙ୍କ ସହିତ ଜଡ଼ିତ ଥାଆନ୍ତି । ସେମିତି ଏହି ଶିଳ୍ପପତିମାନଙ୍କ ସହିତ ବିଜୁ ବାବୁ ଓ ତାଙ୍କ ପୁତ୍ର ନବୀନବାବୁଙ୍କ ସମ୍ପର୍କ କଥା ସମସ୍ତଙ୍କୁ ଜଣା । ଶ୍ରୀମତୀ ଇଲା ପଣ୍ଡା ଆଗରୁ ରାଜ୍ୟସଭା ସଦସ୍ୟା ଥିଲେ । ଏବେ ବୈଜୟନ୍ତ ପଣ୍ଡା ରାଜ୍ୟସଭାର ସଦସ୍ୟ ଅଛନ୍ତି । ଆଗରୁ ସାଧାରଣତଃ ବିଶିଷ୍ଟ ଦେଶସେବୀମାନଙ୍କୁ ସଂସଦ ବା ଆସେମ୍ଲିକୁ ପଠା ଯାଉଥିଲା । ଏବେ ତ ସେ କଥା ନାହିଁ, ଯିଏ ନେଇଥାଣି

ଯୋଗାଇପାରିବ ତାକୁ ପଠା ଯାଉଛି । ତେଣୁ ପ୍ରଚୁର ଅର୍ଥ ପ୍ରଦାନ କରି ଯେଉଁ ଶିଳ୍ପପତି, ବ୍ୟବସାୟୀମାନେ ସଂସଦର ଆସନ ଖରିଦ୍ କରୁଛନ୍ତି ତାକୁ ଦେଶସେବା ଉଦ୍ଦେଶ୍ୟରେ କରାଯାଉଛି ବୋଲି କହିବା ଠିକ୍ ନୁହେଁ । ପୁଞ୍ଜିପତିର କାମ ହେଲା ପୁଞ୍ଜି ଖଟେଇବ ଏବଂ ଯୋଉ ପୁଞ୍ଜି ଖଟେଇବ ତାହା ଯେପରି ଉପଯୁକ୍ତ ଭାବରେ ବିନିଯୋଗ ହୁଏ ତାକୁ ଦେଖିବ । ଶ୍ରୀମତୀ ଇଲା ପଣ୍ଡା ଏବଂ ଏବର ସାଂସଦ ଶ୍ରୀ ବୈଜୟନ୍ତ ପଣ୍ଡା ଦୁହେଁ ଶିଳ୍ପପତି ହୋଇଥିଲେ ମଧ୍ୟ ଓଡ଼ିଶାର ପିପିଏଲ୍ ଏବଂ ନାଲକୋ ବିଷୟରେ ଆଜିଯାଏ ଜନସାଧାରଣଙ୍କ ସାମନାରେ ତାଙ୍କର ମୁହଁ ଖୋଲିଥିବା କଥା ଆମେ ଜାଣୁନାଁ । ଅନ୍ତତଃ ସେମାନେ ବିଜେଡିର ସଦସ୍ୟ ହୋଇଥିବା ଦୃଷ୍ଟିରୁ ଦଳର ମତ ସପକ୍ଷରେ ଯାଇ ଘରୋଇକରଣ ବିପକ୍ଷରେ କହିବାର କଥା । କିନ୍ତୁ ସେ କଥା ସେ କହିବେ କି ? ଓଡ଼ିଶାର ଜନସାଧାରଣ, ବୁଦ୍ଧିଜୀବୀ, ଅନ୍ୟ ସବୁ ରାଜନୈତିକ ଦଳ କେହି ତାଙ୍କୁ ଏ ବିଷୟରେ ପଚାରି ବି ନାହାନ୍ତି । ଦଳର ସଭାପତି ନବୀନ ମଧ୍ୟ ତାଙ୍କୁ ଏ କଥା ପଚାରି ନ ଥିବେ । କାରଣ ସେ ସର୍ତ୍ତରେ ସେମାନେ (ଶିଳ୍ପପତିମାନେ) ରାଜନୀତିକୁ ଆସନ୍ତି ନାହିଁ । ତେବେ ସେମାନେ କଅଣ ପାଇଁ ଆସନ୍ତି ? ଏ ପ୍ରଶ୍ନର ଉତ୍ତର ଅତି ସହଜ । ସେମାନଙ୍କର ଏକମାତ୍ର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ହେଲା ପୁଞ୍ଜି ବଢ଼େଇବା । କମେଇବା ନୁହେଁ । ତେଣୁ ସରକାରୀ ପଇସାରେ ଯିବା ଆସିବା କରି, ସରକାରୀ ପଦବୀ ବ୍ୟବହାର କରି କିପରି ପୁଞ୍ଜିକୁ ଅଧିକ ବଡ଼ କରାଯାଇ ପାରିବ ତାହା ହିଁ ସେମାନଙ୍କର ଏକମାତ୍ର କାମ । ତେଣୁ ସରକାର ଲୋକଦେଖାଣିଆ ଭାବେ ଯେତେ ଅର୍ଡିନାନ୍ସ ଜାରି କଲେ ବା ତାକୁ ଆଇନ କଲେ ମଧ୍ୟ ପରଦା ପଛପଟେ ଥିବା ଏହି ବିରାଟ ଶକ୍ତି ଆଗରେ ସରକାରକୁ ମୁଣ୍ଡ ନୁଆଇଁବାକୁ ପଡ଼ିଥାଏ ଦୁଇଟି କାରଣରୁ । ଗୋଟିଏ ହେଲା, ଦଳୀୟ ସ୍ୱାର୍ଥ ଓ ଅନ୍ୟଟି ହେଲା ବ୍ୟକ୍ତିଗତ ସ୍ୱାର୍ଥ । ଏ ଦୁଇଟିକୁ ଛାଡ଼ି ମନ୍ତ୍ରୀ ବା ରାଜନୈତିକ ଦଳର ସ୍ଥିତି କାହିଁ ?

ନିୟମ ଅନୁସାରେ ଓଡ଼ିଶାର ପୁଞ୍ଜି ଓଡ଼ିଶାରେ ହିଁ ଖଟାଯିବ । କିନ୍ତୁ ଅତି ଆଶ୍ଚର୍ଯ୍ୟ ଓ ଦୁର୍ଭାଗ୍ୟର କଥା ଯେ, ଓଡ଼ିଶା ବାହାରର ପୁଞ୍ଜିପତିମାନେ ଓଡ଼ିଶାରୁ ଟଙ୍କା ଋଣ ନେଇ ବାହାରେ ଖଟାନ୍ତି । ଏଥିପାଇଁ ସେମାନଙ୍କୁ କେହି ବାଧ କରିପାରେ ନାହିଁ ।

ଆସାମର ଟାଟା ଟି' କମ୍ପାନୀ ତାର ଗୋଟାଏ ବିରାଟ ଅଂଶକୁ ନେଇ ଯେତେବେଳେ ପଶ୍ଚିମବଂଗରେ ଖଟେଇବାକୁ ସ୍ଥିର କଲେ ସେତେବେଳେ ଉଲ୍‌ଫା ଧମକ ଦେଲା ଯେ, ତୁମେ ଯଦି ସେ କାମ କର ତେବେ ଆସାମରେ ଥିବା ତୁମ ଅନୁଷ୍ଠାନମାନଙ୍କୁ

ଗୋଟିଏ ଦିନରେ ଉଡ଼େଇ ଦିଆଯିବ । ଏ କଥା ଶୁଣିଲା ପରେ କମ୍ପାନୀର ଚେୟାରମ୍ୟାନ୍ ନିଃସର୍ତ୍ତ କ୍ଷମା ମାଗିଲେ ଏବଂ ଘୋଷଣା କଲେ ଯେ, କେବଳ ପୁଞ୍ଜି ନୁହେଁ ଲାଭାଂଶର ପ୍ରତ୍ୟେକଟି ଅଂଶ ମଧ୍ୟ ଆସାମର ଉନ୍ନତି କଳ୍ପେ ବ୍ୟୟିତ ହେବ । ଏ କଥା ଏବେ ମଧ୍ୟ ହେଉଛି । ଏହି ଲେଖକର ଏ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ରହିଛି । ଟାଟା ଟି' କମ୍ପାନୀ ଆସାମର ଅନେକଗୁଡ଼ିଏ ଶିକ୍ଷାନୁଷ୍ଠାନ ହାତକୁ ନେଇଛି । ତା'ର ଅର୍ଥ ସେ ସବୁର ପ୍ରତ୍ୟେକ ଖର୍ଚ୍ଚ କମ୍ପାନୀର । କମ୍ପାନୀ ମଧ୍ୟ ସେଠି ଗୋଟିଏ ଫୁଟ୍‌ବଲ ଏକାଡେମୀ ଖୋଲିଛି । ତା'ର ସମସ୍ତ ଖର୍ଚ୍ଚ କମ୍ପାନୀର । ଠିକ୍ ସେମିତି ଆସାମର ଅନ୍ୟ ଚା' କମ୍ପାନୀମାନେ ସେଠି ବର୍ଷକୁ କୋଟି କୋଟି ଟଙ୍କା ରାଜ୍ୟର ଶିକ୍ଷା, ସ୍ୱାସ୍ଥ୍ୟ, ସାହିତ୍ୟ, କଳା ଇତ୍ୟାଦି କ୍ଷେତ୍ରରେ ଖର୍ଚ୍ଚ କରନ୍ତି । ସାହିତ୍ୟ ପାଇଁ ଯୋଉ 'ଆସାମ ଭେଲି ଆୱାର୍ଡ' ଦିଆଯାଏ ତା'ର ମୂଲ୍ୟ ଦୁଇ ଲକ୍ଷ । ଅଥଚ ଆମ ଓଡ଼ିଶାର ବ୍ୟାଙ୍କ ଋଣ ଖିଲାପକାରୀ ମହାନ୍ ଶିଳ୍ପପତିମାନେ କେତେ ଟଙ୍କା ଏସବୁ ଦିଗରେ ଖର୍ଚ୍ଚ କରୁଛନ୍ତି ସେ କଥା ସମସ୍ତେ ଜାଣନ୍ତି । ଯେଉଁମାନେ ବ୍ୟାଙ୍କକୁ ଶୋଷଣ କରୁଛନ୍ତି ସେମାନେ ଜନସାଧାରଣଙ୍କୁ ମଧ୍ୟ ଶୋଷଣ କରିବାକୁ ଛାଡ଼ନ୍ତି ନାହିଁ । କିନ୍ତୁ ଆଶ୍ଚର୍ଯ୍ୟର କଥା ଏହି ଯେ, ଏ ରାଜ୍ୟର ବୁଦ୍ଧିଜୀବୀମାନେ ମଧ୍ୟ ସଂଗଠିତ ହୋଇ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଭୟ କରନ୍ତି । ଆଉ କବି ଓ ସାହିତ୍ୟିକମାନଙ୍କ କଥା ନ କହିବା ଭଲ । ମାତ୍ର ୫୦ ହଜାର ଟଙ୍କାର ହାତ ମଳି ପାଇବା ପାଇଁ କି କାକୁସ୍ଥ ଅବସ୍ଥା । ସେମାନେ ଭାବନ୍ତି ନାହିଁ ଯେ, ଓଡ଼ିଶାର ସ୍ୱାର୍ଥ ଆଗ ନା ନିଜ ସ୍ୱାର୍ଥ ଆଗ ।

'ନିଖିଳ ଓଡ଼ିଶା ବ୍ୟାଙ୍କ କର୍ମଚାରୀ ସଂଘ' ତରଫରୁ ପ୍ରକାଶିତ ଏକ ପ୍ରଚାରପତ୍ରରେ କୁହାଯାଇଛି ଯେ, ଓଡ଼ିଶାର ଯେଉଁ ଯେଉଁ କମ୍ପାନୀମାନଙ୍କ ଉପରେ ୧ କୋଟିରୁ ଅଧିକ ଅନାଦେୟ ଋଣ ରହିଛି ସେମାନଙ୍କ ସଂଖ୍ୟା ହେଲା ୧୦୬ । ଏଥିରେ ରାଜ୍ୟ ସରକାରଙ୍କ କମ୍ପାନୀମାନେ ମଧ୍ୟ ଅଛନ୍ତି । ଯେତେବେଳେ ଆଦାୟର ପ୍ରଶ୍ନ ଉଠିବ ସେତେବେଳେ ପ୍ରାଇଭେଟ କମ୍ପାନୀମାନେ ରାଜ୍ୟ ସରକାରଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରିବେ ନାହିଁ କି ? ତେଣୁ ଆସ ସମସ୍ତେ ମିଳିମିଶି ଖାଇବା । ସବୁ ସରିଗଲା ପରେ ବ୍ୟାଙ୍କ ଓ ଶିଳ୍ପ କାରଖାନାକୁ ମାଗଣାରେ ପୁଞ୍ଜିପତିଙ୍କ ହାତକୁ ଟେକିଦେବା । ଦେଶର ସାଧାରଣ ଜନତା ଜାହାନ୍ନମକୁ ଯାଆନ୍ତୁ । ସେଥିରେ କାହାର କ'ଣ ଯାଏ ?

❑

('ସମୟ'- ୧୫.୧୧.୨୦୦୨)

# ଧ୍ୱଂସ ପଥରେ ବ୍ରାହ୍ମଣବାଦ

ଏଥର ସୁପ୍ରିମକୋର୍ଟ ଠାକୁର ପୂଜା ଓ ବ୍ରାହ୍ମଣର ଅଧିକାର ସଂପର୍କରେ ଯେଉଁ ରାୟ ଦେଇଛନ୍ତି ତାହା ଆମର ହଜାର ହଜାର ବର୍ଷରୁ ଚଳି ଆସୁଥିବା ସାମାଜିକ ବିଧି ବ୍ୟବସ୍ଥାର ମଞ୍ଜିଟିକୁ ଦୋହଲାଇ ଦେଇଛି । ସତେ ଅବା ଗୋଟିଏ ନୂତନ ସୂର୍ଯ୍ୟର ଆଗମନ କଥା ସେମାନେ କହିଛନ୍ତି ।

ସୁପ୍ରିମକୋର୍ଟ ତାଙ୍କ ରାୟରେ କହିଛନ୍ତି ଯେ, କେବଳ ବ୍ରାହ୍ମଣମାନେ ଯେ ଠାକୁରଙ୍କୁ ପୂଜା କରିପାରିବେ ତା'ର କିଛି ମାନେ ନାହିଁ । ଯେ କୌଣସି ଲୋକର ମନରେ ଭକ୍ତି ଥିଲେ ସେ ଠାକୁରଙ୍କୁ ପୂଜା କରି ପାରିବ । ମନ୍ତ୍ର ଜାଣିଥିଲେ ପୂଜା କରି ପାରିବ । ମନ୍ତ୍ର ନ ଜାଣି ମଧ ଠାକୁରଙ୍କୁ ନିଜର ମନକଥା ଜଣାଇ ପୂଜା କରି ପାରିବ । ଠାକୁରଙ୍କ ପାଦ ତଳେ ଫୁଲଟିଏ ଦେବାପାଇଁ ବୈଦିକ ମନ୍ତ୍ରର ଏକାନ୍ତ ଆବଶ୍ୟକ, ଏ ବିଧି ଆଉ ରହିଲା ନାହିଁ । ଏଥିରେ ଆଉ ଗୋଟିଏ କଥା ମଧ ସ୍ୱଷ୍ଟ ହେଲା ଯେ, ମନ୍ଦିରରେ ପୂଜା କରିବାର ଅଧିକାର ଯେ କେବଳ ପଇତା ପକେଇଥିବା ବ୍ରାହ୍ମଣର ରହିବ, ତା' ମଧ ନୁହେଁ । ଯେ କୌଣସି ଲୋକ ସେ କାମ କରି ପାରିବ । ଯାହାର ଯେତେବେଳେ ଇଚ୍ଛା ହେବ ସେତେବେଳେ ସେ ମନ୍ଦିରକୁ ଯିବ ଏବଂ ଫୁଲଟିଏ ଚଢ଼େଇ ପାରିବ । ଖାଲି ପ୍ରାର୍ଥନା ମଧ କରି ପାରିବ । ଜଣେ ଖାଲି ପଇତା ପକେଇ ଥିଲେ ଯେ ବ୍ରାହ୍ମଣ ହୋଇଯାଏ ସେ କଥା ନୁହେଁ । ବ୍ରହ୍ମକୁ ଯିଏ ଜାଣିଥାଏ ତାକୁ ବ୍ରାହ୍ମଣ କୁହାଯାଏ । ଯିଏ ବ୍ରହ୍ମକୁ ଜାଣିବ ସିଏ ମଧ ବ୍ରାହ୍ମଣ ପଦବାଚ୍ୟ ହେବ । ତେଣୁ ଏଥିରେ ଆଉ ଜାତିପ୍ରଥା ରହିଲା ନାହିଁ କିମ୍ୱା ତଥାକଥିତ ବ୍ରାହ୍ମଣମାନେ ଯେ ଏଇ କଥାଟାକୁ ତାଙ୍କର ଏକଚାଟିଆ ଅଧିକାର କରି ରଖିଥିଲେ ସେକଥା ମଧ ରହିଲା ନାହିଁ । ସେ ଅଧିକାରଟି ଏଥର ସମସ୍ତଙ୍କ ଭିତରେ ବାଣ୍ଟି ହୋଇଗଲା । ବିଶ୍ୱାମିତ୍ର ବ୍ରାହ୍ମଣ ନ ଥାଇ ବ୍ରାହ୍ମଣର ଷ୍ଟେଟସ୍ ପାଇଥିଲେ । ବ୍ରାହ୍ମଣବାଦଟା ବହୁଦିନୁ ଆମ ସମାଜକୁ ଭାଗ ଭାଗ କରି ରଖିଥିଲା । ସେମାନେ ସେତେବେଳେ ଯେତିକି ବୈଦିକ କ୍ରିୟାକର୍ମ କରୁଥିଲେ ତା' ଅପେକ୍ଷା ଯଥେଷ୍ଟ ବେଶୀ ରାଜନୀତି ମଧ କରୁଥିଲେ । ରାଜାର ପୁରୋହିତ ହିସାବରେ ସେମାନେ ବସ୍ତୁତଃ ରାଜାଙ୍କ ଗୁରୁ ହିସାବରେ କାମ କରୁଥିଲେ ଏବଂ ତା'ପରେ ରାଜାଙ୍କ ଇଚ୍ଛା କିମ୍ୱା ଦେଶର ଇଚ୍ଛା ଅପେକ୍ଷା ନିଜ ଇଚ୍ଛାକୁ ହିଁ କାର୍ଯ୍ୟକାରୀ କରାଉଥିଲେ । ଅନେକ ସମୟରେ ଏଥିପାଇଁ

ଯୁଦ୍ଧ ମଧ୍ୟ ଅବଶ୍ୟମ୍ଭାବୀ ହୋଇ ପଡୁଥିଲା । ନିଜର ଏଇ ଏକାଧିପତ୍ୟ ଜାହିର କରିବାକୁ ସେମାନେ ପୂଜାର ଅଧିକାର ଅନ୍ୟମାନଙ୍କୁ ଦେଉ ନ ଥିଲେ । ଏପରିକି ରାଜାଙ୍କୁ ମଧ୍ୟ ନୁହେଁ । ସେ କାମ ପାଇଁ ସେମାନଙ୍କୁ ଭଗବାନ ସ୍ୱତନ୍ତ୍ର ଭାବେ ସୃଷ୍ଟି କରିଛନ୍ତି ବୋଲି କହୁଥିଲେ । ଅନ୍ୟମାନେ ସେ କାମ କଲେ ସେମାନଙ୍କ ମନସ୍କାମନା ପୂର୍ଣ୍ଣ ହେବ ନାହିଁ ବୋଲି କହୁଥିଲେ । ଅଧିକନ୍ତୁ ଦେବତା ଅସନ୍ତୁଷ୍ଟ ହୋଇ ଓଲଟା କାମ କରିବେ ବୋଲି କହୁଥିଲେ । ସେମାନେ ଏମିତି ମଧ୍ୟ ବୁଝାଇ ଦେଉଥିଲେ ଯେ, ତୁମେ ମଧ୍ୟ ଈଶ୍ୱରଙ୍କ ପାଖକୁ ଯାଇ ପାରିବ, କିନ୍ତୁ ସିଧାସଳଖ ନୁହେଁ । ତୁମେ ଆମ ସାହାଯ୍ୟରେ ଯାଇ ପାରିବ ବିନା ମାଧ୍ୟମରେ ତୁମେ ଯାଇପାରିବ ନାହିଁ କିମ୍ବା ଗଲେ ମଧ୍ୟ ଫଳପ୍ରାପ୍ତି ହେବ ନାହିଁ । ସତେ ଅବା ଅନ୍ୟ କେହି ବିନା ମାଧ୍ୟମରେ ଗଲେ ତାଙ୍କୁ ଈଶ୍ୱର ଚିହ୍ନିବେ ନାହିଁ ।

ଲୋକଙ୍କୁ ବୋକା ବନେଇବା ପାଇଁ ସେମାନେ ବେଦ ଅନ୍ୟ କାହାକୁ ଶିଖିବାକୁ ବା ପଢ଼ିବାକୁ ଦେଉ ନ ଥିଲେ । ଜଣେ କେବଳ ଶୁଣି ପାରେ । କିନ୍ତୁ ପାଠ କରିବ ନାହିଁ କି ତାକୁ ସ୍ପର୍ଶ ମଧ୍ୟ କରିବ ନାହିଁ । ସେମାନେ ଜାଣୁଁଥିଲେ, ଯେତେଦିନଯାଏ ବେଦଟା 'ପାଣ୍ଡୋରାର ବାକ୍ସ' ହୋଇ ରହିଥିବ ସେତେଦିନ ଯାଏ ସମାଜରେ ସେମାନଙ୍କ ପ୍ରାଧାନ୍ୟ ଅତୁଟ ରହିଥିବ । ସମଗ୍ର ସମାଜକୁ ସେମାନେ ନିଜ ହାତମୁଠାରେ କେବଳ ଏଇ ମିଛକଥା କହି ଅଟକେଇ ରଖିଥିଲେ । ଏଇମାନଙ୍କ ଲାଗି ଦଳିତମାନେ ସମାଜରୁ ଅଲଗା ହୋଇଗଲେ । କାମ ଅନୁସାରେ ଜାତି ସୃଷ୍ଟି କଥାଟା ଏଇମାନଙ୍କ ମଗଜରୁ ସୃଷ୍ଟି ହେଲା । ଅନ୍ୟମାନଙ୍କୁ ଦାସ କରି ରଖିବାର ଉପାୟ ସୃଷ୍ଟି ହେଲା । ଏଇଠୁ ଭାଗ୍ୟବାଦର ଜନ୍ମ ହେଲା । 'ତୁମ ଭାଗ୍ୟରେ ଯାହା ନାହିଁ ତାକୁ ପାଇବାକୁ ଚେଷ୍ଟା କରନା । ତେବେ ଆମେ ଚେଷ୍ଟା କଲେ କିଛିଟା କରେଇ ଦେଇ ପାରିବା । ତେଣୁ ଆମ ବିନା ଅନ୍ୟଗତି ନାହିଁ', ଏମିତି ଗୋଟେ ଧାରଣା ସମସ୍ତଙ୍କ ମନରେ ପଶିବାକୁ ଲାଗିଲା ।

ମନୁ ଜାତି ପ୍ରଥାଟାକୁ ଆଉ ଟିକିଏ ଦୃଢ଼ କରିଦେଲେ । ବ୍ରାହ୍ମଣବାଦକୁ ଶ୍ରେଷ୍ଠତ୍ୱ ଦେବାକୁ ଆଇନଟିଏ ତିଆରି କରିଦେଲେ । ବାସ୍, ତା'ପରେ ଆଉ କିଛି ଅସୁବିଧା ରହିଲା ନାହିଁ । ସବୁ ଦିଗରୁ ବ୍ରାହ୍ମଣଟାଏ ସମାଜର ଶୀର୍ଷ ସ୍ଥାନରେ ରହି ଅନ୍ୟମାନଙ୍କୁ ତା'ର ପଦାନତ କରି ରଖିଲା । ସେ ଏତେ କ୍ଷମତାଶାଳୀ ହୋଇ ଉଠିଲା ଯେ ଈଶ୍ୱରଙ୍କୁ ମଧ୍ୟ ସେ ହାତମୁଠାରେ ରଖିଛି ବୋଲି କହିଲା । ତା'ମୁଖରୁ ଯାହା ସ୍ଫୁରିତ ହେବ, ତାହା ଆଶୀର୍ବାଦ କିମ୍ବା ଅଭିଶାପ ହେବ । ଫଳରେ ସମସ୍ତେ ତାକୁ ଡରୁଥିଲେ । ସେମାନେ ଯେତେ ଅନ୍ୟାୟ କଲେ ମଧ୍ୟ ତାଙ୍କର ପୂଜା ହେଉଥିଲା । ''ବ୍ରାହ୍ମଣ କଲେ ଅପରାଧ, ବେଗେ ପୂଜିବ ତାଙ୍କ ପାଦ'' ବୋଲି କୁହା ଯାଉଥିଲା ।

କିନ୍ତୁ ସମୟ ସବୁଦିନ ସମାନ ଯାଏ ନାହିଁ । ଲୋକେ ଧୀରେ ଧୀରେ ସବୁକଥା ଜାଣି ପାରିଲେ । ଜ୍ଞାନଟାକୁ କିଏ ବା କେତେଦିନ ଅନ୍ୟ ଠାରୁ ଲୁଚାଇ ରଖି ପାରିବ ? ଲୋକଙ୍କ ବିବେକ, ବୁଦ୍ଧି ବା ଯାହାକୁ ଆମେ ଚିନ୍ତାଶକ୍ତି ବୋଲି କହୁଛୁଁ ତାହା ଅନେକ ବୈଜ୍ଞାନିକ କାରଣରୁ ସ୍ଫୁରିତ ହେବାକୁ ଲାଗିଲା । ମଣିଷ ଏକଥା ମଧ୍ୟ ଜାଣିଲା ଯେ, ଏଥିପାଇଁ ଈଶ୍ୱରଙ୍କ କିଛି କରିବାର ନାହିଁ । ସେ ନିଜେ ହିଁ ନିଜର ଈଶ୍ୱର । ସେ ନିଜେ ଯାହା କରି ପାରିବ ତାକୁ ଈଶ୍ୱର ମଧ୍ୟ କରି ପାରିବେ ନାହିଁ । ବ୍ରାହ୍ମଣ ଛାର । ସେଇଦିନ ଠାରୁ ବ୍ରାହ୍ମଣଙ୍କ ଏକଚାଟିଆ ଅଧିକାର ଉପରେ ଗୋଟିଏ ପ୍ରଶ୍ନଚିହ୍ନ ଆସିଗଲା । ବେଦ ଶାସ୍ତ୍ର ସବୁଠି ପଢ଼ାହେଲା ଏବଂ ତା' ଉପରେ ଆଲୋଚନା ମଧ୍ୟ ଆରମ୍ଭ ହେଲା । ସେ ଆଲୋଚନା ପରେ ଯାହା ଆବଶ୍ୟକ ତାକୁ ଗ୍ରହଣ କରାଗଲା ଏବଂ ଯାହା ଅନାବଶ୍ୟକ ତାକୁ ଆଡ଼େଇ ଦିଆଗଲା । ବେଦ ବା ଯାହାକୁ ଆମେ ଧର୍ମର ସଂହିତା ବୋଲି କହୁଁ ସେଥିରେ ପରିବର୍ତ୍ତନ ଆସିଲା । ସମସ୍ତେ ସବୁଠି ପରିବର୍ତ୍ତନଟାକୁ ସ୍ୱାଗତ କରନ୍ତି । ମଣିଷ କେବେ ଚାହେଁ ନାହିଁ, ସେ ଗୋଟାଏ ନିବୁଜ କୋଠରି ଭିତରେ ଆବଦ୍ଧ ଥାଉ । ବାହାରକୁ ଆସିବା ଓ ଅଧିକରୁ ଅଧିକ ଆଲୋକ ଓ ପବନ ଗ୍ରହଣ କରିବା ତା'ର ପ୍ରକୃତି । ଏହି ନ୍ୟାୟରେ ସେ ପୁରୁଣା ମୂଲ୍ୟବୋଧ ଓ ପୁରୁଣା ପରମ୍ପରାକୁ ସବୁବେଳେ ପଛରେ ଛାଡ଼ି ଆସିଛି । ନୂତନତ୍ୱକୁ ଆହ୍ୱାନ କରିଛି ।

ଆଜି ସୁପ୍ରିମ୍‌କୋର୍ଟ ଯେଉଁ ରାୟ ଦେଲେ ତାହା ଯୁଗ ଯୁଗର ଆଶା ଓ ଆକାଂକ୍ଷାର ଫଳ । ବ୍ରାହ୍ମଣର ଏକଚାଟିଆ ଅଧିକାର ମୂଳରେ ଏହା ଏକ ଶକ୍ତ ଧକ୍କା । ଧ୍ୱଂସର ଆରମ୍ଭ । ଯାହା ଅନେକ ଆଗରୁ ଧୀରେ ଧୀରେ ଏବଂ ଅନେକ ବାଧାବିଘ୍ନ ଭିତର ଦେଇ ଗତି କରିବାକୁ ଆରମ୍ଭ କରିଥିଲା, ବହୁ ମହାମନିଷୀଙ୍କ ଦ୍ୱାରା, ତାହା ଏବେ ତ୍ୱରାନ୍ୱିତ ହେବାକୁ ଆରମ୍ଭ କଲା । ତାକୁ ଆଉ କେହି ବାଧା ଦେଇପାରିବ ନାହିଁ । ସୁପ୍ରିମ୍‌କୋର୍ଟର ରାୟ ସେ ରାସ୍ତାରୁ ସବୁ ବାଧାବିଘ୍ନକୁ ଉଠେଇ ଫୋପାଡ଼ି ଦେଲା । ଏ ରାୟକୁ ଭାରତର ସବୁ ମୁକ୍ତିକାମୀ ମଣିଷ ଆନ୍ତରିକତାର ସହିତ ସ୍ୱାଗତ କରିଛନ୍ତି । ଯେଉଁମାନେ ଆଗରୁ ବ୍ରାହ୍ମଣବାଦକୁ ସମର୍ଥନ କରୁଥିଲେ ବୋଲି ଜଣା ପଡୁଥିଲା, ସେମାନେ ଏବେ ସ୍ୱର ବଦଳ କରି ସାରିଲେଣି । ପରିବର୍ତ୍ତନର ସ୍ରୁଅରେ ନିଜକୁ ସାମିଲ କରି ସାରିଲେଣି । କିନ୍ତୁ ଆହୁରି କେତେକ ଅଛନ୍ତି ଯେଉଁମାନେ ପୁରାତନକୁ ଏଯାଏ ଛାଡ଼ିପାରି ନାହାନ୍ତି । ସେମାନେ ମଧ୍ୟ ଭାବୁଛନ୍ତି, ଈଶ୍ୱରଙ୍କୁ ପାଇବାକୁ ହେଲେ ଗୋଟିଏ ମାଧ୍ୟମ ଦେଇ ଗତି କରିବା ଛଡ଼ା ଅନ୍ୟ ଉପାୟ ନାହିଁ । ସେମାନେ ଯୁଗ ଯୁଗର ବିଶ୍ୱାସକୁ ସୁପ୍ରିମ୍‌କୋର୍ଟର ରାୟ ବୋଲି ମନେ କରୁଛନ୍ତି । ଯୁଗ ଯୁଗରୁ ତାହା ଚାଲି ଆସୁଥିବାରୁ ତାହା ବଦଳିପାରିବ ନାହିଁ ବୋଲି ଭାବୁଛନ୍ତି । ଗୋଟାଏ ଗଡ୍ଡାଳିକା ପ୍ରବାହରେ ସେମାନେ

ଭାବୁଛନ୍ତି ଯେ, ମଣିଷର ବିଶ୍ୱାସ ଉପରେ ମତ ଦେବାର ଅଧିକାର କୋର୍ଟର ନାହିଁ । ସେମାନେ ହୁଏତ କଥାଟାକୁ ବୁଝି ମଧ୍ୟ ବୁଝିପାରୁ ନାହାନ୍ତି । ମଣିଷର ବିଶ୍ୱାସ ପାହାଡ଼ ପରି ଅଚଳ ବୋଲି ସେମାନଙ୍କ ଧାରଣା । କିନ୍ତୁ ପ୍ରକୃତରେ ପାହାଡ଼ର ମଧ୍ୟ କ୍ଷୟ ଥାଏ ଏବଂ ତାହା ଦିନେ ଲୋପ ମଧ୍ୟ ପାଇପାରେ । କ୍ଷୟର ପ୍ରକ୍ରିୟା ତ୍ୱରାନ୍ୱିତ ହେଲେ ବିରାଟ ପାହାଡ଼ ଅଚିରେ ଧୂଳିସାତ ହୋଇଯାଏ । ଏକଥାକୁ ଯିଏ ବିଶ୍ୱାସ ନ କରେ ତାକୁ ବା କ'ଣ କହିବା ? ଈଶ୍ୱର ପ୍ରାପ୍ତି କଥାଟା ମଧ୍ୟ ସେମିତି । ପାସେଞ୍ଜର ଟ୍ରେନ୍ ସିନା ସବୁ ଷ୍ଟେସନରେ ଅଟକେ କିନ୍ତୁ ସୁପରଫାଷ୍ଟ ଟ୍ରେନ୍ ସବୁ ଷ୍ଟେସନକୁ ଡେଇଁ ଚାଲିଯାଏ ।

ଏ ପୃଥିବୀଟା ଏବେ ଦଉଡୁଛି । ତା'ର ଗତି ଏତେ କ୍ଷିପ୍ର ଯେ, ସେଥିରେ ବସିଲେ ଆମେ ଅଳ୍ପ ସମୟ ଭିତରେ ସୁପରଫାଷ୍ଟ ଟ୍ରେନ୍ ପରି ଅନେକ ଦୂର ଯାଇ ପାରିବା । ନଚେତ୍ ଆମେ ଯଦି ପାସେଞ୍ଜର ଟ୍ରେନ୍‌ରେ ଯିବା, ତେବେ ଅନିର୍ଦ୍ଦିଷ୍ଟ କାଳ ଲାଗିଯିବ ଲକ୍ଷ୍ୟସ୍ଥଳରେ ପହଞ୍ଚିବାକୁ । ନ ପହଞ୍ଚି ବି ପାରୁଁ । ବିଜ୍ଞାନ ଏବେ ସାଇବର ଯୁଗରେ ପହଞ୍ଚିଲାଣି । ମଣିଷକୁ ଆଜି ଆଉ ଛୋଟ ଛୋଟ କୋଠରି ଭିତରେ ରଖାଯାଇ ପାରିବ ନାହିଁ । ସେ 'ବସୁଧୈବ କୁଟୁମ୍ବକମ୍'ର ସୀମା ଅତିକ୍ରମ କରି ଅନେକ ଆଗକୁ ମାଡ଼ି ଯିବାକୁ ବସିଛି । ତାକୁ ଚାହିଁଲେ ମଧ୍ୟ ଅଟକେଇ ହେବ ନାହିଁ ।

ତେବେ ଯେ ଯା'ହେଉ ସୁପ୍ରିମକୋର୍ଟର ଏ ଯୁଗାନ୍ତକାରୀ ରାୟ ଏବେ କ୍ଷମତାରେ ଥିବା ଭାଜପାର ମୌଳବାଦୀ ଅନୁଷ୍ଠାନମାନଙ୍କୁ ଅଡୁଆରେ ପକାଇଛି । ଭାଜପା ବ୍ରାହ୍ମଣବାଦର ପ୍ରଚାର କରେ । ସଂଘ ପରିବାରମାନେ ହିନ୍ଦୁତ୍ୱ ମାଧ୍ୟମରେ ବ୍ରାହ୍ମଣବାଦକୁ ଆଗକାଳ ପରି ଶୀର୍ଷସ୍ଥାନରେ ରଖିବାକୁ ଚାହାନ୍ତି । ସେମାନେ ଜାତିପ୍ରଥାର ପୂର୍ଣ୍ଣ ସମର୍ଥନ କରନ୍ତି । ବୈଦିକ ଶାସ୍ତ୍ର ଯାହା କହିଛି ତାକୁ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ଚାହାନ୍ତି । ତା'ର ପରିବର୍ତ୍ତନର ସେମାନେ ଘୋର ବିରୋଧୀ । ସେମାନେ ଏଇ ନୀତିରେ ବିଶ୍ୱାସ କରୁଥିବାରୁ ଗୁଜରାଟ ଓ ୟୁପିରେ ମନ୍ଦିରମାନଙ୍କରେ ପୂଜା କରୁଥିବା ବ୍ରାହ୍ମଣମାନଙ୍କୁ ସରକାରୀ ଚାକିରି ପରି ଦରମା ଦେବାର ବ୍ୟବସ୍ଥା କରାଯାଇଛି । ସମଗ୍ର ଦେଶରେ ବ୍ରାହ୍ମଣମାନଙ୍କ ଥଇଥାନ ପାଇଁ ପାଠ୍ୟକ୍ରମର ପରିବର୍ତ୍ତନ କରାଯାଇଛି ଏବଂ ସ୍କୁଲ କଲେଜମାନଙ୍କରେ ପୂଜା ପଦ୍ଧତି ଓ ପୁରୋହିତ କ୍ରିୟାକର୍ମର ଶିକ୍ଷା ଆରମ୍ଭ ହୋଇଛି । ଆଇନ ହୋଇଛି ଯେ ଏଥିରେ ପାସ୍ କଲେ ମନ୍ଦିରମାନଙ୍କରେ ଚାକିରି ମିଳିବ । ଏସବୁ ପ୍ରତ୍ୟକ୍ଷରେ ବ୍ରାହ୍ମଣବାଦର ଏକଛତ୍ରବାଦକୁ ପ୍ରୋତ୍ସାହନ ଦେବା ଉଦ୍ଦେଶ୍ୟରେ କରାଯାଉଛି । କେନ୍ଦ୍ରରେ ଯଦି କେବେ ଭାଜପା ପୂର୍ଣ୍ଣ କ୍ଷମତା ଦଖଲ କରେ, ତେବେ ଏ ଆଇନ ସବୁଠି ପ୍ରବର୍ତ୍ତିତ ହେବ ଏବଂ ବ୍ରାହ୍ମଣ ଛଡ଼ା ଅନ୍ୟ ସବୁ ବର୍ଗର ଲୋକେ ଦ୍ୱିତୀୟ ଏବଂ ତୃତୀୟ ଶ୍ରେଣୀ ନାଗରିକ ଭାବରେ ପରିଗଣିତ ହେବେ । ଗୁଜରାଟ ଓ ୟୁପିରେ ସେ ପରୀକ୍ଷା ଆରମ୍ଭ ହୋଇଛି ।

ଏବେ ସୁପ୍ରିମକୋର୍ଟ ଯେଉଁ କଥା କହିଲେ, ସେଥିରେ ଭାଜପାର ଏ ନୀତିନିୟମ ବାଧା ପାଇବ । ଦେଶର ସବୁବର୍ଗର ଲୋକେ ଉପରକୁ ଉଠିବାକୁ ଚାହିଁବେ । ଚାହିଁବା ସ୍ୱାଭାବିକ । ମହାତ୍ମା ଗାନ୍ଧି ସେଇ କଥା କହୁଥିଲେ । ''ଜଣକୁ ଯଦି ବ୍ରାହ୍ମଣ କରିପାରିବ କର, କିନ୍ତୁ ବ୍ରାହ୍ମଣକୁ ଶୁଦ୍ର କରନା ।'' ଏହା ହିଁ ଗଣତନ୍ତ୍ରର ନୀତି । ପତିତ ଓ ଦଳିତଙ୍କୁ ଉପରକୁ ଉଠେଇବା ନୀତି ସବୁ ଗଣତନ୍ତ୍ର ଅନୁସରଣ କରନ୍ତି । ସବୁ ମଣିଷ ତାହା ହିଁ ଚାହାନ୍ତି । କେହି ଭାଗ୍ୟ ଦୋଷରୁ ତଳେ ପଡ଼ି ରହିବାକୁ ଚାହେଁ ନାହିଁ । କର୍ମ ଅନୁସାରେ ଫଳ କଥାଟା ଠିକ୍, କିନ୍ତୁ ଭାଗ୍ୟ ଅନୁସାରେ ଫଳ ଠିକ୍ ନୁହେଁ ।

ତେବେ ସେ ଯା'ହେଉ ସୁପ୍ରିମ୍ କୋର୍ଟର ରାୟ ଏବେ ସଂଘ ପରିବାରର ନୀତିନିୟମକୁ ବୁମେରାଂ କରି ଦେଇଛି । ଏବେ ନିମ୍ନବର୍ଗର ସମସ୍ତେ ଏପରିକି ଆଦିବାସୀ ଓ ହରିଜନମାନେ ମଧ୍ୟ ସ୍କୁଲ୍ କଲେଜରୁ ପୁରୋହିତ କର୍ମକର୍ମାଣୀ ପାସ୍ କରି ମନ୍ଦିରରେ ପୂଜାର ଅଧିକାର ଦାବି କରିବେ । ସେମିତି ଏବେ କେରଳ ଓ ୟୁପିରେ ହୋଇଥିଲା ଏବଂ ବ୍ରାହ୍ମଣଗୁଣ୍ଡାମାନେ ତାଙ୍କୁ ପିଟାପିଟି କରି ତଡ଼ିଦେଲେ । କିନ୍ତୁ ସୁପ୍ରିମକୋର୍ଟ ନିୟମ ଅନୁସାରେ ଏ ପୂଜା ପଦ୍ଧତିରେ ଯେ ନିମ୍ନବର୍ଗ କେବଳ ଯୋଗଦେବେ ତା' ନୁହେଁ ମୁସଲମାନ ଓ ଖ୍ରୀଷ୍ଟିୟାନ୍‌ମାନେ ମଧ୍ୟ ପୁରୋହିତ କାମ ପାଇଁ ଦାବି କଲେ ତାଙ୍କୁ ଆଇନ ବାଧା ଦେଇପାରିବ ନାହିଁ ।

ଓଡ଼ିଶାର ବହୁଲୋକ ଏବେ କଲିକତାରେ ବ୍ରାହ୍ମଣ ସାଜି ପୁରୋହିତ କାମକରି ପେଟ ପୋଷୁଛନ୍ତି । ଛୁଟିରେ ଘରକୁ ଆସିଲେ ମଧ୍ୟ ସେମାନେ ପଇତା ଆଉ ଖୋଲନ୍ତି ନାହିଁ । ସେମାନେ କଲିକତାରେ ବ୍ରାହ୍ମଣର ମାନ୍ୟତା ପାଇ ଯାଉଛନ୍ତି । ସେଠାକାର ବାସିନ୍ଦାଙ୍କ ଉଦାରତା ଏହି ବଳରାମ ଗୋଷ୍ଠୀ ବ୍ରାହ୍ମଣଙ୍କ ପାଇଁ କୌଣସି ଅସୁବିଧା ସୃଷ୍ଟି କରେ ନାହିଁ । ମାଲିକମାନେ ସବୁବେଳେ ବ୍ୟସ୍ତ ରହୁଥିବାରୁ ଯଦି କେହି ଜଣେ ତାଙ୍କ ପାଇଁ ଠାକୁରଙ୍କ ପାଖରେ ଅବୁଝା ଓ ଅଶୁଦ୍ଧ ସଂସ୍କୃତରୁ ପଦେ ପାଠକରି ଫୁଲଟିଏ ଚଢ଼େଇ ଦେଲା, ତେବେ ସେଥିରେ ମଧ୍ୟ ମାନସିକ ଶାନ୍ତି ମିଳୁଛି । ଏଥିରେ ବା କିଏ କାହିଁକି ଆପତ୍ତି କରିବ ? ବିଜ୍ଞାନ ଯୁଗରେ ମଣିଷ ଆସ୍ତେ ଆସ୍ତେ ଧର୍ମ ଠାରୁ ଦୂରେଇ ଯାଉଥିଲା ବେଳେ ସୁପ୍ରିମକୋର୍ଟ ସମାଜରୁ ବ୍ରାହ୍ମଣବାଦର ଆଧିପତ୍ୟକୁ ଖର୍ବ କରିଦେବା ଦ୍ୱାରା ଏବେ ଗୋଟିଏ ସୁସ୍ଥ ଓ ସୁନ୍ଦର ସମାଜ ଗଠନ ପାଇଁ ଆଉ କୌଣସି ପ୍ରତିବନ୍ଧକ ରହିଲା ନାହିଁ । ❑

('ସମୟ'- ୫.୧୧.୨୦୦୨)

# ସ୍ଖଳିତ ନେତୃତ୍ୱ

ଏବେ ଆମ ଦେଶରେ ଗୋଟିଏ ନୂଆ ପ୍ରକାର ଲୋକପ୍ରତିନିଧି ଶ୍ରେଣୀ ସୃଷ୍ଟି ହେଇଛି । ଆଗରୁ ଯେଉଁମାନେ ଦେଶସେବା ପରି ମହାନ୍ ତଥା ଅତ୍ୟନ୍ତ କଷ୍ଟକର କାମକୁ ଆସୁଥିଲେ ସେମାନଙ୍କର ପ୍ରଥମରୁ ହିଁ ଦେଶସେବା ପାଇଁ ଆଗ୍ରହ ଥିଲା । ପ୍ରବଳ ନିଷ୍ଠା ଓ ତ୍ୟାଗ ମଧ ଥିଲା । ସେଇ ନିଷ୍ଠା ଓ ତ୍ୟାଗ ପାଇଁ ସ୍କୁଲ କଲେଜ ଛାଡ଼ି ବାହାରକୁ ଚାଲି ଆସୁଥିଲେ ଏବଂ ବେଳେ ବେଳେ ସେମାନେ ଗୃହତ୍ୟାଗୀ ମଧ ହେଇ ଯାଉଥିଲେ । ତ୍ୟାଗଭାବ ସେମାନଙ୍କର ଏତେ ବେଶୀ ଥିଲା ଯେ ଅନାୟାସରେ ସେମାନେ ତାଙ୍କର ସର୍ବସ୍ୱ ଦାନ କରି ଦେଉଥିଲେ । ପଣ୍ଡିତ ମୋତିଲାଲ ନେହେରୁ ତାଙ୍କର ପ୍ରାସାଦୋପମ ଘରଟିକୁ ଦାନ କରି ଦେଇଥିଲେ । କସ୍ତୁରବା ତାଙ୍କର ସମସ୍ତ ଗହଣା ଦାନ କରି ଦେଇଥିଲେ । ଏସବୁ ସ୍ୱାଧୀନତା ପୂର୍ବର କଥା । ଦେଶ ସ୍ୱାଧୀନ ହେଲା ପରେ ମଧ ଚୀନ ଯୁଦ୍ଧ ସମୟରେ ଏବଂ ପାକିସ୍ତାନ ସହିତ ଯୁଦ୍ଧ ସମୟରେ ସେତେବେଳର ନେତାମାନଙ୍କ ଆହ୍ୱାନ କ୍ରମେ ଦେଶର ଜନସାଧାରଣ ମଧ ଅକାତରେ ସେମାନଙ୍କ ଧନସମ୍ପତ୍ତି, ସୁନା ଗହଣା ଦାନ କରିଥିଲେ । ମୋଟ କଥା, ସେତେବେଳେ ନେତାମାନଙ୍କର ଯୋଉ ତ୍ୟାଗ, ନିଷ୍ଠା ଓ ନିଃସ୍ୱାର୍ଥ ଦେଶସେବା ମନୋଭାବ ଥିଲା ତା ଆଗରେ ସାଧାରଣ ଜନତାଙ୍କ ମୁଣ୍ଡ ନଇଁ ଯାଉଥିଲା । ଫଳରେ ସେମାନେ ଯାହା କହୁଥିଲେ ସେଥିରେ ଲୋକମାନେ ଅନୁପ୍ରାଣିତ ହେଇ ଯାଉଥିଲେ । ତେଣୁ ଗାଁ ଗଣ୍ଡାରେ ଆହ୍ୱାନର ସ୍ୱର ଶୁଭିଲା ମାତ୍ରେ ଲୋକମାନେ ଘରଦ୍ୱାର ପିଲା କବିଲା ଛାଡ଼ି ବାହାରି ଆସୁଥିଲେ ।

ଆଜିକାଲି ଆଉ ସେ ନେତୃତ୍ୱ ନାହିଁ । ଏବେ ଯେଉଁମାନେ ସାଧାରଣ ଜନତାର ନେତୃତ୍ୱ ନେଉଛନ୍ତି ବା ଲୋକଙ୍କର ପ୍ରତିନିଧି ହେଉଛନ୍ତି ସେମାନେ ଯଦିଓ ପୂର୍ବ ବର୍ଣ୍ଣିତ ମହାତ୍ମାମାନଙ୍କର ଦାୟାଦ ତଥାପି ସେମାନଙ୍କ ଠାରେ ସେ ସାଧୁତା, ସଚ୍ଚୋଟତା, ତ୍ୟାଗ ଓ ନିଷ୍ଠା ଦେଖିବାକୁ ମିଳେ ନାହିଁ । ସେସବୁ ମହାନ ମାନବୀୟ ଗୁଣ ବ୍ୟତୀତ ସେମାନେ ଗୋଟିଏ ଭିନ୍ନ ପୃଥିବୀର ମଣିଷ । ବରଂ ସେମାନେ ଭିନ୍ନ ଉପାଦାନ ବା ଚରିତ୍ରରେ ଗଢ଼ା । ଆଜିର ଲୋକପ୍ରତିନିଧି ଯେ ସେଇସବୁ ଭଲଗୁଣର ଅଧିକାରୀ ହୋଇଥିବ ତାର କିଛି ମାନେ ନାହିଁ । ବରଂ ସେମାନେ ସବୁ ପ୍ରକାର ଅମାନବୀୟ ଗୁଣରେ ଭରପୁର

ହେଇଥିବା ଆବଶ୍ୟକ । ଜଣେ ଲୋକପ୍ରତିନିଧି ସାଧୁ ହେଇଥିବା ଯେତିକି ଆବଶ୍ୟକ ନୁହେଁ ଅସାଧୁ ହେବା ତା ଠାରୁ ବେଶୀ ଜରୁରୀ । 'ଖ୍ୟାତ' ନ ହେଇ 'କୁଖ୍ୟାତ' ହେଇଥିବା ଏକାନ୍ତ ଆବଶ୍ୟକ । ଭୋଟ ପାଇବାର ଯୋଗ୍ୟତା ନ ଥିଲେ କିଛି ଯାଏ ଆସେ ନାହିଁ, କିନ୍ତୁ ଜବରଦସ୍ତି ଭୋଟ ଛଡ଼େଇ ଆଣିବାର ଯୋଗ୍ୟତା ଥିବା ଦରକାର । ସେଥିପାଇଁ ହତ୍ୟା, ଗୃହଦାହ, ଲୁଣ୍ଠନ, ଅପହରଣ ଓ ଧର୍ଷଣ ଇତ୍ୟାଦିର ଯୋଗ୍ୟତା ଏକାନ୍ତ ଜରୁରୀ । ନିର୍ବାଚନ ରାଜନୀତିରେ ଏବେ ଏଇସବୁ ଗୁଣଗୁଡ଼ିକୁ ବେଶୀ ପ୍ରାଧାନ୍ୟ ଦିଆଯାଉଚି । ସେପ୍ରକାର ଯୋଗ୍ୟତା ଓ ଗୁଣରେ ମହିମା ମଣ୍ଡିତ ଥିଲେ ସଂଗେ ସଂଗେ ଟିକେଟ ମିଳି ଯାଉଛି । ଯିଏ ଲୋକଙ୍କୁ ଭୟଭୀତ କରାଇ ପାରୁଥିବ, ଅସାମାଜିକ ଲୋକଙ୍କ ମାଧ୍ୟମରେ ସାଧାରଣ ଜନତାଙ୍କୁ ଦମନ କରି ପାରୁଥିବ ତା'ରି ମୁଣ୍ଡରେ 'ଲୋକ ପ୍ରତିନିଧି'ର ଶିରପା ବାନ୍ଧି ଦିଆଯାଉଚି ।

ଏବର ରାଜନୀତି ସେଇ ସେତିକିରେ ସନ୍ତୁଷ୍ଟ ହେଲା ନାହିଁ । ସେ ତା ଭିତରେ ଆଉ ଏକ ଶ୍ରେଣୀ ସୃଷ୍ଟିକଲା । ସେ ଦେଖିଲା ଶାସନକୁ ଦଖଲ କରି ରଖିବାକୁ ହେଲେ କେବଳ ମାଫିଆ ଶ୍ରେଣୀ ଯଥେଷ୍ଟ ନୁହେଁ । ତା' ବାହାରେ ଆଉ ଏକ ଶ୍ରେଣୀ ମଧ୍ୟ ଆବଶ୍ୟକ, ଯୋଉମାନେ ଶାସନ ବା ନେତୃତ୍ୱରେ ଥିବେ କିନ୍ତୁ ମୋଟେ ପାଟି ଖୋଲୁ ନ ଥିବେ । ସେମାନେ ସଦାବେଳେ ବଶମ୍ବଦ ହେଇ ରହୁଥିବେ ଏବଂ ମୁଖ୍ୟଙ୍କ ମୁଖନିସୃତ ବାଣୀକୁ ବେଦ ମନେକରି ଶୁଣି ଯାଉଥିବେ । ସେମାନେ ଯେ ଲୋକଙ୍କ ପ୍ରତିନିଧି ଏ କଥା ଭୁଲି ଯାଉଥିବେ । ବରଂ ମୁଖ୍ୟଙ୍କ ଅଧସ୍ତନ ବୋଲି ନିଜକୁ ମନେ କରୁଥିବେ । ଯାହା ଭାବୁଥିବେ ତାକୁ ପ୍ରକାଶ କରୁ ନ ଥିବେ । ଯାହା କହୁଥିବେ ସେସବୁ ତାଙ୍କ ନିଜ କଥା ହେଇ ନ ଥିବ । କହିବାର ଅଧିକାରଟିକୁ ବିକ୍ରି କରିଦେଇଥିବେ । ଚିନ୍ତା କରିବାର ଏବଂ ଭଲମନ୍ଦ ବିଚାର କରିବାର ଅଧିକାରଟିକୁ ହଜେଇ ଦେଇଥିବେ ।

ଏଇ ପ୍ରକାର ବିଶେଷ ଧରଣର ଲୋକ ପ୍ରତିନିଧିମାନଙ୍କ ସଂଖ୍ୟା ଏବେ ରାଜନୀତିରେ ଦ୍ରୁତ ଗତିରେ ବଢୁଛି । ସେମାନେ ଏତେ ନୀରବରେ କାମ କରନ୍ତି ଯେ କେହି ଜାଣି ପାରନ୍ତି ନାହିଁ । ଏକଥା ସମସ୍ତେ ଜାଣିଥିବେ, ଏଇ ଶ୍ରେଣୀର ବିଧାୟକ ଓ ସାଂସଦ ଆମ ଓଡ଼ିଶାରେ କେମିତି କେଜାଣି ଢେର ବେଶୀ । ସେମାନେ କେତେବେଳେ କଅଣ କରନ୍ତି, କୁଆଡ଼େ ଯାଆନ୍ତି ସେ କଥା କେହି ଜାଣନ୍ତି ନାହିଁ । ବର୍ଷଯାକ ସେମାନେ ଲୋକଙ୍କୁ ଦେଖା ଦିଅନ୍ତି ନାହିଁ । ସେମାନେ ଗାଁରେ ନ ଥାଆନ୍ତି କି ସହରରେ ମଧ୍ୟ ନ ଥାଆନ୍ତି । ଲୋକଙ୍କ ପାଖରେ ନ ଥାଆନ୍ତି କି ଅଫିସରେ ମଧ୍ୟ ନ ଥାଆନ୍ତି । ସେମାନେ

ସବୁବେଳେ ଗୁପ୍ତରେ ଥାଆନ୍ତି ଏବଂ ଗୁପ୍ତ କାମମାନ କରୁ ଥାଆନ୍ତି । ସେମାନେ ସବୁ ଲବି ମାଷ୍ଟର । ବଦଳି, ପୋଷ୍ଟିଂ, ଠିକା କାମ, ଆଇନର ହେରଫେର, ଦେଣନେଣ, ବ୍ୟବସାୟ ବାଣିଜ୍ୟ, ବିଦେଶ ଯାତ୍ରା, ଝିଅ ଜୋଇଁଙ୍କ ତତ୍ତ୍ୱାବଧାନ କୋଠା ଓ ପ୍ଲଟ ଖରିଦ ବା ହସ୍ତାନ୍ତର, ଶିଳ୍ପ କାରଖାନାର ପରିଚାଳନା, ମଦଭାଟି ଓ ହୋଟେଲ ପରିଚାଳନା ଏବଂ ଏପରିକି ନିଜ ପାଇଁ ବା ନିଜ ଲୋକ ପାଇଁ ପୁରସ୍କାର ବା ରାଷ୍ଟ୍ରୀୟ ସମ୍ମାନ ଇତ୍ୟାଦି ପାଇଁ ସୁନ୍ଦର ଲବି କରି ଥାଆନ୍ତି । ଉପରେ ସେମାନେ ଅତି ସୁନ୍ଦର ଏବଂ ମାର୍ଜିତ ପରିପାଟି ଓ ରୁଚିର ହେଇ ଥାଆନ୍ତି । ଯାହାକୁ ଭଦ୍ର କୁହାଯାଏ । ବାହାରକୁ ମୋଟେ ନ ଆସି ସେମାନେ ଭିତରେ ଭିତରେ କାମ କରୁ ଥାଆନ୍ତି । ସେମାନଙ୍କ ଭିତରୁ ଆଉ କେହି କେହି ଗେସ କନେକସନ ଇତ୍ୟାଦି ମଧ୍ୟ ବିକ୍ରି କରିବାକୁ ପଛାନ୍ତି ନାହିଁ । କ୍ଷମତାର ଅପବ୍ୟବହାର ସେମାନଙ୍କର ପ୍ରଧାନ ବ୍ୟବସାୟ । ସେମାନେ ନାଁକୁ ମାତ୍ର ଲୋକସଭା, ରାଜ୍ୟସଭା ବା ବିଧାନସଭାକୁ ଯାଆନ୍ତି । ତାପରେ ଦସ୍ତଖତଟିଏ କରି ଦେଇ ଚାଲି ଆସନ୍ତି ଏବଂ କ୍ଷମତାର ଅର୍ଗଳି ଭିତରେ ବେଗ୍/ବ୍ରିଫକେଶଟିଏ ଧରି ବୁଲୁ ଥାଆନ୍ତି ।

ଏ ସବୁର କାରଣ ହେଉଛି, ଲୋଭ ଏପରି ଏକ ଶକ୍ତିଶାଳୀ ବସ୍ତୁ ଯାହା ଯେକୌଣସି ଲୋକର ଶରୀର ଭିତରକୁ ଯାଇ ରାଜତ୍ୱ ବିସ୍ତାର କରିଦିଏ । ସେ ଲୋକ ନାରୀ ହେଉ ବା ପୁରୁଷ ହେଉ । ଶିଳ୍ପପତିଙ୍କ ସ୍ତ୍ରୀ ହେଉ ବା ବଣ ଜଙ୍ଗଲରେ ଥିବା ଆଦିବାସୀଙ୍କ ନେତ୍ରୀ ହେଉ, ସାଧୁ ସନ୍ନ୍ୟାସୀ ହେଉ ବା ରାଜପୁତ୍ର ହେଉ । ଲୋଭ ସମସ୍ତଙ୍କୁ ବଶ କରିପାରେ । ଆଶ୍ଚର୍ଯ୍ୟ, ଏମାନେ ମନ୍ତ୍ରୀପଦ ମୋଟେ ଚାହାନ୍ତି ନାହିଁ । ଏବେ ଆମ ରାଜନୀତିର ସମାଜରେ ଏଇ ଗୁପ୍ତ ଲୋକପ୍ରତିନିଧିମାନଙ୍କର ଡିମାଣ୍ଡ ବଢୁଛି । ଏମାନେ ସବୁ High Profile (ହାଇ ପ୍ରୋଫାଇଲ)ର ଲୋକପ୍ରତିନିଧି । ଗାଁକୁ ଯାଇ ଲୋକଙ୍କ ସହିତ ମିଶିବାକୁ ଏମାନେ ମୋଟେ ଭଲ ପାଆନ୍ତି ନାହିଁ । ଛୋଟ ଛୋଟ ଅଫିସର, କର୍ମଚାରୀ, ଶ୍ରମିକ ଏପରିକି ଜୁନିଅର ମନ୍ତ୍ରୀ, ଉପମନ୍ତ୍ରୀଙ୍କ ସହିତ କଥାବାର୍ତ୍ତା ହେବାକୁ ମଧ୍ୟ ଭଲ ପାଆନ୍ତି ନାହିଁ । ସାଧାରଣ ଜନତାଙ୍କ ପାଖକୁ ଯିବାର ପ୍ରଶ୍ନ ଉଠୁନାହିଁ । ଜଣେ ଜଣେ ଏମିତି ଅଛନ୍ତି ସେମାନେ ନ୍ୟାୟାଳୟର ଉଚ୍ଚତର ବା ଉଚ୍ଚତମ ମହଲରୁ ତଳକୁ ଆସି କାହା ସହତ କଥା ହେବାକୁ ନିଜର ଆତ୍ମମର୍ଯ୍ୟାଦା ପ୍ରତି ଆଞ୍ଚ ଆଣେ ବୋଲି ମନେକରନ୍ତି । ଏମାନେ ସମସ୍ତେ ବିଶିଷ୍ଟ ଶିଳ୍ପପତି, ଅବସରପ୍ରାପ୍ତ ବୁରୋକ୍ରାଟ, ଅବସରପ୍ରାପ୍ତ ସେନାଧ୍ୟକ୍ଷ, ଆଇନ ବ୍ୟବସାୟୀ, ଅବସରପ୍ରାପ୍ତ ବିଚାରପତି, ବିଶିଷ୍ଟ ସାମ୍ବାଦିକ, ବିଶିଷ୍ଟ ଶିକ୍ଷାବିତ, ଶୀତତାପ ନିୟନ୍ତ୍ରିତ କୋଠରୀରେ ଜୀବନ ବିତାଇଥିବା

ଏବଂ ନିଜ ରୂପ ଛଡ଼ା ଆଉ କାହାରି ଯତ୍ନ ନେଉ ନ ଥିବା ତଥା ଆୟକର ଫାଙ୍କୁଥିବା ଚିତ୍ର ତାରକା ଏବଂ ଆଉ କିଛି ଅବସରପ୍ରାପ୍ତ କୂଟନୀତିଜ୍ଞ । ଏମାନେ ତାଙ୍କ ଜୀବନକାଳ ଭିତରେ କେବେ ବି ଗାଁକୁ ଯାଇ ନ ଥିବେ କି ଗାଁ ଲୋକଙ୍କ ସହିତ ସମ୍ପର୍କ ରଖି ନ ଥିବେ । ସେ ସୁଯୋଗ ମୋଟେ ସେମାନଙ୍କୁ ମିଳି ନ ଥିବ, ଅଭ୍ୟସ୍ତ ବି ନ ଥିବେ । ସେମାନେ ଷ୍ଟାର ହୋଟେଲ ଛଡ଼ା ଆଉ କିଛି ଦେଖି ନ ଥିବେ । ଉଡାଜାହାଜ ଛଡା ଅନ୍ୟ ଯାନରେ ଯାତ୍ରାର ଅଭିଜ୍ଞତା ହାସଲ କରି ନ ଥିବେ ଏବଂ କଣ୍ଟିନେଣ୍ଟାଲ ଡିସ ଛଡା ଆଉ କୌଣସି ସ୍ୱାଦ ପାଇ ନ ଥିବେ । ଆଉ ଗୋଟାଏ ବିଶେଷଗୁଣ ଏମାନଙ୍କର ହେଲା, ସଂଧ୍ୟା ହେଲା ମାତ୍ରେ ଏମାନେ ଦର୍ଶନ ଦିଅନ୍ତି ଫରେନ ଆମ୍ବାସୀରେ ନଚେତ୍ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ହୋଟେଲରେ ଯେଉଁଠି ଅପେକ୍ଷା କରି ଥାଆନ୍ତି ଚମ୍ପାକଢ଼ିର ଆଙ୍ଗୁଳିମାନେ, ଶାମ୍ପକା ଓ ସାମ୍ପେନମାନେ । ବିଳାସ ବ୍ୟସନ ଛଡ଼ା ଏମାନେ ଆଉ କିଛି ଜାଣି ନ ଥାଆନ୍ତି । ଏମାନଙ୍କ ଭିତରୁ କିଛ ପ୍ରଚଣ୍ଡ ଭାଷଣପ୍ରିୟ ଥିଲାବେଳେ ଆଉ କିଛି ଥାଆନ୍ତି ଯେଉଁମାନଙ୍କୁ ସଦନ ଭିତରେ କି ବାହାରେ କେବେ ପାଟି ଖୋଲିଥିବାର କେହି ଦେଖିନାହିଁ ।

ଏ ସମସ୍ତଙ୍କ ବ୍ୟତୀତ ଆଉ କିଛି ଥାଆନ୍ତି ଯେଉଁମାନଙ୍କ ସ୍ୱପ୍ନ, ଶୟନ ଓ ଜାଗରଣରେ ଥାଆନ୍ତି 'ଲୋକ' । ତାଙ୍କ ଚାରିପାଖରେ ଘୂରି ବୁଲୁଥିବା ମଣିଷମାନେ । ସେମାନଙ୍କୁ ଛାଡି ଏହି ନେତାମାନେ ଆଉ କୁଆଡ଼େ ଯାଆନ୍ତି ନାହିଁ । ସେମାନେ ଯାହା ପାଆନ୍ତି ସବୁ ଦାନ କରି ଦିଅନ୍ତି । ନିଜ ପାଇଁ ବଗଡ଼ା ଭାତ ମୁଠାଏ କେବଳ ରଖି ଥାଆନ୍ତି । କିନ୍ତୁ ଏମାନଙ୍କ ସଂଖ୍ୟା ଅନେକ କମ । ଆସ୍ତେ ଆସ୍ତେ ସେମାନଙ୍କ ସଂଖ୍ୟା କମିବାରେ ଲାଗିଛି । ଏଇମାନେ ହିଁ ଏବେ ସଂଖ୍ୟାଲଘୁ । ଘରେ ଓ ବାହାରେ । ମୂଲ୍ୟବୋଧ, ମାନବିକ ବିଚାରର ସ୍ଖଳନ ଏବେ ଏତେ ଦ୍ରୁତ ହେଉଛି ଯେ, ଭୟ ହେଲାଣି, ଖୁବ ଶୀଘ୍ର ହୁଏତ ଦିନ ଆସିବ ଯେତେବେଳେ ମଣିଷକୁ ମଣିଷ ବୋଲି ବିଚାରିବାକୁ କେହି ନ ଥିବ । ସମସ୍ତେ ଗୋଟାଏ ଭୟ ଓ ଅସହନୀୟତା ଭିତରେ ଛନ୍ଦି ହୋଇ ପଡ଼ିଥିବେ ।

❑

('ସମାଜ'- ୨୯.୧୧.୨୦୦୨)

# ଏବେ ହନୁମାନ ବିପଦରେ

ଘଟଣାଟି ଘଟିଛି ରାଞ୍ଚିରେ । ରାଞ୍ଚି ରେଳଷ୍ଟେସନ ଭିତରେ ହନୁମାନ ମନ୍ଦିରଟିଏ ତିଆରି ହୋଇଥିଲା । ତାହା କୁଆଡ଼େ ଅନଧିକାର ଭାବରେ ତିଆରି ହୋଇଥିବାରୁ ରେଳବାଇ କର୍ତ୍ତୃପକ୍ଷ ମନ୍ଦିର ଭାଙ୍ଗିଦେବା ପାଇଁ ନୋଟିସ ଜାରି କରିଥିଲେ । କିନ୍ତୁ ମନ୍ଦିର କର୍ତ୍ତୃପକ୍ଷ ସେଥିରେ କର୍ଣ୍ଣପାତ ନ କରିବାରୁ ରେଳବାଇ ଏବେ ରାଞ୍ଚି ହାଇକୋର୍ଟରେ ଏକ ମାମଲା ଦାଏର କରିଥିଲେ । ସେ ମାମଲାର ବିଚାର କରି ଏବେ ହାଇକୋର୍ଟ ଯୋଉ ରାୟ ଦେଇଛନ୍ତି ସେଥିରେ ସାରା ରାଜ୍ୟରେ ଚହଳ ସୃଷ୍ଟି ହେଇଛି । ହାଇକୋର୍ଟ ତାଙ୍କ ରାୟରେ କହିଛନ୍ତି ଯେ ମନ୍ଦିରଟିକୁ ରେଳବାଇ ଅନ୍ୟ ଗୋଟିଏ ଜାଗା ଦେଉ । ଏଥିପାଇଁ ଉଭୟ ପକ୍ଷ ଭିତରେ ଗୋଟିଏ ଶାନ୍ତିପୂର୍ଣ୍ଣ ସମାଧାନ ହେଉ ଏବଂ ଯଦି ଏହାର ସମାଧାନ ହେଇ ନ ପାରେ, ତେବେ ସମ୍ବାଦରେ ଏକଥା ମଧ୍ୟ କୁହାଯାଇଛି ଯେ, ''ସେଠି ବନ୍ଧୁକ ଓ ଗୁଳି ବ୍ୟବହାର କରା ଯାଇପାରେ ।'' ହାଇକୋର୍ଟର ମାନ୍ୟବର ମୁଖ୍ୟ ବିଚାରପତି ଭି.କେ. ଗୁପ୍ତ ଏବଂ ବିଚାରପତି ହରିଶଙ୍କର ପ୍ରସାଦଙ୍କ ଦ୍ୱାରା ଗଠିତ ଖଣ୍ଡପୀଠ ଏକଥା ମଧ୍ୟ କହିଛି ଯେ, ''If this problem is not shorted out, then every one will construct temples on roads and the administration will have to face the music. Sentiments are alright but rule is rule.'' କୋର୍ଟ ତାଙ୍କ ରାୟରେ ଆହୁରି ମଧ୍ୟ କହିଛନ୍ତି ଯେ ରେଳବାଇ ପରିସର ମଧ୍ୟରୁ ମନ୍ଦିର ଓ ତା'ର ପାଚେରିକୁ ହଟାଇ ଦିଆ ନ ଗଲେ ସେଠି ଷ୍ଟେସନର ସଂପ୍ରସାରଣ ହୋଇ ପାରିବ ନାହିଁ କିମ୍ବା ତା'ର ଶ୍ରୀବୃଦ୍ଧି ମଧ୍ୟ କରିହେବ ନାହିଁ । ମାନ୍ୟବର କୋର୍ଟ ଷ୍ଟେସନ କର୍ତ୍ତୃପକ୍ଷଙ୍କୁ ପନ୍ଦର ଦିନ ଭିତରେ ଏହିସବୁ କାର୍ଯ୍ୟକ୍ରମ ହାତକୁ ନେବାକୁ କହିଛନ୍ତି ।

ଏହି ରାୟ ପ୍ରକାଶ ପାଇଲା ପରେ କେବଳ ରାଞ୍ଚି ନୁହେଁ ସମଗ୍ର ଝାଡ଼ଖଣ୍ଡ ଓ ତା'ର ପାଖାପାଖି ବିହାର ଅଞ୍ଚଳରେ ଥିବା ବିଶ୍ୱହିନ୍ଦୁ ପରିଷଦ ଓ ଶିବସେନା କର୍ମୀମାନଙ୍କ ମଧ୍ୟରେ ଆଲୋଡ଼ନ ସୃଷ୍ଟି ହେଇଛି । ବିଶ୍ୱହିନ୍ଦୁ ପରିଷଦର ଜଣେ କର୍ମକର୍ତ୍ତା ଏଥିରେ

ଘୋର ପ୍ରତିକ୍ରିୟା ପ୍ରକାଶ କରି କହିଛନ୍ତି ଯେ, ହନୁମାନ ମନ୍ଦିର ନିର୍ମାଣ ଏକ ହିନ୍ଦୁ ଭାବଧାରା ହେଇଥିବାରୁ ତାକୁ ଆଘାତ ଦେବା ଉଚିତ ନୁହେଁ । ତେଣୁ ହାଇକୋର୍ଟ ତା'ର ପୁନର୍ବିଚାର କରନ୍ତୁ । ତାଙ୍କ ମତରେ ସେ ମନ୍ଦିର ଆଜିକୁ ୨୫ ବର୍ଷ ହେଲା ତିଆରି ହେଲାଣି । ଆଜିଯାଏ ରେଳ କର୍ତ୍ତୃପକ୍ଷ ଥିଲେ କେଉଁଠି ? ସେ କହିଲେ ମନ୍ଦିର ଭାଙ୍ଗିବାର ପ୍ରସ୍ତାବକୁ ଆମେ ସମସ୍ତ ଶକ୍ତି ଲଗେଇ ବିରୋଧ କରିବୁଁ ?

ଆମ ସମାଜରେ ଆଉ କିଛି ଲୋକ ଥାଆନ୍ତି ଯେଉଁମାନେ ମନ୍ଦିର କଥା ଉଠିଲେ ସଂଗେ ସଂଗେ ଚର୍ଚ୍ଚ ଓ ମସ୍‌ଜିଦ କଥା କହି ଥାଆନ୍ତି । ରାଞ୍ଚିରେ ମଧ୍ୟ ସେଇ କଥା ହେଲା । ଦଳେ ରାଜନେତା କହିଲେଣି ଯଦି ହନୁମାନ ମନ୍ଦିର ଉଠିଯିବ ତେବେ ଚର୍ଚ୍ଚ ଓ ମସଜିଦ୍‌ମାନ ଯେଉଁଠି ଅଛି ତାକୁ ମଧ୍ୟ ଉଠାଯାଉ ।

ଯୁକ୍ତି ପ୍ରତିଯୁକ୍ତିର ସୀମା ନ ଥାଏ । ହନୁମାନ ମନ୍ଦିର ସେଠୁ ଉଠିବ କି ନା ଏବଂ ରେଳବାଇ କର୍ତ୍ତୃପକ୍ଷ ଷ୍ଟେସନର ସଂପ୍ରସାରଣ କରିପାରିବେ କି ନା ସେକଥା ଏବେ ଜଳଜଳ ଦେଖାଯାଉଛି । କିନ୍ତୁ ଗୋଟିଏ ସାଧାରଣ ପ୍ରଶ୍ନ ଉଠେ ମନ୍ଦିର ଗୋଟିଏ ରାତିରେ ତିଆରି ହେଇ ନ ଥିବ । ତେବେ ଆରମ୍ଭରୁ କର୍ତ୍ତୃପକ୍ଷ କରୁଥିଲେ କଅଣ ? ମୋର ତ ଯେତେଦୂର ମନେହୁଏ ଉତ୍ତର ଭାରତରେ ଏପରି କୌଣସି ରେଳଷ୍ଟେସନ ନାହିଁ ଯେଉଁଠି ମନ୍ଦିର ନାହିଁ । ପାଟଣା ରେଳଷ୍ଟେସନକୁ ଲାଗି ଯୋଉ ବିରାଟ ମନ୍ଦିରଟିଏ ତିଆରି ହୋଇଛି ତାର ମୁଖ୍ୟ କର୍ମକର୍ତ୍ତା ଥିଲେ ଓ ଅଛନ୍ତି ଜଣେ ଆଇପିଏସ୍ ଅଫିସର । ସେ ତାଙ୍କ ଜୀବନକାଳ ଯାକ କେବଳ ରାଜନୀତି କରି ବିତାଇ ଦେଲେ । ଅଯୋଧ୍ୟାରେ ମନ୍ଦିର ତିଆରିରେ ଯୋଉ ବିବାଦ ଉପୁଜିଛି ସେଥିରେ ସେ ଭାରତ ସରକାର ଓ ସାଧୁମାନଙ୍କ ଭିତରେ ମଧ୍ୟସ୍ଥତା କରନ୍ତି । ତେଣୁ ପାଟଣା ବାହାରକୁ ତାଙ୍କର ବଦଳି ହେଲେ ଚନ୍ଦ୍ରଶେଖର ମଧ୍ୟ ପ୍ରଧାନମନ୍ତ୍ରୀଙ୍କୁ ଫୋନ୍ କରନ୍ତି । ଏଇଟା ଅବଶ୍ୟ ଜଣାକଥା ଯେ କିଛି ବୁରୋକ୍ରାଟ ଥାଆନ୍ତି ଯେଉଁମାନେ ସରକାରୀ କାମ ଅପେକ୍ଷା ରାଜନୀତି କରିବାକୁ ବେଶୀ ଭଲ ପାଆନ୍ତି । ସେମାନେ ଚାକିରି ପରେ ନିଜ ସ୍ୱାର୍ଥକୁ ଭଲ ଭାବରେ ସୁରକ୍ଷିତ କରିପାରନ୍ତି । ଏବେ ଦେଖାଯାଉଚି ଆମ ଦେଶରେ ମନ୍ଦିର ଯେତିକି ବଢୁଛି ମଣିଷର ଅମାନବିକତା ସେତିକି ବଢୁଛି । ହିଂସା, ଦ୍ୱେଷ, ପରଶ୍ରୀକାତରତା ଓ ଅସହିଷ୍ଣୁତା ମନ୍ଦିରକୁ ଅତିକ୍ରମ କରି ଅତି ଦ୍ରୁତଗତିରେ ବଢି ଚାଲିଛି । ଗୁଜରାଟରେ ଯୋଉ ହିଂସାକାଣ୍ଡ ହେଲା ସେଥିରେ ଦେଖାଗଲା ଯେ ମଣିଷ ମଣିଷକୁ ଜିଅନ୍ତା ପୋଡ଼ିଲା ଏବଂ ସେଠି ଯେତେ

ମସ୍‌ଜିଦ ଓ କବରସ୍ଥାନ ଥିଲା ତାକୁ ଭାଙ୍ଗି ଦିଆଗଲା । ଯୋଉମାନେ ଧର୍ମକୁ ଆଶ୍ରା କରୁଛନ୍ତି ବୋଲି କହୁଛନ୍ତି ସେମାନଙ୍କ ଉପରେ ପ୍ରଥମେ ଧର୍ମାନ୍ଧତା ସବାର ହେଉଚି । ତା'ପରେ ତାଙ୍କ ଭିତରେ ପାଶବିକତା ହୁ ହୁ ବଢ଼ି ଯାଉଛି । ସେ ଆଉ ମଣିଷ ହେଇ ରହୁନାହିଁ । କାରଣ ମଣିଷର ନ୍ୟୂନତମ ମୂଲ୍ୟବୋଧଗୁଡ଼ିକ ତା'ଠୁ ଦୂରେଇ ଯାଉଛି । ତେବେ ମନ୍ଦିର ଆମର କୋଉ କାମରେ ଆସୁଛି ?

ଦ୍ୱିତୀୟ ପ୍ରଶ୍ନଟି ହେଲା ଏବେ କେତେ ବର୍ଷ ହେଲା ଦେଖାଯାଉଛି ରାତିକ ଭିତରେ ଯେ କୌଣସି ସର୍ବସାଧାରଣ ଜାଗାରେ ମନ୍ଦିର ନିର୍ମାଣ ହେଇଯାଉଛି । ସେଇ ଜାଗାଟା ମାର୍କେଟ, ବସଷ୍ଟାଣ୍ଡ, ରେଳ ଷ୍ଟେସନ, ରାସ୍ତା, ସ୍କୁଲ, କଲେଜ, ହସ୍‌ପିଟାଲ କିମ୍ବା ଯେ କୌଣସି ଅଫିସ୍ ହେଇଥାଉନା କାହିଁକି ମନ୍ଦିର ନିର୍ମାଣ ପାଇଁ ବେଶୀ କିଛି ଦରକାର ହୁଏ ନାହିଁ । ପ୍ରଥମ ଦିନ ଟିକିଏ ସିନ୍ଦୂର ଓ ତା' ପରଦିନ ଖଣ୍ଡେ ପଥର ଓ ହାତେ ନାଲିକନା । ବାସ ତା' ପରେ ରାସ୍ତା ସଫା ହେଇଯାଏ । ରାସ୍ତାଘାଟ, ଅଫିସ୍ ବା ରେଳ ଷ୍ଟେସନରେ ମନ୍ଦିର କରିବା ଦ୍ୱାରା ଗୋଟାଏ କଥା ସ୍ପଷ୍ଟ ହେଉଛି ଯେ ମଣିଷ ଆଉ ମନ୍ଦିର ପାଖକୁ ଯିବାକୁ ଚାହୁଁନାହିଁ । ମନ୍ଦିରଟା ତା' ପାଖକୁ ଆସିଯାଉ । ଦୂରକୁ ଯାଇ ପୂଜା କରିବାକୁ ବେଳ କାହିଁ ? ଦ୍ୱିତୀୟ କଥାଟା ହେଲା ଥୋକେ ଚାହାନ୍ତି ମନ୍ଦିର ଏକ ବ୍ୟବସାୟ କେନ୍ଦ୍ର ହେଉ । ଭଲ ରୋଜଗାର ହେଉଛି ଏଥିରୁ । ବିନା ପୁଞ୍ଜିରେ ସୁନ୍ଦର ଓ ନିରାପଦ ବ୍ୟବସାୟ । ଗୋଟାଏ କୁଟୀରଶିଳ୍ପ । ଯୋଉ ଦିନଠୁ ମଣିଷ ଦେବତାକୁ ବସେଇ ବ୍ୟବସାୟ ଆରମ୍ଭ କଲା ସେଇଦିନଠୁ ମଣିଷ ମନରୁ ଧର୍ମଭାବ ଯାଇ ପାପାଚାର ବଢ଼ିବାକୁ ଲାଗିଲା । ତାକୁ ରାଜନୀତି ବ୍ୟବହାର କଲା ଭୋଟ ବ୍ୟାଙ୍କ ପାଇଁ ।

ଫଳରେ ଏଇଆ ହେଲା ଯେ ଏକବିଂଶ ଶତାବ୍ଦୀରେ ଯୋଉ ନୂଆ ସଭ୍ୟତା ଆସିଲା ସେଥିରେ ଧର୍ମ ଏକ ବାଧକ ହେଇ ଛିଡ଼ା ହେଲା । ଧର୍ମ ଓ ସଭ୍ୟତାର ପ୍ରଗତି ଭିତରେ ଦ୍ୱନ୍ଦ୍ୱ ଆରମ୍ଭ ହେଲା । ଧର୍ମ ସବୁବେଳେ ପ୍ରଗତି ଆଗରେ ବାଟ ଓଗାଳି ଛିଡ଼ା ହେଲା । ମନ୍ଦିର ଅଛି ତେଣୁ ରେଳ ଷ୍ଟେସନର ସଂପ୍ରାସାରଣ ହେବ ନାହିଁ । ମନ୍ଦିର ଅଛି ତେଣୁ ରାସ୍ତାର ପ୍ରଶସ୍ତିକରଣ ସମ୍ଭବ ନୁହେଁ । ମନ୍ଦିର ଅଛି ତେଣୁ ସ୍କୁଲ କଲେଜ ହେଇ ପାରିବନି । ମନ୍ଦିର ଅଛି ତେଣୁ ଡାକ୍ତରଖାନାର ସଂପ୍ରସାରଣ ହେବ ନାହିଁ । ଏପରିକି ମନ୍ଦିର ଅଛି ବୋଲି କଳକାରଖାନାର ସଂପ୍ରସାରଣ ହେଇପାରୁନାହିଁ । କେନାଲ ଖୋଳା ହେଇପାରୁ ନାହିଁ । ଗାଁରେ ରାସ୍ତା ତିଆରି ହେଇପାରୁ ନାହିଁ । କୋଲକାତା ବିମାନ

ବନ୍ଦରର ପାଚେରି ପାଖରେ ପୁରୁଣା ପରିତ୍ୟକ୍ତ ମସ୍‌ଜିଦ୍‌ଟିଏ ଅଛି ବୋଲି ତା'ର ସଂପ୍ରାସାରଣ (ଯାହା ପାଇଁ ଆନ୍ତର୍ଜାତିକ ବିମାନ ବନ୍ଦର ଅଥରିଟି ବାରମ୍ବାର ଚାପ ଦେଉଛି ଏବଂ ବିଶ୍ୱ ବ୍ୟାଙ୍କ ଅର୍ଥ ଦେଉଛି) ମଧ୍ୟ ଦେଇପାରୁ ନାହିଁ । କେହି ଜଣେ ମଜା କରିବା ଉଦ୍ଦେଶ୍ୟରେ କହୁଥିଲେ ଏଥିପାଇଁ ବୁଦ୍ଧଦେବ ଭଟ୍ଟାଚାର୍ଯ୍ୟ କୁଆଡ଼େ ଆଡଭାନୀଙ୍କୁ କହିଥିଲେ ''ଆପଣମାନଙ୍କର ଅଭିଜ୍ଞତା ଅଛି । ସେ ମସଜିଦ୍‌ଟାକୁ ଭାଙ୍ଗି ଦିଅନ୍ତୁ ।''

ତେବେ ସେ ଯାହାହେଉ, ଏହି ଲେଖକ ଜାଣେଁ ବହୁ କାରଖାନାର ସଂପ୍ରାସାରଣ ଏହି ମନ୍ଦିର ଯୋଗୁଁ ଅଟକି ଯାଇଛି ଏବଂ ବହୁ କାରଖାନାର ଭିତରେ ଓ ବାହାରେ ଏତେ ମନ୍ଦିର ତିଆରି ହେଇଛି ଯେ ସେଥିରେ କାରଖାନାର ନ୍ୟାୟ ଓ ଅନ୍ୟାୟ ଉପାୟରେ ପ୍ରଭୂତ ଅର୍ଥ ଓ ଉପକରଣ ବ୍ୟୟିତ ହେବା ସଂଗେ ସଂଗେ ଶ୍ରମିକମାନେ ମଧ୍ୟ କାମ ଛାଡ଼ି ଯାଇ ସେଠି ସମୟ ବିତାନ୍ତି । ଫଳରେ ଶ୍ରମ ସମୟ ନଷ୍ଟ ହେଉଛି ଏବଂ ଉତ୍ପାଦନ ସାଂଘାତିକ ଭାବେ ବ୍ୟାହତ ହେଉଚି । ଏ ସବୁ ସବୁଠୁ ବେଶୀ ହେଉଛି ପବ୍ଲିକ୍ ସେକ୍ଟରରେ । ମୁଁ ଅନେକଗୁଡ଼ିଏ କାରଖାନା ଦେଖିଛି ଯୋଉଠି ପୂଜାପାର୍ବଣ ଓ ମନ୍ଦିର ତିଆରିରେ କମ୍ପାନୀମାନେ ଅନେକ ବେଶୀ ଖର୍ଚ୍ଚ କରନ୍ତି ସେ ସବୁ ସେମାନଙ୍କ ଉତ୍ପାଦନର ଗୋଟାଏ ବିରାଟ ଅଂଶ । ଏ ସବୁ ନା କାରଖାନାର ଉପକାରରେ ଲାଗେ ନା ବିଶାଳ ଜନସମୂହର କାମରେ ଲାଗେ । ଅଥଚ ଏଇମାନଙ୍କ ବ୍ୟୟରୁ କାରଖାନା ତିଆରି ହେଇଥାଏ । ମୁଁ ଆହୁରି ଅନେକ କାରଖାନାକୁ ଜାଣେ ଯେଉଁମାନଙ୍କ ଅର୍ଥରେ ଦଶ-ପନ୍ଦର ବର୍ଷ ତଳେ ତିଆରି ହେଇଥିବା ଛୋଟ ମନ୍ଦିରଟି ଏବେ ସଂପ୍ରାସିତ ହେଇ ବିଶାଳରୂପ ଧାରଣ କରିଥିବା ବେଳେ ସେ କାରଖାନାରେ ତାଲା ଝୁଲିଲାଣି । ଯୋଉ ଶ୍ରମିକଟି ସେତେବେଳେ ମନ୍ଦିରଟି ତିଆରି କରିଥିଲା, ତା'ର ପରିବାର ଏବେ ଭୋକ ଉପବାସରେ ସଢ଼ୁଛି । ଏଥିରେ ମୁଁ ଏ କଥା କହୁନାହିଁ ଯେ କେବଳ ମନ୍ଦିର ନିର୍ମାଣ ଦ୍ୱାରା କାରଖାନା କ୍ଷତିଗ୍ରସ୍ତ ହେଲା । ତା' ପଛରେ ଆହୁରି ଅନେକ କାରଣ ଅଛି । କିନ୍ତୁ ଗୋଟିଏ କଥା ଏବେ ସ୍ପଷ୍ଟ ହେଇ ଯାଇଛି ଯେ ଯୋଉ ରାଜନେତାମାନେ ସେତେବେଳେ ଶ୍ରମିକକୁ ମନ୍ଦିର ତିଆରି ପାଇଁ ଉସ୍‌କାଉଥିଲେ କାରଖାନା ବନ୍ଦ ହେଲା ପରେ ସେମାନେ ମୋଟେ ସେମାନଙ୍କ ପାଖ ମାଡ଼ନ୍ତି ନାହିଁ । କଥାଟାକୁ କେହି ଓଲଟା ବୁଝିବା ଉଚିତ ନୁହେଁ । ମୋର କହିବାର କଥା ମନ୍ଦିର ଭାବଧାରାଟା କେମିତି ଆମର ସମଗ୍ର ଜନଜୀବନକୁ ନଷ୍ଟଭ୍ରଷ୍ଟ କରି ଦେଉଛି ତାକୁ ଲକ୍ଷ କରାଯାଉ । ଏଇଥିରୁ ମଧ୍ୟ ଅନ୍ଧବିଶ୍ୱାସ, କୁସଂସ୍କାର ଓ ଭାଗ୍ୟବାଦର ସୃଷ୍ଟି ।

ନାଲ୍‌କୋର କର୍ମଚାରୀଟି କିପରି ତା'ର ସମଗ୍ର ପରିବାରକୁ ହତ୍ୟା କରିଥିଲା ସେ କଥା ସମସ୍ତେ ଜାଣନ୍ତି । ନରହତ୍ୟା, ଶିଶୁହତ୍ୟା ସବୁ ଏଇଥିରୁ ସୃଷ୍ଟି ହୁଏ ।

ଆମ ରାଉରକେଲା ଏବେ ମନ୍ଦିର ସପକ୍ଷ ଓ ବିପକ୍ଷ ଗୋଷ୍ଠୀକୁ ନେଇ ବେଶ ସରଗରମ ହେଇ ଉଠିଛି । ଯୋଉ ରାଉରକେଲା ଦିନେ ଶିଳ୍ପର କୋଣାର୍କ ତିଆରି କରି ନାଁ କରିଥିଲା ସେଇ ରାଉରକେଲା ଏବେ ମନ୍ଦିର ତିଆରିର ଅଧିକାର ପାଇଁ ଲଢ଼େଇ କରୁଛି । କାରଖାନା ରସାତଳକୁ ଗଲାଣି । ହଜାର ହଜାର ସଂଖ୍ୟାରେ ବେକାର । ତଥାପି ମନ୍ଦିର ପାଇଁ ମଣିଷ ଅହରହ ବ୍ୟସ୍ତ । ରାଉରକେଲାର ଖ୍ୟାତି ଏଥିପାଇଁ ଅନେକ ଊର୍ଦ୍ଧ୍ୱରେ, ଏଠି ଜଣେ ନାରୀ ସରକାରୀ ଓ ବେସରକାରୀ ଜମି ହଡ଼ପ କରିବା ଉଦ୍ଦେଶ୍ୟରେ ରାତି ଅଧରେ ମୂର୍ତ୍ତିଟିଏ ଥାପିଦେଇ ଅଧିଆ ପଡ଼ି ଯାଆନ୍ତି ଏବଂ କହନ୍ତି ମୋତେ ଠାକୁର ସ୍ୱପ୍ନରେ କହିଛନ୍ତି ଏଠି ମନ୍ଦିର କରିବା ପାଇଁ ।'' ପ୍ରଶାସନର ମୁଣ୍ଡବିନ୍ଧା ଆରମ୍ଭ ହେବା ବେଳକୁ ରାଜନୀତିର ପଶାଖେଳ ଆରମ୍ଭ ହୁଏ ।

ଆମେ ଭ୍ରଷ୍ଟାଚାର ଓ ଭାଣ୍ଡାମିର ଶୀର୍ଷ ସ୍ଥାନରେ ପହଞ୍ଚିଗଲୁଣି । ଏ ସବୁରି ମୂଳରେ ଅଛି ଆମର 'ଭୋଟ ବ୍ୟାଙ୍କ ସଂସ୍କୃତି' । ଆମ ଗଣତନ୍ତ୍ରରେ ଏଇଟା ଗୋଟାଏ ଗୋଖର ସାପ । ତାକୁ ପାଳିପୋଷି ବଢ଼େଇଲେ ସେ ଦିନେ ନିଶ୍ଚୟ ଆମକୁ ଚୋଟ ମାରିବ -ଏଥିରେ ସନ୍ଦେହ ନାହିଁ ।

❑

('ସମୟ'- ୨୧.୯.୨୦୦୨)

# ଧର୍ମ ମଣିଷକୁ ପଶୁ କରେ

ଧର୍ମ କଅଣ ମଣିଷକୁ ପଶୁରେ ପରିଣତ କରିଦିଏ ? ମଣିଷକୁ ଅଧିକ ସଂସ୍କୃତ, ଅଧିକ ସୁନ୍ଦର କରିବା ପରିବର୍ତ୍ତେ ତାକୁ ପଶୁରେ ରୂପାନ୍ତରିତ କରି ତା' ଭିତରେ ଜାନ୍ତବ କ୍ଷୁଧା ଓ ଲାଳସା ଭର୍ତ୍ତି କରି ଦିଏ ? ଏମିତି ଗୋଟାଏ ଭୂମିକା ଧର୍ମର କେବେ ବି ନ ଥିଲା । ସମାଜରେ ଧର୍ମ କଥାଟା ଯେତେବେଳେ ସୃଷ୍ଟି ହେଇଥିଲା ସେତେବେଳେ ତା'ର ଉଦ୍ଦେଶ୍ୟ ଥିଲା ମହତ୍ତ୍ୱପୂର୍ଣ୍ଣ । ସେଥିପାଇଁ ତାକୁ ସବୁବେଳେ ସବୁକାଳେ ମଣିଷମାନେ ଗୋଟିଏ ସ୍ୱତନ୍ତ୍ର ସ୍ଥାନ ଦେଇ ଆସିଚନ୍ତି । ଧର୍ମରେ ପବିତ୍ରତା ସବୁଠୁ ବଡ଼ କଥା । ପବିତ୍ରତା ଶବ୍ଦ ଭିତରେ ଅନେକ କଥା ଆସିଯାଏ । ମଣିଷର ମହତ୍ତମ ଗୁଣଗୁଡ଼ିକ ତା'ରି ଭିତରେ ବିକାଶ ଲାଭ କରି ଥିବାରୁ ସେ ସବୁ ମଣିଷକୁ ଉଚ୍ଚତମ ସୋପାନକୁ ନେଇଯାଏ ।

କିନ୍ତୁ ଏବେ ଦେଖା ଯାଉଛି ଧର୍ମ ତା'ର ସେ କାମରୁ ଓହରି ଆସି ମଣିଷକୁ ଆଉ ଏକ ରାସ୍ତାରେ ନେଇ ଯାଉଚି । ସେଇଟା ଗୋଟାଏ ପାଶବିକତାର ରାସ୍ତା । ତା'ର ପ୍ରବୃତ୍ତି ସବୁ ବଦଳି ଯାଉଚି । ପାଶବିକ ଇଚ୍ଛା, ଲାଳସା ସବୁ ତାକୁ ଘେରି ରହୁଚନ୍ତି । ଧର୍ମ ମଣିଷକୁ କାମନା ଠାରୁ ଦୂରେଇ ରଖେ । ଅନ୍ତତଃ ଏହା ହିଁ ଧର୍ମର ଉଦ୍ଦେଶ୍ୟ । ତେଣୁ ବୁଦ୍ଧ କହିଥିଲେ କାମନାର ବିନାଶରେ ଦୁଃଖର ବିନାଶ । କିନ୍ତୁ ଏବେ ଦେଖା ଯାଉଚି ମଣିଷ ଧର୍ମ ମାଧ୍ୟମରେ 'କାମନାର ବିକାଶ' ନୁହେଁ 'କାମନାର ବିନାଶ' ପାଇଁ ସବୁମତେ ଚେଷ୍ଟା କରି ଆସୁଚି । ସେ ଭାବୁଚି କାମନାର ବିକାଶ ହେଲେ ସେ ସୁଖ ଶାନ୍ତି ସବୁ ପାଇ ପାରିବ । ଆବଶ୍ୟକତାର ପୂରଣରେ ହିଁ ସେ ସୁଖର ଅଧିକାରୀ ହେଇ ପାରିବ । କିନ୍ତୁ ଆବଶ୍ୟକତାର ପୂରଣ ଯେ ଧର୍ମ ଭାବନା, ଈଶ୍ୱରୋପାସନା, ପୂଜା, ଯଜ୍ଞ, ବ୍ରତ ଇତ୍ୟାଦି ଦ୍ୱାରା ହୁଏ ନାହିଁ ଏ କଥା କାମନାରେ ଅନ୍ଧ ଥିବା ଲୋକ ମୋଟେ ବୁଝି ପାରନ୍ତି ନାହିଁ । କାମନାରେ ଅନ୍ଧଥିବା ଲୋକ ସବୁବେଳେ ଭାବୁଥାଏ ଈଶ୍ୱରଙ୍କୁ ସନ୍ତୁଷ୍ଟ କରିଦେଲେ ମନକୁ ମନ ଆବଶ୍ୟକତା ସବୁ ପୂରଣ ହୋଇଯାଏ । ସେଥିପାଇଁ ଈଶ୍ୱରଙ୍କୁ ସନ୍ତୁଷ୍ଟ କରିବାକୁ ସେ ଭୋଗରାଗ ଦେବାକୁ ଲାଗିପଡ଼େ । ଏଥିପାଇଁ ଶରୀରକୁ ମଧ୍ୟ କଷ୍ଟ ଦିଏ । ଅସାଧ୍ୟ ସାଧନ ପାଇଁ ଚେଷ୍ଟା କରେ । ସେ ଭାବି ନେଇଥାଏ ଯେ ସବୁ ସୁଖଶାନ୍ତି (ଯାହାର ଅନ୍ୟନାମ ଆବଶ୍ୟକତାର ପୂରଣ) କେବଳ ଏଇ

ରାସ୍ତାରେ ସମ୍ଭବ । ସେଇ ନାମର ଈଶ୍ବରଟି ସନ୍ତୁଷ୍ଟ ହେଲେ ସେ ଆକାଶରୁ ସବୁ ସୁଖର ସାମଗ୍ରୀ ତଳକୁ ଖସାଇ ଦେବେ ଏବଂ ଲୋକଟି ଗୋଡ଼ ଉପରେ ଗୋଡ଼ ପକେଇ ସବୁ ଉପଭୋଗ କରିପାରିବ ।

ଏସବୁ ଉଦ୍‌ଭଟ ଚିନ୍ତା ମଣିଷକୁ ବେଳେ ବେଳେ ପାଗଳ କରେ । ଏସବୁ ଉଦ୍‌ଭଟ ଚିନ୍ତା ଆମ ସମାଜରେ ବ୍ରାହ୍ମଣବାଦରୁ ସୃଷ୍ଟି । ବ୍ରାହ୍ମଣବାଦଟା ଚତୁରପଣିଆରୁ ସୃଷ୍ଟି । ବ୍ରାହ୍ମଣ ହୋଇ କେହି କେବେ ଜନ୍ମ ହୋଇ ନ ଥିଲେ । ଏବେ ମଧ ହେଉ ନାହିଁ । ମା' ପେଟରୁ ବ୍ରାହ୍ମଣ ଜନ୍ମୁ ଥିଲେ ସେ ପଇତା ସହ ଜନ୍ମ ହେଉ ଥାଆନ୍ତା । ତେଣୁ ଏ କଥା ସତ ଯେ ଦଳେ ଚତୁର ବ୍ୟକ୍ତି ନିଜର ଖଳବୁଦ୍ଧିର ପ୍ରୟୋଗ କରି ଅନ୍ୟ ଦୁର୍ବଳମନାଟିକୁ ନିଜର ଶୋଷଣର ଜାଲ ଭିତରେ ଛନ୍ଦି ରଖିବାକୁ ନିଜକୁ 'ବ୍ରାହ୍ମଣ' ବା ଅନ୍ୟମାନଙ୍କ ଠାରୁ ଶ୍ରେଷ୍ଠ ବୋଲି ଘୋଷଣା କରି ଦେଇଥିବେ । ତେଣୁ ବ୍ରାହ୍ମଣବାଦକୁ ଶୋଷଣବାଦ ବା ଆଉ ଏକ ଶୋଷଣ ଯନ୍ତ୍ର ବୋଲି କୁହାଯାଏ । ଈଶ୍ବର ସର୍ବଶକ୍ତିମାନ ଏବଂ ସେ ଚାହିଁଲେ ସବୁ କିଛି କରି ପାରିବେ ବା ସବୁ କିଛି ଦେଇ ପାରିବେ ଏ ପ୍ରକାର ଚିନ୍ତା ସେମାନେ ଲୋକଙ୍କ ମନରେ ପୂରେଇ ଦିଅନ୍ତି କେବଳ ନିଜ ସ୍ବାର୍ଥସାଧନ ପାଇଁ । ପୂଜକର ସ୍ବାର୍ଥ ଯେ ମୋଟେ ଏଥିରେ ପୂରଣ ହୁଏ ନାହିଁ ଦୁର୍ବଳମନା 'ଗ୍ରାହକଟି' ଏ କଥା ମୋଟେ ବୁଝି ପାରେ ନାହିଁ । ସେ କେବଳ ଭାବ ଓ ଭକ୍ତିରେ ଗଦଗଦ ଥାଏ । ମନେ ମନେ ଭାବୁଥାଏ ମୋର ସବୁ ଠିକ୍ ହୋଇଯିବ । ମୋତେ ସବୁ ମିଳିଯିବ ।

ଆମେ ଏତେ କଥା ଅବତାରଣା କରିବାର ଏକମାତ୍ର କାରଣ ହେଲା ଏବେ ଓଡ଼ିଶାରେ ଦୁଇଟି ଘଟଣା ଘଟିଛି; ଯୋଉଥିରେ ଲୋକମାନେ ଧର୍ମକୁ ସାକ୍ଷୀରଖି ଏମିତି କାଣ୍ଡ କରିଚନ୍ତି ଯାହା ଧର୍ମର ମୌଳିକ ଉଦ୍ଦେଶ୍ୟକୁ ଏପାଖ ସେପାଖ କରି ଦେଇଚି । ଧର୍ମର ଉଦ୍ଦେଶ୍ୟ ବିଘ୍ନିତ ହେଲାପରି ମନେ ହେଉଚି । ପ୍ରଥମ ଘଟଣା ଘଟିଚି ବାଲେଶ୍ବରରେ । ସେଠି ଗୋଟିଏ ମାଆ ତା'ର ଶିଶୁପୁତ୍ରକୁ ତ୍ରିଶୂଳ ଭୁଷି ହତ୍ୟା କରିଚି ଏବଂ ତା'ର ରକ୍ତ ନେଇ ଦେବୀଙ୍କୁ ଅର୍ପଣ କରିଚି । ନିଜ ଦେହରେ ମଧ ଛିଞ୍ଚି ଦେଇଚି । ଏ କଥାଟି ସମଗ୍ର ମଣିଷ ସମାଜର କଲିଜା ଥରେଇ ଦେଇଚି । ଯେ କେହି ଏ କଥା ଶୁଣିଚି ସେ ଭୟରେ ଶିହରି ଉଠିଚି । ମାଆ ହେଉଚି ଜନ୍ମଦାତ୍ରୀ । ସୃଷ୍ଟି କରେ । ତା'ର ସୃଷ୍ଟି ଉପରେ ସମଗ୍ର ବିଶ୍ବର ସ୍ଥିତି । ସମସ୍ତ ମଣିଷ ସମାଜ ଏଇ ସୃଷ୍ଟିଶୀଳତା ଉପରେ ନିର୍ଭର କରେ । ପ୍ରକୃତିର ଏଇ ନିୟମ ମଣିଷ ସମାଜକୁ ବଞ୍ଚାଇ ରଖିଚି । ଯୋଉ ମାଆ ସୃଷ୍ଟି କରେ, ଅନେକ ଜ୍ବାଳା ଓ ଯନ୍ତ୍ରଣାକୁ ପିଠି କରି ନିଜର ଅନ୍ତ ଫାଡ଼ି ନହୁନୁହାଣ ହେଇ, ତା'ର ସୃଷ୍ଟିକୁ ସେ ପୃଥିବୀକୁ ଉପହାର ଦିଏ, ସେ ପୁଣି ପାଶବିକତାର ବଶବର୍ତ୍ତୀ ହୋଇ ନିଜର ସନ୍ତାନକୁ ବଳି ଦେଇପାରେ ? ମାଆ ଏକ ଦେବୀମୂର୍ତ୍ତିର ପ୍ରତୀକ ।

ପୃଥିବୀର ସବୁଯାକ ମହତ୍ତମ ଗୁଣର ଅଧିକାରୀ ସେ । ସକଳ ଦେବତ୍ୱର ଆଧାର । ତା'ର ଆଉ ତୁଳନା ନାହିଁ । ସେଇ ମାଆ, ସୃଷ୍ଟିକର୍ତ୍ତ୍ରୀ, ଜନ୍ମଦାତ୍ରୀ ପୁଣି ପିଶାଚର ରୂପ କିପରି ଧାରଣ କଲା ? ମାନବିକତାର ସ୍ଖଳନ ଯେତେବେଳେ ନିମ୍ନତମ ଦେଶରେ ପହଞ୍ଚି ଯାଏ ସେତେବେଳେ ହୁଏତ ଏ କଥା ସମ୍ଭବ ହୋଇପାରେ । ପାଶବିକତା ବା ଆଦିମ ଆରଣ୍ୟକ ପ୍ରବୃତ୍ତି ଯେତେବେଳେ ମଣିଷକୁ ସମ୍ପୂର୍ଣ୍ଣ କବଳିତ କରିଦିଏ ସେତେବେଳେ ହୁଏତ ଏକଥା ସମ୍ଭବ ହୋଇପାରେ ।

ବିଲେଇର ଗୋଟାଏ ଅପବାଦ ଅଛି । ସେ କୁଆଡ଼େ ତା' ଛୁଆକୁ ମାରି ଖାଏ । ବିଲେଇ ଗୋଟିଏ ପଶୁ । ପଶୁ କ୍ଷେତ୍ରରେ ଏ କଥା ସମ୍ଭବ ହେଉଥିଲେ ମଧ ସବୁ ପଶୁ ଏ ଘୃଣ୍ୟ କାମ କରନ୍ତି ନାହିଁ । ପ୍ରକୃତି ହୁଏତ ପାଶବିକତାର ଗୋଟାଏ ନମୁନା ସବୁ ଜୀବ ଆଗରେ ରଖିବା ପାଇଁ ଏ କଥା କରି ଥିବ । ସେଇଥିରୁ ବୁଝି ହୋଇଯାଏ ଯେ କେବଳ ପଶୁର ମାଆ ହିଁ ରାକ୍ଷସୀ ହୋଇପାରେ । ଅନ୍ୟମାନଙ୍କ କ୍ଷେତ୍ରରେ ତାହା ସମ୍ଭବ ନୁହେଁ । ତେବେ ଏ କ୍ଷେତ୍ରରେ ଏହା କିପରି ସମ୍ଭବ ହେଲା ? ମଣିଷର ଦେହ ଧରି ନାରୀଟିଏ ତା'ର ଶିଶୁପୁତ୍ରକୁ ହତ୍ୟାକରି ତା' ରକ୍ତରେ ଦେବତାଙ୍କୁ ପୂଜା କରିବା ସଂଗେ ସଂଗେ ନିଜେ ବି ରକ୍ତ ସ୍ନାନ କଲା ? ନିଜକୁ ପବିତ୍ର କଲା ?

ତାର କାରଣ ତା' ମୁଣ୍ଡରେ ଧର୍ମଭିତ୍ତିକ ଅନ୍ଧବିଶ୍ୱାସ ସବୁ ସବାର ହୋଇ ଗଲେ । ଧର୍ମରେ ଯେତେବେଳେ ଅନ୍ଧବିଶ୍ୱାସ ମିଶିଯାଏ (ଅବଶ୍ୟ ତାକୁ ଜଣେ ଜାଣିଶୁଣି ମିଶେଇ ଦିଏ) ସେତେବେଳେ ଧର୍ମର ଅମୃତ ଭାଣ୍ଡଟି ବିଷରେ ପରିଣତ ହୋଇଯାଏ । ଅନ୍ଧବିଶ୍ୱାସର ସେ ବିଷ ମଣିଷର ଶିରା ପ୍ରଶିରାରେ ପଶି ଆଉ ଏକ କ୍ଷୟରୋଗ ସୃଷ୍ଟି କରେ । ଏହି ଜୀବାଣୁଗୁଡ଼ିକ ସେତେବେଳେ ମଣିଷର ମନ ଓ ହୃଦୟର କୋଷିକାଗୁଡିକୁ ଖାଇଦିଏ ଏବଂ ପାଶବିକତାର ଜୀବାଣୁ ସବୁ ଛାଡ଼ିଦିଏ । ତା'ପରେ ମଣିଷ ପଶୁରେ ରୂପାନ୍ତରିତ ହୋଇଯାଏ । ରାତିକ ଭିତରେ ଅନେକ କିଛି ପାଇବାର ଆଶା ଯେତେବେଳେ ମଣିଷକୁ ପାଗଳ କରେ ସେତେବେଳେ ସେ ଏଇ ପଶୁତ୍ୱର ଦାସ ପାଲଟି ଯାଏ ।

ଏବେ ଆମେ ଦ୍ୱିତୀୟ ଘଟଣାଟିକୁ ଆସିବା । ଏହି ଘଟଣାଟିରେ ଧର୍ମଭିତ୍ତିକ ଗୋଲକଧନ୍ଦା ଭିତରେ ପଡ଼ି ଜଣେ ସ୍ୱାମୀ ତା'ର ସ୍ତ୍ରୀ ପାଖକୁ ଯାଇ ପାରୁନି । ସ୍ୱାମୀ ଓ ସ୍ତ୍ରୀର ସଂପର୍କ କୋଉ ଆବହମାନ କାଳରୁ ଅମୃତମୟ ହୋଇ ଆସିଚି । ସବୁ ଯୁଗରେ ସବୁ ସମୟରେ ଏବଂ ସବୁ ସମାଜରେ ବୈବାହିକ ସମ୍ପର୍କକୁ ଆଉ ସବୁ ସମ୍ପର୍କର ଊର୍ଦ୍ଧ୍ୱରେ ତୋଳି ଧରାଯାଇଚି ଏବଂ ତା'ର ପବିତ୍ରତାକୁ, ତା'ର ମହନୀୟତାକୁ ଏକ ସ୍ୱର୍ଗୀୟ ସମ୍ପର୍କ ବୋଲି ଧରା ହୋଇଚି । ତାକୁ କେବେ ଅଲଗା କରି ହୁଏ ନାହିଁ । ଜୀବନର ଗତି ପଥରେ ଯେତେ ଝଡ଼ଝଞ୍ଜା ଆସିଲେ ମଧ, ନୌକା ସେ ନଈରେ

ବାରମ୍ବାର ବୁଡି ଉଠୁ ଥିଲେ ମଧ୍ୟ କେବେବି ପଥହରା ହୁଏ ନାହିଁ । ତା'ର ଲକ୍ଷ୍ୟପଥ ସବୁବେଳେ ଠିକ୍‌ଥାଏ । ସେ ଦୁଇଟା ଭିତରେ ସମ୍ପର୍କର ଯୋଉ ଆକର୍ଷଣ ତାହା ଦୁର୍ଭେଦ୍ୟ । ସେ କାଛପଟା ଭିତରେ ଛୁଞ୍ଚିଟିଏ ମଧ୍ୟ ପ୍ରବେଶ କରିପାରେ ନାହିଁ । ଯଦି ବା କେତେବେଳେ କେମିତି ସାମାନ୍ୟ ବାଟ ହୁଡ଼ିଯାଏ ଅଳ୍ପକିଛି ସମୟ ପାଇଁ, ପରେ ସେମାନେ ପୁଣି ମିଳିତ ହୋଇ ଯାଆନ୍ତି । ସୀମା ଏ ପାଖର ମଣିଷ ଓ ସୀମା ସେପାଖର ମଣିଷ ଯେମିତି କେବେ ବି ଅଲଗା ହୁଅନ୍ତି ନାହିଁ, ଯେତେ ଯୁଦ୍ଧ ହେଲେ ବି, ସେମିତି ସ୍ୱାମୀ ସ୍ତ୍ରୀର ସମ୍ପର୍କ । ସେମାନେ ଜୀବନ ଯୁଦ୍ଧକୁ ରଖି ଦିଅନ୍ତି ଗୋଟିଏ ପଟେ ଏବଂ ମିଳିତ ହୁଅନ୍ତି ଆଉ ଗୋଟିଏ ପଟେ ।

ଏପରି ଗୋଟାଏ ଶକ୍ତବନ୍ଧନ ଥିବା ସତ୍ତ୍ୱେ ଆଜି ଧର୍ମ ସେମାନଙ୍କ ବାଧକ ହେଉଛି । ସେ ସେମାନଙ୍କୁ କହି ଦେଉଛି, ''ତମେ ଅଲଗା ରହିବ । ଥରେ ଯେତେବେଳେ 'ତଲାକ୍' କହି ଦିଆ ଯାଇଛି ସେତେବେଳେ ଧର୍ମର ନୀତି ଅନୁସାରେ ତାକୁ ଆଉ ଫେରାଇ ଆଣି ହେବ ନାହିଁ । ତେଣୁ ସ୍ୱାମୀ ସ୍ତ୍ରୀ ଆଉ ଥରେ ମିଳିତ ହେବାକୁ ଚାହୁଁଥିଲେ ମଧ୍ୟ ସେମାନେ ମିଳିତ ହୋଇ ପାରିବେ ନାହିଁ । ଧର୍ମର ଏ ବିଧିବିଧାନକୁ ବିରୋଧ କରନ୍ତି ଆଉ ଦଳେ । ସେମାନେ କହନ୍ତି 'ତଲାକ' ଶବ୍ଦଟା ସେତେବେଳେ ଉଚ୍ଚାରିତ ହୋଇଥିଲା ଗୋଟାଏ ଅସତର୍କ ମୁହୂର୍ତ୍ତରେ । ଗୋଟାଏ ଅବଚେତନ ମନରେ ଯାହା ଥରେ ପ୍ରକାଶ ପାଇଯାଏ ତାକୁ ଠିକ ଏବଂ ନ୍ୟାୟ ଯୁକ୍ତ ବୋଲି କହି ହେବ ନାହିଁ । ସେସବୁ ଥାଏ ସମାଜ ଧର୍ମର ବିରୋଧୀ । ତେଣୁ ତାକୁ ଗ୍ରହଣ ନ କରି ପୁଣିଥରେ ସେମାନଙ୍କ ମିଳନ ପାଇଁ ଛାଡ଼ି ଦେବା ଉଚିତ ହେବ । ଗୋଟିଏ ଦିଗରୁ ସେ ନ୍ୟାୟ ପାଉଛି । ଆଉ ଗୋଟିଏ ଦିଗରୁ ସେମାନେ ତା'ର ବିରୋଧ କରୁଚନ୍ତି, ଦୁଇପଟେ ଧର୍ମର ସ୍ଥିତି ନାରୀଟିକୁ ଖୁଆରେ ଦଉଡ଼ି ବାନ୍ଧି ଦହିମୁହିଁବା ପରି ଏପାଖକୁ ସେପାଖକୁ ମୋଡୁଛନ୍ତି । ଧର୍ମ କେବେ ମଣିଷ ଠାରୁ ମଣିଷକୁ ଅଲଗା କରିବାକୁ ସୃଷ୍ଟି ହୋଇନଥିଲା । ଠିକ୍ ସେମିତି ଧର୍ମ ମଧ୍ୟ ମଣିଷ ସହିତ ମଣିଷକୁ ଜୋର ଜବରଦସ୍ତ ଯୋଡ଼ିବା ସପକ୍ଷରେ କେବେ ନଥିଲା । ମାନବିକ ପ୍ରେମ ଧର୍ମର ଅନେକ ଉର୍ଦ୍ଧ୍ୱରେ । ତାକୁ ଧର୍ମ ଭିତରେ ବାନ୍ଧି ରଖି ହେବ ନାହିଁ । ଯେଉଁମାନେ ତାକୁ ମଣିଷ ତିଆରି ଧାର୍ମିକ ନୀତି ନିୟମ ଭିତରେ ବାନ୍ଧିବା ବା ଖୋଲିବା କଥା କହୁଚନ୍ତି ସେମାନେ ଧର୍ମର ଅସଲ ନୀତି ନିୟମର ବିରୋଧ କରୁଚନ୍ତି । ପ୍ରେମ, ପ୍ରୀତିର ବନ୍ଧନ ଧର୍ମର ନୀତି ନିୟମ ମାନେନା । ସେ ସବୁବେଳେ ନିଜକୁ ଅନ୍ୟ ସବୁ ପ୍ରକାର ବାଧା ବନ୍ଧନର ଉର୍ଦ୍ଧ୍ୱରେ ରଖିଆସିଛି ।

❑

('ସମୟ'- ୨୧.୬.୨୦୦୪)

# ଜାତୀୟ ଭାବଧାରା ଓ ଅନ୍ୟାନ୍ୟ ପ୍ରବନ୍ଧ ସମ୍ପର୍କରେ




## ସମାଜ

ଅତୀତରେ ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶିତ ଲେଖକଙ୍କ ତାତ୍ତ୍ୱିକ ତଥା ବିଶ୍ଳେଷଣାତ୍ମକ ପ୍ରବନ୍ଧଗୁଡ଼ିକର ଏହା ଏକ ସଂକଳନ । ଏବର ସମାଜ ବ୍ୟବସ୍ଥା, ଶାସନ ଓ ରାଜନୀତି ଉପରେ ଲେଖକ ଖୁବ୍ ସ୍ପଷ୍ଟ ଭାବରେ ନିଜର ମତାମତ ବ୍ୟକ୍ତ କରିଛନ୍ତି । ଲେଖାଗୁଡ଼ିକ ଖୁବ୍ ଶାଣିତ । ଅନେକ ପ୍ରବନ୍ଧରେ ଲେଖକଙ୍କର ପ୍ରଗତିଶୀଳ ଚିନ୍ତାଧାରା ଓ ଧର୍ମନିରପେକ୍ଷ ଭାବନାର ପ୍ରତିଫଳନ ଘଟିଛି । ଏହା ନିଶ୍ଚିତ ଭାବେ ଏକ ପାଠାଗାର ଉପଯୋଗୀ ପୁସ୍ତକ ଭାବେ ଗ୍ରହଣୀୟ ।

## ସମୟ

ଏହି ପ୍ରବନ୍ଧଗୁଡ଼ିକ ଦୈନିକ 'ସମୟ', 'ସମ୍ବାଦ', 'ସମାଜ', 'ପ୍ରଗତିବାଦୀ' ଓ 'ଅନୁପମଭାରତ'ରେ ପୂର୍ବରୁ ପ୍ରକାଶ ପାଇସାରିଛି । ପୁସ୍ତକଟି ହେଉଛି ଶ୍ରୀ ମହାପାତ୍ରଙ୍କ ଦ୍ୱାରା ବିଭିନ୍ନ ସମ୍ବାଦପତ୍ରରେ ଲିଖିତ ପ୍ରାୟ ୨୦୦ ପ୍ରବନ୍ଧ ମଧ୍ୟରୁ ସୁନିର୍ବାଚିତ ୩୧ଟି ଶ୍ରେଷ୍ଠ ପ୍ରବନ୍ଧର ସଂକଳନ । ଏଥିରେ ମୁଖ୍ୟତଃ ଜାତୀୟ ଭାବଧାରାମୂଳକ ପ୍ରବନ୍ଧ ସ୍ଥାନ ପାଇଛି । ପୁସ୍ତକଟି ସବୁ ସ୍ତରର ସଚେତନ ପାଠକଙ୍କ ପାଇଁ ଉପଯୋଗୀ । ସ୍କୁଲ, କଲେଜ ଏବଂ ପ୍ରତିଯୋଗୀତାମୂଳକ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବା ଛାତ୍ରଛାତ୍ରୀମାନଙ୍କ ସକାଶେ ପୁସ୍ତକର ଯଥେଷ୍ଟ ଉପଯୋଗିତା ରହିଛି ।

## ଲେଖକଙ୍କର ଅନ୍ୟ କେତୋଟି ପୁସ୍ତକ

| | | |
|---|---|---|
| ୧. | ପୃଥିବୀ ଓ ପୃଥିବୀ | (ଗଳ୍ପ ସଂକଳନ) |
| ୨. | ଗୋଟିଏ ମେଣ୍ଡାପଲ | (ଗଳ୍ପ ସଂକଳନ) |
| ୩. | ପ୍ରମିଳା | (ଗଳ୍ପ ସଂକଳନ) |
| ୪. | ଭାରତ ଭାଗ୍ୟ ବିଧାତା | (ବ୍ୟଙ୍ଗ ଗଳ୍ପ ସଂକଳନ) |
| ୫. | ପ୍ରଥମ ପୃଥିବୀ | (ଉପନ୍ୟାସ) |
| ୬. | ଉପତ୍ୟକାର ଉପକଥା | (ଭ୍ରମଣ କାହାଣୀ) |
| ୭. | ଅପୂର୍ବ ପୂର୍ବ | (ଭ୍ରମଣ କାହାଣୀ) |
| ୮. | ଲୁ ତଥା ଅନ୍ୟ କହାନୀୟାଁ<br>ଅନୁବାଦ - କୁମାର ହସନ ଓ ଡକ୍ଟର (ଶ୍ରୀମତୀ) ବାସନ୍ତୀ ରଥ | (ହିନ୍ଦୀ ଗଳ୍ପ ସଂକଳନ) |
| ୯. | ରବୀନ୍ଦ୍ର ନାଥଙ୍କର ଚର୍ଚ୍ଚିତ ଚିଟାଉ<br>ଅନୁବାଦ - ଅମିୟ ବସୁ ଓ ଭୂପେନ୍ ମହାପାତ୍ର | (ଅନୁବାଦ) |
| ୧୦. | ଖୋଳ | (ଗଳ୍ପ ସଂକଳନ) |
| ୧୧. | ଚନ୍ଦ୍ରସେଣାର ଚନ୍ଦ୍ରାଲୋକ | (ବ୍ୟଙ୍ଗ ଗଳ୍ପ ସଂକଳନ) |
| ୧୨. | ଜାତୀୟ ଭାବଧାରା ଓ ଅନ୍ୟାନ୍ୟ ପ୍ରବନ୍ଧ | |
| ୧୩. | ସୂର୍ଯ୍ୟ ଉଠିନାହିଁ | (ଗଳ୍ପ ସଂକଳନ) |
| ୧୪. | ହାତୀର ହିକ୍କି | (ଗଳ୍ପ ସଂକଳନ) |
| ୧୫. | ଏବେ ବି ରେବତୀ ଓ ଅନ୍ୟାନ୍ୟ ଗଳ୍ପ | (ଗଳ୍ପ ସଂକଳନ) |

